# ହେମଚନ୍ଦ୍ର ଚୟନ



ସଂକଳନ ଓ ସଂପାଦନା

**ପ୍ରୀତୀଶ ଆଚାର୍ଯ୍ୟ**

# ହେମଚନ୍ଦ୍ର ଚୟନ



ସଂକଳନ ଓ ସଂପାଦନା

**ପ୍ରତୀକ୍ଷା ଆଚାର୍ଯ୍ୟ**

ହେମଚନ୍ଦ୍ର ଚୟନ

(କବି ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ରଚନାଚୟ)

ପ୍ରଥମ ସଂସ୍କରଣ - ୨୦୧୨ (ଶକାବ୍ଦ ୧୯୩୪)

ସଂକଳନ ଓ ସମ୍ପାଦନା - ପ୍ରୀତୀଶ ଆଚାର୍ଯ୍ୟ

ପ୍ରକାଶକ - ଦ୍ୟୁତୀଶ ଆଚାର୍ଯ୍ୟ

ଗର୍ଭଣା, ଜି: ବରଗଡ଼-୭୬୮୦୩୩

ଦୂରଭାଷ: ୯୯୩୭୪୦୦୯୨୩

ଡିଟିପି ଓ ପ୍ରଚ୍ଛଦ - ଜୀତେନ୍ଦ୍ର କୁମାର ଶତପଥୀ ଓ ବିଜୟ ମହାନ୍ତି

ପ୍ରଚ୍ଛଦ ଫଟୋ - ଦିଲ୍ଲୀପ ପାଢ଼ୀ

ମୂଲ୍ୟ - ୨୫୦ ଟଙ୍କା

-----------------------------------------

**Hemachandra Chayana**

(Selected Writings of Hemachandra Acharya)

First Edition - 2012

Comipled and Edited by - **Pritish Acharya**

Published by - **Dyutish Acharya**

Garvana, Dist-Bargarh-768033

Cell-9937400923

DTP & Cover - Jitendra Satapathy & Bijay Mohanty

Cover Photograph- Dillip Padhy

**Price- ₹ 250/-**

# ହେମଚନ୍ଦ୍ରଙ୍କ ନିଜ ପ୍ରସ୍ତୁତ ପରିଚୟ

**ନାମ -** ଶ୍ରୀ ହେମଚନ୍ଦ୍ର ଆଚାର୍ଯ୍ୟ
**ପିତା ଓ ମାତା-** ସ୍ୱର୍ଗତ ପଣ୍ଡିତ ତୋଳାମଣି ଆଚାର୍ଯ୍ୟ ଓ କମଳା ଦେବୀ
**ଠିକଣା -** ଗ୍ରାମ ଓ ପୋ- ଗର୍ଡଣା, ତହସିଲ ସୋହେଲା, ଜି.-ବରଗଡ -୭୬୮ ୦୩୩ ।
**ଜନ୍ମ ତାରିଖ -** ୨୦.୦୪.୧୯୨୬
**ଶିକ୍ଷାଗତ ଯୋଗ୍ୟତା -** ୧୯୪୪ ରେ ପ୍ରବେଶିକା ପାସ୍ ।
**ବୃତ୍ତି -** ଚାଷ
**ସାହିତ୍ୟିକ କୃତି -** ନାଟକ -
୧. ଅଭିଶାପ। ଲେଖିବା ସମୟ ୧୯୪୪ ଅପ୍ରକାଶିତ
୨. ନିର୍ବାସୀତା ୧୯୪୫ ଅପ୍ରକାଶିତ ୩. ପରୀକ୍ଷିତ ୧୯୪୫ ଅପ୍ରକାଶିତ
୪. ମହାରଥୀ କର୍ଣ୍ଣ ୧୯୪୭ ପ୍ରକାଶିତ (୧୯୫୮) ୫. ବିଶ୍ୱାସ ୧୯୫୪ ଅପ୍ରକାଶିତ
୬. ପ୍ରତୀକ୍ଷା ୧୯୭୭-୭୮ ଅପ୍ରକାଶିତ ୭. ମୁର୍ଖ ମର୍ଲେ ଯାଇ ୧୯୯୩-୯୪ ଅପ୍ରକାଶିତ
୮. କୃଷ୍ଣକେଳି (ନୃତ୍ୟ) ୧୯୭୪ ଅପ୍ରକାଶିତ
**ମହାକାବ୍ୟ -** ରାମ୍-ରାହା-(ସମ୍ବଲ୍‌ପୁରୀ ରାମ୍‌କଥା।)'ଉପନିଷଦର ସ୍ୱର' ଲେଖା ଚାଲିଛି ୧୯୯୮ରୁ
**କାବ୍ୟ-** 'ସତର୍ ସତୀ ବୃନ୍ଦାବତୀ' ପ୍ରକାଶିତ ୧୯୯୩ 'ନୁନୀ' ପ୍ରକାଶିତ ୧୯୯୬
**କବିତା ସଂକଳନ -** ପାଥେୟ ମୋ ଜୀବନ-ଯାତ୍ରାରେ ଲେଖନ ସମୟ ୧୯୮୫-୯୮
**ଗଳ୍ପ ସଂକଳନ -** କଥାନି ସତ୍ ସଜାନି, ୧୯୯୪ ରେ ପ୍ରକାଶିତ
**ଗଳ୍ପ ସଂକଳନ -** କଥାନି ଲେଖେଁ ଲାଗସି, ୧୯୯୫-୯୭ ପ୍ରକାଶିତ
**ବଏଲାରେ ଲିଖିତ ନିବନ୍ଧ-** ୧୨ଟି ନିବନ୍ଧ 'ଭୂମିପୁତ୍ର' ଓ 'କୃଷକ ଜ୍ୟୋତି'
ପତ୍ରିକା ମାନଙ୍କରେ ପ୍ରକାଶିତ।
**ଗୀତିଗାଥା -** (ସଂଚାର)- ସିନ୍ଧୁବଧ, ବସ୍ତ୍ରାହରଣ, ଅଭିଶପ୍ତ ପରୀକ୍ଷିତ ଓ ଶକ୍ତିବିଦ୍ଧ ରାମ ।
(ସଂକୀର୍ତ୍ତନ) - ରାଧା ସନ୍ୟାସ, କୃଷ୍ଣଜନ୍ମ ଓ ଶରତ୍ ରାସ
**ଅନେକ ଭଜନ ଓ ଆଧ୍ୟାତ୍ମିକ ଗୀତ -**
'ଗାଏଲେଁ ବୁଲ୍‌ବ'- ସମଲ୍‌ପୁରୀ ଗୀତ ମାଳା। ୧୯୪୪ରୁ ୧୯୯୪
**ସମ୍ମାନ -**
୧. କୋଶଳି (ସମଲ୍‌ପୁରୀ) ଭାଷା ସାହିତ୍ୟ ସମ୍ମେଳନ ୦୩.୦୧.୧୯୯୩ ଅଭିନନ୍ଦନ ଓ ଉପଢ଼ୌକନ
୨. ସମଲ୍‌ପୁରୀ ଲେଖକ ସଂଘ ଦ୍ୱାରା ୨୧.୧୧.୯୩ ରେ ଅଭିନନ୍ଦନ ଓ ଉପଢ଼ୌକନ
୩. ମନୋହର ସାଂସ୍କୃତିକ ସଂସଦ୍ ଭେଡ଼େନ ଦ୍ୱାରା ୨୩.୦୧.୧୯୯୬ ରେ ଅଭିନନ୍ଦନ ଓ ଉପଢ଼ୌକନ
୪. ବାସନ୍ତୀ ଅନୁଷ୍ଠାନ ବରପାଲି ମହାବିଦ୍ୟାଳୟ ଦ୍ୱାରା ଅଭିନନ୍ଦନ ଓ ଉପଢ଼ୌକନ
୫. ଅଭିମନ୍ୟୁ ସାହିତ୍ୟ ସଂସଦ୍ ସୈଁସ୍ (୧୯୯୪ ଦ୍ୱାରା ଅଭିମନ୍ୟୁ ସମ୍ମାନ)
୬. ଡ଼େଡ୍ରିଗଡ଼ି କଳା ଓ ସାହିତ୍ୟ ସଂସଦ ଦ୍ୱାରା ୧୯୯୫ ରେ କବିରତ୍ନ ଉପାଧି
୭. ରାଜ୍‌ବୋଡ଼ାସମ୍ବର୍ (୧୯୯୮)ରେ କୋଶଲ୍ ବାଲ୍ମିକୀ ଉପାଧି (ହେମଚନ୍ଦ୍ର ଆଚାର୍ଯ୍ୟ, ଗର୍ଡଣା)୦୮-୦୬-୧୯୯୮



# ସୂଚିପତ୍ର





# ସଂକଳନ ଓ ସଂପାଦନା ପରିପ୍ରେକ୍ଷୀରେ

ଏହି ପାଣ୍ଡୁଲିପିରେ ମୋର ବାପା କବି ହେମଚନ୍ଦ୍ର ଆଚାର୍ଯ୍ୟଙ୍କର କେତୋଟି ବିଶେଷ ଲୋକାଦୃତ ସମ୍ବଲପୁରୀ ଓ ଓଡ଼ିଆ ରଚନାକୁ ସାମିଲ କରାଯାଇଛି। ୧୯୪୪ ପରଠାରୁ ବିଶେଷ କରି ୧୯୫୦ ଓ ୧୯୬୦ ଦଶକରେ ସେ 'ଗାଏଲେଁ ବୁଝବ' ଶୀର୍ଷକରେ ଅନେକ ସମ୍ବଲପୁରୀ ଗୀତ ଲେଖିଥିଲେ। ସଂଚାର କଳାକାରମାନଙ୍କ ଦ୍ୱାରା ତାହା ପରିବେଷିତ। ସେହି ସମୟରେ ଗାଁରେ କୀର୍ତ୍ତନ ଦଳ ଗଢ଼ି ତହିଁରେ ଗାନ ପାଇଁ 'କୃଷ୍ଣଜନ୍ମ', 'ରାଧାସନ୍ୟାସ', 'ଶରତ ରାସ' ଓ 'ଅର୍ଘ୍ୟଧାରା' ନାମରେ ଅନେକ ଭକ୍ତିମୂଳକ ଗୀତ ଲେଖିଥିଲେ। ସବୁ ଗୀତର ସେ ନିଜେ ସ୍ୱର ସଂଯୋଜନା ମଧ୍ୟ କରିଥିଲେ। ତନ୍ମଧ୍ୟରେ ଥିବା 'ଅର୍ଘ୍ୟଧାରା'ର ଭଜନଗୁଡ଼ିକ ୧୯୮୦ ଦଶକର ଲେଖା। ୧୯୭୦ ଦଶକର ଆରମ୍ଭରେ ସେ 'ଶବରୀ ସଂଦେଶ' ଲେଖିଥିଲେ, ଯାହା ୧୯୮୫ରେ ଏକ ଚଟି ବହି ଆକାରରେ ପ୍ରକାଶିତ ହୋଇଥିଲା। 'କୃଷ୍ଣକେଳି' ନାମରେ ୧୯୭୩-୭୪ରେ ସେ ଏକ ଗୀତିନାଟ୍ୟ ଲେଖିଥିଲେ, ଯାହାକୁ ଶିକ୍ଷିତ ମହଲରେ ଉପେକ୍ଷାର ଶିକାର ହୋଇଥିବା ପାରଂପାରିକ ଦଣ୍ଡନାଚ ଦଳ ଗଢ଼ି ଅଭିମଞ୍ଚିତ କରୁଥିଲେ। ସେ କେତୋଟି ସମ୍ବଲପୁରୀ ନିବନ୍ଧ ଲେଖିଥିଲେ ୧୯୯୭ରେ, ଯାହା ସମ୍ବଲପୁର ଆକାଶବାଣୀରୁ ପ୍ରସାରିତ ହୋଇ ଖୁବ ଜନାଦୃତି ଲାଭ କରିଥିଲା। ୧୯୯୮ରେ 'ଉପନିଷଦର ସ୍ୱର' ନାମରେ ସେ ସମ୍ବଲପୁରୀରେ ଉପନିଷଦର ଅନୁସୃଜନ ଆରମ୍ଭ କରିଥିଲେ; ଯାହା ସମ୍ବଲପୁରରୁ ପ୍ରକାଶିତ 'ଭରନି' ପତ୍ରିକାରେ ପ୍ରକାଶିତ। ୧୯୫୦ ଦଶକରେ ସେ କେତୋଟି ଗୀତ 'ଶିଶୁଗୀତିକା' ନାମରେ ଲେଖିଥିଲେ। ଏହା ବିଶେଷ ପାଠକୀୟ ପ୍ରଶଂସା ଲାଭ କରିଥିଲା। ୨୦୦୨-୦୫ରେ ସେ ଓଡ଼ିଆରେ କେତୋଟି ନିବନ୍ଧ ଲେଖିଥିଲେ, ଯାହା 'ସମ୍ବାଦ' ପତ୍ରିକାରେ ପ୍ରକାଶିତ ହୋଇଥିଲା। ଏହି ପାଣ୍ଡୁଲିପିରେ ଉପରୋକ୍ତ ଲେଖାଗୁଡ଼ିକୁ ଏକତ୍ରିତ କରାଯାଇଛି।

ମୁଦ୍ରଣ ଓ ପ୍ରକାଶନର ଦୁନିଆଁ ବାହାରେ ରହି ସୁଦ୍ଧା ଏସବୁ ଲେଖା ଜନାଦୃତ। ଦ୍ୱିତୀୟତଃ, ଉଭୟ କୋଶଳି-ସମ୍ବଲପୁରୀ ଓ ଓଡ଼ିଆରେ ସେଗୁଡ଼ିକ ଲିଖିତ। ୧୯୮୦ ପୂର୍ବରୁ ପଶ୍ଚିମ ଓଡ଼ିଶାରେ ସୁଦ୍ଧା କୋଶଳି-ସମ୍ବଲପୁରୀରେ ଲେଖିବା ଓ ମଞ୍ଚରେ କୃତି ପ୍ରସ୍ତୁତ କରିବା ଏକ 'ସାହସର କାମ' ଥିଲା। ୧୯୮୦ରୁ କୋଶଳି-ସମ୍ବଲପୁରୀ

ଭାଷା ଆନ୍ଦୋଳନ ବଳିଷ୍ଠ ହେଲା । ତେଣିକି ସମ୍ବଲପୁରୀରେ ଲେଖନ ଓ ପ୍ରକାଶନ ପାଇଁ ପ୍ରୋତ୍ସାହନ ମିଳିଲା । ଏହି ସମୟରେ ହେମଚନ୍ଦ୍ର 'ରାମରାହା' ଆଦି ଲେଖିଲେ ଏବଂ 'ଉପନିଷଦର ସ୍ୱର' ନାମରେ ଉପନିଷଦର ସମ୍ବଲପୁରୀରେ ଅନୁବାଦ ଓ ଅନୁସୃଜନ ଆରମ୍ଭ କଲେ, ଯାହା ଅସଂପୂର୍ଣ୍ଣ ରହିଗଲା । ମାତ୍ର ତାଠାରୁ ବଡ଼ କଥା ଯେ ଏହି ସମୟରେ ସେ ଓଡ଼ିଆରେ ମଧ୍ୟ ଅନେକ ନିବନ୍ଧ ଲେଖିଲେ । 'କୃଷ୍ଣକେଳି' ତାଙ୍କର ଏମିତି ଏକ ସର୍ଜନା, ଯେଉଁଥିରେ ଉଭୟ ଓଡ଼ିଆ ଓ ସମ୍ବଲପୁରୀର ପ୍ରୟୋଗ ହୋଇଛି । ଉଭୟ ସମ୍ବଲପୁରୀ ଓ ଓଡ଼ିଆ ରଚନା ମାଧ୍ୟମରେ ସେ ସିଦ୍ଧି ଅର୍ଜନ କରିଛନ୍ତି । ସର୍ଜନାକାର ସର୍ବଦା ସ୍ୱାଧୀନ ଓ ସ୍ୱତନ୍ତ୍ର ହେଲେ ହିଁ ସାହିତ୍ୟ ସୃଷ୍ଟି କରିପାରିବ । କାହାରି 'ବୋଲହାକ' ମାନିଲେ ତାର ସୃଷ୍ଟିଶୀଳତା ପ୍ରତିବଂଧିତ ହେବ! ଗୋଟାଏ ଭାଷା ଅନ୍ୟ ଏକଭାଷାର ସର୍ବଦା ଅନୁପୂରକ; କେହି ଛୋଟବଡ଼ ନୁହନ୍ତି ।

ହେମଚନ୍ଦ୍ରଙ୍କ ରଚନାରେ ପୌରାଣିକ କଥାବସ୍ତୁ ଓ ପାରଂପାରିକ ସ୍ୱର ରାଗ ଆଦିକୁ ପ୍ରମୁଖତା ମିଳିଥିବାର ଦେଖାଯାଏ । ଏହା ପଛରେ ସଂଭାବ୍ୟ କାରଣ ହେଲା ତାଙ୍କର ଲୋକ ସଂପୃକ୍ତି । ଗାଁ ସମାଜରେ ଆଜିମଧ୍ୟ ପୌରାଣିକ କଥାବସ୍ତୁର ଓ ଚଂପୂ, ଛାନ୍ଦ ଆଦିର ପ୍ରଭୂତ ଆଦର ରହିଛି । ତେଣୁ, ତାକୁ ମାଧ୍ୟମ କରି କବି ସ୍ୱ-ଜୀବନାଦର୍ଶର ସଂସ୍କାର, ସାମ୍ୟ ଓ ସାଂସ୍କୃତିକ ବିବିଧତାକୁ ଦର୍ଶାଇବାକୁ ପ୍ରୟାସ କରିଛନ୍ତି । ଯେଉଁ ରୀତିରେ ସେ ଭାଷା-ଭାଷା, କିମ୍ବା ସଂସ୍କୃତି-ସଂସ୍କୃତି ମଧ୍ୟରେ ବିଭେଦ ନାହିଁ ବୋଲି କହନ୍ତି, ସେହି ରୀତିରେ ସେ ମଣିଷ-ମଣିଷ ଭିତରେ ଏବଂ ଆତ୍ମା-ପରମାତ୍ମା ଭିତରେ ସମରୂପତା ଓ ସମତା ରହିଛି ବୋଲି ଦେଖିପାରନ୍ତି । ତାଙ୍କର ଏହି ଜୀବନଦୃଷ୍ଟି 'ଅନେକ' ଭିତରେ 'ଏକ' ଓ 'ଏକ' ଭିତରେ 'ଅନେକ'କୁ ଦେଖିବାକୁ ସାମର୍ଥ୍ୟ ପ୍ରଦାନ କରିଥାଏ ।

ଏହି ପାଣ୍ଡୁଲିପିର ପ୍ରସ୍ତୁତିରେ ଅନେକ ଜ୍ଞାତିଜନ ଓ ବନ୍ଧୁଙ୍କର ପ୍ରତ୍ୟକ୍ଷ ସହଯୋଗ ରହିଛି । ମୋର କାକା ଓ ହେମଚନ୍ଦ୍ରଙ୍କ ଭାଇମାନେ ଯଥା- ଗିରିଜା ଶଙ୍କର, ମଙ୍ଗଳ ଚରଣ ଓ ଧ୍ରୁବଚରଣ ଆଚାର୍ଯ୍ୟଙ୍କର ଆନ୍ତରିକ ସହଯୋଗକୁ କେବଳ କୃତଜ୍ଞତା ମାଧ୍ୟମରେ ପୂରା କରାଯାଇନପାରେ । ଗ୍ରାମ୍ୟ କଳାକାର କୃଷ୍ଣଚନ୍ଦ୍ର ପ୍ରଧାନ ଓ କୃଷ୍ଣଚନ୍ଦ୍ର ଭୂଏ ବିକ୍ଷିପ୍ତ ହୋଇ ରହିଥିବା ସଂକୀର୍ତ୍ତନ ଗୀତଗୁଡ଼ିକୁ ନିଜ ହାତରେ ଲେଖି ଓ ମନେରଖି ସାଇତି ରଖିଥିଲେ, ଯାହା ପାଣ୍ଡୁଲିପି ପ୍ରସ୍ତୁତିରେ ବିଶେଷ ସାହାଯ୍ୟ କଲା । ମୋର ବଡ଼ ଭାଇ ଅର୍ନ୍ତଯାମୀ ଆଚାର୍ଯ୍ୟ ପାରିବାରିକ ପୃଷ୍ଠଭୂମିକୁ ଦର୍ଶାଇ ଏକ ଲେଖା

ପ୍ରସ୍ତୁତ କରିଛନ୍ତି, ଯାହା ସିଦ୍ଧ କରେ ଯେ ହେମଚନ୍ଦ୍ରଙ୍କ ସର୍ଜନାର କ୍ଷେତ୍ର ପ୍ରସ୍ତୁତିରେ ଉଭୟ ଗାଁ ଓ ପରିବାରର ଯଥେଷ୍ଟ ଭୂମିକା ରହିଥିଲା । କବିଙ୍କର ଦେହାନ୍ତ ପରେ ଏକ କ୍ଷୁଦ୍ର ଲେଖାରେ ମୋର ବନ୍ଧୁ ଓ ପ୍ରାବନ୍ଧିକ ଅଭିରାମ ବିଶ୍ୱାଳ 'ସମ୍ବାଦ' ପତ୍ରିକାରେ କବିଙ୍କର କୃତିର ଚର୍ଚ୍ଚା କରିଥିଲେ । ବନ୍ଧୁ ଗୌରୀଦାସ ପ୍ରଧାନ ବାପାଙ୍କର ଶ୍ରାଦ୍ଧ ଦିନ ଗାଁରେ ଆୟୋଜିତ ସାହିତ୍ୟ ସଭାରେ ଉପସ୍ଥିତ ରହି ତାର ଏକ ସଂକ୍ଷିପ୍ତ ବିବରଣୀ ପ୍ରସ୍ତୁତ କରିଥିଲେ । ବାପାଙ୍କର ସାହିତ୍ୟିକ ବନ୍ଧୁ ପ୍ରଫେସର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା 'ରାମରାହା'ର ଭୂମିକା ଲେଖିବା ପରେ ଏକ ଦୀର୍ଘ ସମୀକ୍ଷାତ୍ମକ ପତ୍ର ଲେଖିଥିଲେ । ସେସବୁକୁ ଏଥିରେ ପରିଶିଷ୍ଟରେ ସାମିଲ କରାଯାଇଛି । ମୁଁ ଉକ୍ତ ଲେଖକମାନଙ୍କଠାରେ ଚିରମାତ୍ରାରେ କୃତଜ୍ଞ । ମୋର ଭାଇ, ନିତୀଶ ଓ ଦ୍ୟୁତୀଶର ଅକୁଣ୍ଠ ସହଯୋଗକୁ ମଧ୍ୟ ଏହି ଅବସରରେ ମୁଁ ସ୍ମରଣ କରୁଛି । ପାଣ୍ଡୁଲିପିର ଡ଼ିଟିପିରେ ଓ ପ୍ରୁଫ ସଂଶୋଧନରେ ବନ୍ଧୁ ବିଜୟ ମହାନ୍ତି ଓ ଜିତେନ୍ଦ୍ର ଶତପଥୀଙ୍କର ଅକ୍ଳାନ୍ତ ପରିଶ୍ରମ ଓ ସହଯୋଗକୁ ଭୁଲିବାର ନୁହେଁ । ସାହିତ୍ୟିକ ବନ୍ଧୁ ସିଦ୍ଧାର୍ଥ ମହାପାତ୍ର, ପବିତ୍ର ଦାସ ଓ ଡ଼ଃ ବସନ୍ତ କୁମାର ପଣ୍ଡା ପାଣ୍ଡୁଲିପିର ଶୀର୍ଷକ ନିରୂପଣଠାରୁ ଆରମ୍ଭ କରି ଲେଖା ଚୟନ ଯାଏଁ ସର୍ବଦା ସହଯୋଗ କରିଛନ୍ତି । ସେମାନଙ୍କୁ ମଧ୍ୟ ବିଶେଷ କୃତଜ୍ଞତା ।

**ପ୍ରୀତୀଶ ଆଚାର୍ଯ୍ୟ**

୫ଆର୍‌-୭,
ରିଜିଓନାଲ ଇନିଷ୍ଟିଚ୍ୟୁଟ କେମ୍ପସ
ଭୁବନେଶ୍ୱର-୭୫୧୦୨୨
୨୦.୦୪.୨୦୧୨

# 'ମୋ ଜୀବନ ମୋ କଲମ'

ସରଳ ସହଜ ସାଦା ଜୀବନଟେ ମୋର। କଲମଟି ତା'ରି ଅନୁରୂପ। ବୈଚିତ୍ର୍ୟ ବା ବୈଶିଷ୍ଟ୍ୟ କିଛି ଥିବାର ମୁଁ ଜାଣେନା। ବାପା ସ୍ୱର୍ଗତ ପଣ୍ଡିତ ତ୍ରୋଳାମଣି ଆଚାର୍ଯ୍ୟ ଓ ମା' କମଳା ଦେବୀ। ଜନ୍ମ ୧୯୨୬ ମସିହା ଏପ୍ରିଲ କୋଡ଼ିଏ ତାରିଖ। ନିମ୍ନ ମଧ୍ୟବିତ୍ତ ପରିବାର। ବାପାଙ୍କର ସାତୋଟି ଭାଇ (ବାପାଙ୍କୁ ମିଶାଇ)ର ଅବିଭକ୍ତ ପରିବାର। ଏଣୁ ଟାଣ୍ ଟୁଣ୍ ଚଳାଚଳ ଆମ ପାଇଁ ଅୟସ କି ଅଦରକାରୀ ଖର୍ଚ୍ଚ ପାଇଁ ବାଟ ନଥିଲା। ମୋ ନିଜ ଗାଆଁ ଗର୍ଗଣାରେ ସେତେବେଳେ ସ୍କୁଲ ନଥିଲା। ପାଖ ଗାଁ ଜନର୍ଗାରେ ଉଚ୍ଚ ପ୍ରାଥମିକ ଶିକ୍ଷା ସମାପନ କଲି। ସେତେବେଳର ଶିକ୍ଷକ ସ୍ୱର୍ଗତ ଫୁଲଶର ପ୍ରଧାନ, ୰ମଧୁସୂଦନ ବାରିକ ଏବଂ ୰ତ୍ରୈଲୋଚନ ଦାଶ ଆଦିଙ୍କର ପ୍ରଭାବ ମୋ ଜୀବନରେ ମୋତେ ଏବେ ବି ଦକ୍ ଦକ୍ ଦିଶେ। ତା ପରେ ମାଧ୍ୟମିକ ଶିକ୍ଷା ସୋହେଲାରେ । ଏଠାରେ ମଧ୍ୟ ୰ଗୋପୀନାଥ ଶତପଥୀ, ୰ମୁରଲୀଧର ବାରିକ, ୰ଖତି ତ୍ରିପାଠୀ, ୰ଚକ୍ରଧର ହୋତା ଆଦି ଶିକ୍ଷକ ବର୍ଗଙ୍କର ସତ୍‌ଶିକ୍ଷା ଆମର ଜୀବନ ଗଠନରେ ଏକ ଏକ ବହୁମୂଲ୍ୟ ଉପାଦାନ ବୋଲି ନ ମାନିଲେ ଅସୁନ୍ଦର ହେବ। ତାପରେ ହାଇସ୍କୁଲ ଶିକ୍ଷା। ବରଗଡ଼ ଜର୍ଜ ହାଇ ଇଂଲିଶ ସ୍କୁଲରେ; ଜିଲ୍ଲାରେ ମାତ୍ର ଦୁଇଟି ହାଇସ୍କୁଲ ଥିଲା। ତୃତୀୟ ହାଇସ୍କୁଲ ଆରମ୍ଭ ହେଲା ଇରମ୍ବାରେ ଆମର ପ୍ରଥମ ହାଇସ୍କୁଲ ପଦାର୍ପଣ ବର୍ଷ। ୧୯୩୯ ରୁ ୧୯୪୪ ର ଫେବ୍ରୁୟାରୀ ପର୍ଯ୍ୟନ୍ତ ବରଗଡ଼ରେ ରହି ଶିକ୍ଷାପ୍ରାପ୍ତି। ମୋର ପିତା ପ୍ରାଥମିକ ଶିକ୍ଷକ ପଦରୁ ମାଧ୍ୟମିକ ଶିକ୍ଷକ ହୋଇସାରି ସୋହେଲାରୁ ଯାଇ ଧମା ମାଧ୍ୟମିକ ସ୍କୁଲରେ ଥାଆନ୍ତି। ମାସିକ ଦରମା ଟ ୧୫ ମାତ୍ର। ଆମେ ତିନିଭାଇ ଯାକ ଏକ ସଂଗରେ ହାଇସ୍କୁଲ ବିଦ୍ୟାର୍ଥୀ; ପୁଣି ଛାତ୍ରାବାସ ଆଶ୍ରୟୀ। ଜକାମାନେ ଅଲଗା ହୋଇଗଲେ। ଏଣୁ ଆଗରୁ ଚଳାଚଳ ଅତି ନିୟନ୍ତ୍ରଣ ଭିତରେ। ବରଗଡ଼ ଜର୍ଜ ହାଇସ୍କୁଲରେ ତଦାନୀନ୍ତନ ଶିକ୍ଷକ ବର୍ଗ ଅତି ଆଦର୍ଶ ସ୍ଥାନୀୟ। ସେମାନଙ୍କର ଶିକ୍ଷାଦାନ ଆମର ସୌଭାଗ୍ୟ ବୋଲି ମନେ ହୁଏ। ପ୍ରଧାନଶିକ୍ଷକ ୰ଶ୍ରୀ ହାରାଚାଂଦ ନାୟକ, ଶ୍ରୀ ଗଙ୍ଗାଧର ରଥ। ରଥ ଜୀବନରେ ଅଛନ୍ତି କି ନା ଜାଣେନା। ୰ଶ୍ରୀ ଜଗନ୍ନାଥ ମିଶ୍ର, ୰ମିତ୍ରଭାନୁ ପ୍ରଧାନ, ୰ଶଶିଭୂଷଣ ମିଶ୍ର ଶର୍ମା, ୰ସତ୍ୟ ନାରାୟଣ ବହିଦାର ଆଦି ଶିକ୍ଷକ ବର୍ଗଙ୍କର ସ୍ୱଭାବ ଓ ପ୍ରଭାବ ଭୁଲି ହେବାର ନୁହେଁ; ଅଳ୍ପ ସମୟ

ପାଇଁ ହେଲେ ବି ୰ଶ୍ରୀ ଶଶିଭୂଷଣ ଶତପଥୀ ୰ଶ୍ରୀ ରାଜେନ୍ଦ୍ର ପଣ୍ଡା, ଶ୍ରୀ ଶୀମତ୍ ସାହୁ, ଶ୍ରୀ ନିତ୍ୟାନନ୍ଦ ଦର୍ଜୀ, ଶ୍ରୀ ନବୀନ କିଶୋର ସାହୁ, ଶ୍ରୀ ମଦନ ମୋହନ ସାହୁ ଆଦିଙ୍କ ଶୀକ୍ଷାଦାନ ପଦ୍ଧତି ଏବେବି ଗର୍ବ ଓ ଗୌରବ ଆଣିଦିଏ ନିଜ ମନରେ। ଆମ ହାଇସ୍କୁଲରେ ଯେତେବେଳେ ୰ଶ୍ରୀ ଶଶିଭୂଷଣ ମିଶ୍ର ଶର୍ମା (ଶଶି ବାବୁ) ସ୍ୱାଧୀନତା ଓ ସାହିତ୍ୟରେ ଛାତ୍ରମାନଙ୍କ ଅନୁରାଗ ସୃଷ୍ଟି କରିବା ସତରେ ଏକ କର୍ତ୍ତବ୍ୟ ବୋଲି ଧରିନେଇଥିଲେ ମନେହୁଏ। ଆମେ ଏବେ ଯାହା ଅଟୁ ତାହାର ଅଧିକାଂଶ ଶଶିବାବୁଙ୍କ ଦାନ ବୋଲି ମାନିବାରେ ମୋର ଆଦୌ ଆପତ୍ତି ନାହିଁ ।

ଓଡ଼ିଆ ସାହିତ୍ୟରେ ସବୁଜ ଯୁଗ ଆରମ୍ଭ ହୋଇସାରିଥାଏ। କବି ୰ମାୟାଧର ମାନସିଂହ, କାଳିନ୍ଦୀ ଚରଣ ପାଣିଗ୍ରାହୀ, ପଦ୍ମ ଚରଣ ପଟ୍ଟନାୟକ ଆଦିଙ୍କର ପ୍ରଖ୍ୟାତି ସାହିତ୍ୟ ଜଗତରେ ପ୍ରତିଷ୍ଠିତ, ପରିଚିତ ତଥା ପ୍ରସାରିତ ହୋଇସାରିଥାଏ। ସେମାନଙ୍କର ଲେଖାମାନ ପଢ଼ିବାକୁ ମୋର ବିଶେଷ ଆଗ୍ରହଥାଏ। ଯାହା ପାଇଁ ପଢ଼ିବାବେଳେ ମୁଁ ଶ୍ରେଣୀ ପାଠ୍ୟ ପ୍ରତି ଅବହେଳା ବି କରେନି। ସାହିତ୍ୟ ପତ୍ରିକା ଖୁବ୍ କମ୍ ଥାଏ। ଆମ ଶ୍ରେଣୀରେ (ବୋଧହୁଏ ନବମ ଶ୍ରେଣୀ) ଏକ ହସ୍ତଲିଖିତ ପତ୍ରିକା ସହପାଠୀ ୰ଘନଶ୍ୟାମ ପୁରୋହିତଙ୍କର ସଂପାଦନାରେ ଆତ୍ମପ୍ରକାଶ କଲା। ସେଥିରେ ମୋର ପ୍ରଥମ ଲେଖା 'ହୁମା ପଥେ' ସ୍ଥାନ ପାଇଲା। କେବଳ ସହପାଠୀ ନୁହନ୍ତି, ଶିକ୍ଷକ ମାନେ ବି ଭଲ ହୋଇଥିବାର କହିଲେ। ଟିକିଏ ଉତ୍ସାହ ଆସିଲା। ଫଳରେ ଛୋଟ ଛୋଟ ଗୀତ କବିତାମାନ ଲେଖାଲେଖି କଲି। ମେଟ୍ରିକ୍ ପାଶ୍ କଲି ୧୯୪୪ରେ; ଘରେ ରହିଲି କିଛିଦିନ। ତାପରେ କିଛିଦିନ ବିଜେପୁର ମାଇନର ସ୍କୁଲ ତଥା ବରଗଡ଼ କର୍ଜ ହାଇସ୍କୁଲରେ ଶିକ୍ଷକତା କଲି। ଏ ଦିନ ମାନଙ୍କରେ ପ୍ରାୟ ଘର ଓ ଗାଁ ସଙ୍ଗେ ସଂପୂର୍ଣ୍ଣ ସଂପର୍କ ଥାଏ। ସମବୟସୀ ମାନଙ୍କୁ ନେଇ ନାଟକ (drama) ସଂସ୍ଥା ଗଠିତହେଲା ଆମ ଗାଁରେ। ସେତେବେଳେ ଗାଁମାନଙ୍କରେ ନାଚ ବା ଗୀତିନାଟ୍ୟ ଆଦି ହେଉଥିଲା। ଗାଁ ସ୍ତରରେ drama ପ୍ରଥମ ଥିଲା। ମୋତେ ଲେଖିବାକୁ ହେଲା ନାଟକ। ପ୍ରଥମ ନାଟକ 'ଅଭିଶାପ' ସଫଳ ହେଲା। ପ୍ରଶଂସା ମିଳିଲା। ଗୋଟାକ ପରେ ଗୋଟିଏ ନାଟକ ଲେଖା ଓ ମଞ୍ଚୀକରଣ ଚାଲିଲା 'ନିର୍ବାସିତା', 'ପରୀକ୍ଷିତ', 'ମହାରଥୀ କର୍ଣ୍ଣ' (୧୯୫୮ରେ କଟକ ଟ୍ରେଡ଼ିଂ କଂପାନୀ ଏ ନାଟକକୁ ନିଜେ ମାଗି ପ୍ରକାଶକଲା) ତାପରେ ସାମାଜିକ ନାଟକ 'ବିଶ୍ୱାସ' ଓ 'ପ୍ରତୀକ୍ଷା'। ମଝିରେ ମଝିରେ ଅନେକ ଗୀତ କବିତା ଲେଖା ଚାଲିଥାଏ। ଶିକ୍ଷକତା ଛାଡ଼ି ସରକାରୀ ଚାକିରି କରି କୃଷିବିଭାଗ ଓ ପରେ ଗ୍ରାମ ଗୋଷ୍ଠୀ ବିଭାଗରେ ବିଭିନ୍ନ ପଦବୀରେ ପ୍ରାୟ ୨୨ବର୍ଷ

ଚାକିରି କଲି ଓ ୧୯୬୬ ଜାନୁୟାରୀରେ ଚାକିରିରୁ ଇସ୍ତଫା ଦେଇ ରାଜନୀତି ଓ ସମାଜ ସେବା କଲି ଓ ଏଯାବତ୍ କରୁଛି। ସେତେବେଳେ ପେନ୍‌ସନ୍ ପାଇଁ ଚେଷ୍ଟା କରି ନ ଥିଲି; invalid pension ମିଳିଥାନ୍ତା।

ପଦ୍ମପୁର ବ୍ଲକରେ ଥିଲାବେଳେ, ମୋର ଗୋଟିଏ ରମ୍ୟ ରଚନା 'ମୃଦୁସୁଲୀ' କଲିକତାରୁ ପ୍ରକାଶ ପାଉଥିବା ସିନେମା ପତ୍ରିକାରେ ବାହାରିଲା। ପରେ 'ପଞ୍ଚାୟତ ପ୍ରଦୀପ'ରେ 'ଗଙ୍ଗାଧର କେବଳ ଜଣେ କବି ନଥିଲେ' ପ୍ରକାଶ ପାଇଲା। ଅନେକ ପାଠକଙ୍କଠାରୁ ପ୍ରଶଂସା ସୂଚକ ଚିଠିମାନ ପାଇ ଟିକିଏ ଉତ୍ସାହିତ ହେଲି।

ସେତେବେଳେ ରୀତିଯୁଗୀୟ ସାହିତ୍ୟପ୍ରେମୀ ଓ ତଦାନୀନ୍ତନ ଆଧୁନିକ ସାହିତ୍ୟ ସେବୀମାନଙ୍କ ମଧ୍ୟରେ କଥା କଟାକଟି ଚାଲିଥାଏ। ଜଣେ ଆଧୁନିକ ସାହିତ୍ୟ ସ୍ରଷ୍ଟା ଭଞ୍ଜଯୁଗୀୟ ସାହିତ୍ୟ ସବୁକୁ ଭାରତ ମହାସାଗରରେ ଫିଙ୍ଗିଦେଲେ ବି ଚଳିବ ବୋଲି ଦେଇଥିବା ମତାମତ ଅନେକ ସାହିତ୍ୟସେବୀଙ୍କୁ ବାଧିଥାଏ। ସାହିତ୍ୟରେ ଅଳଙ୍କାର ସୃଷ୍ଟି କରିବାରେ ବ୍ୟାକରଣର ବେକ ମୋଡ଼ିବାର ଓ ଟଣାଓଟରା କରି ଶବ୍ଦ ଯୋଜନା ଓ ବିନ୍ୟାସର ସେମାନେ ତ୍ରୁଟି ଦର୍ଶାଉଥାନ୍ତି। ମୋ ମନରେ ଏକ ଭାବନା ଆସିଲା ଯେ ବ୍ୟାକରଣ ଦୋଷ ହୀନ ଓ ସରଳ ସାବଲୀଳ ଶୈଳୀରେ ଅଳଙ୍କାର ପରିବେଷଣ କଲେ କିପରି ହେବ? ଏହା ଭାବି ମୁଁ ଲେଖିଲି ସବୁପ୍ରକାର ଅଳଙ୍କାର ନେଇ କାବ୍ୟ 'ପ୍ରଣୟ ପ୍ରକାଶ'। ଶଶିବାବୁଙ୍କର ବହୁତ ଉଚ୍ଚ କୋଟିର ପ୍ରଶଂସା ଓ ପଣ୍ଡିତ ରାଘବ ମିଶ୍ରଙ୍କ ଅନୁକୂଳ ମତ ମୋତେ ଆହୁରି ଉତ୍ସାହିତ କଲା। ମୋର ପିତା, ଓ ପିତୃବ୍ୟ ୰ମନୋହର ଆଚାର୍ଯ୍ୟ ଉଭୟେ ବିଦ୍ୱାନ୍ ଓ କବି ଥିଲେ। ସେମାନଙ୍କର ପ୍ରଚ୍ଛନ୍ନ ପ୍ରଶଂସା ମୋର ମନ ତଥା କଲମକୁ ଟିକିଏ ଦୃଢ଼ତା ଦେଲା। ୧୯୭୨ ପରେ ପୁଣି ଏକ ଆଳଙ୍କାରିକ କାବ୍ୟ ଲେଖିଲି 'ଶବରୀ ସନ୍ଦେଶ'। ଅନେକ ଅଚିହ୍ନା ପାଠକଙ୍କ ଠାରୁ ବହୁ ପ୍ରଶଂସା ସୂଚକ ପତ୍ର ପାଇଲି। ବାଲୁଗାଁର ମୋର ଜଣେ ବନ୍ଧୁ ଶ୍ରୀ ବାନାମ୍ବର ମହାପାତ୍ର ବହୁତ ଅସୁବିଧା ସତ୍ତ୍ୱେ ସ୍ୱତଃପ୍ରବୃତ୍ତ ହୋଇ ଏ କାବ୍ୟ ପ୍ରକାଶ କଲେ। ଅନେକ ପ୍ରବନ୍ଧ, ରମ୍ୟ ରଚନା, ଗୀତ, କବିତା ବି ଲେଖୁଥାଏଁ। 'ବଏଲା ରେ' ଏକ ଲଳିତ ନିବନ୍ଧ ୧୨ଟି ଖଣ୍ଡ ପ୍ରବନ୍ଧରେ ଭୂମିପୁତ୍ର ଓ କୃଷକ ଜ୍ୟୋତିରେ କ୍ରମାନ୍ୱୟରେ ପ୍ରକାଶିତ ହେଲା। ଓଡ଼ିଆ ସାହିତ୍ୟ ଅରଣ୍ୟରେ ବୁଲାବୁଲି କଲେ ବି ଆତ୍ମସନ୍ତୋଷ ନ ଥାଏ। ଓଡ଼ିଶା ସାହିତ୍ୟ ଏକାଡ଼େମୀ ବା କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଆମ ଏ ଅଞ୍ଚଳର ଲେଖକମାନଙ୍କୁ ସମୁଚିତ ସ୍ଥାନ ବା ସମ୍ମାନ ଦେବାରେ ସର୍ବଦା କୁଣ୍ଠା ପ୍ରକାଶ କରୁଥିବାର ମୁଁ ମନେକରେଁ। ସମ୍ବଲପୁରୀ ସାହିତ୍ୟ ପ୍ରତି ମୋର

ଅବଚେତନ ମାନସରେ ବହୁଦିନରୁ ଶ୍ରଦ୍ଧା ଥାଏ। ସେହି ଶ୍ରଦ୍ଧା ସମ୍ବଲପୁରୀ ରେ ଲେଖିବାକୁ ପ୍ରଭୂତ ପ୍ରେରଣା ଦେଉଥାଏ। ସେ ଗୋଟିଏ ଅଲଗା କଥା। ଏବେ ମୁଁ ପ୍ରାୟ ସମ୍ବଲ୍‌ପୁରୀରେ ହିଁ ଲେଖୁଛି। ଏଣୁ କାହିଁକି ଲେଖୁଛି କହିବା ଆବଶ୍ୟକବୋଲି ମନେ କରେଁ। ତା ପୂର୍ବରୁ ଓଡ଼ିଆ ଲେଖା କଥା ସାରିଦିଏଁ। 'ଶବରୀ ସନ୍ଦେଶ' ପରେ ଏକ କବିତା ସଂକଳନ କରିଛି 'ପାଥେୟ ମୋ ଜୀବନ ଯାତ୍ରାରେ'। ବଙ୍ଗଳା ଭାଷାରେ କୀର୍ତ୍ତନ ଓ ସଂଚାର ଗୀତ ଅନେକ। ଓଡ଼ିଶାର ଗ୍ରାମ୍ୟସ୍ତରରେ ତାକୁ ଶୁଣାଯାଏ। ତେଣୁ, ବିକଳ୍ପ ରୂପେ ଅନେକ ଗୀତିଗାଥାମାନ ଓଡ଼ିଆରେ ଲେଖିଛି। 'କୃଷ୍ଣକେଳି' ନାଁରେ ଏକ ଦଣ୍ଡନାଚ୍ ବି ଲେଖିଛି।

ଅତି ଛୋଟ ବୟସରେ ଦିନେ କପିଳ ମହାପାତ୍ର ଆସି ମୋର ବାପାଙ୍କୁ ତାଙ୍କର ସ୍ୱଲିଖିତ ସମ୍ବଲ୍‌ପୁରୀ ରାମାୟଣ ଶୁଣାଇଲେ। ବାପା ସଂସ୍କୃତ ଓ ଓଡ଼ିଆ ସାହିତ୍ୟକାର ରୂପେ ଏ ଅଞ୍ଚଳରେ ଖ୍ୟାତି ପାଇଥିଲେ। ତାଙ୍କର ମତାମତ ପାଇଁ ମହାପାତ୍ର ଆଗ୍ରହୀ ଥିଲେ। ବାପା କହିବାର ମୋର ମନେ ଅଛି, 'ସମ୍ବଲ୍‌ପୁରୀ ଅଲଗା ଭାଷା, ଏଥିରେ ସାହିତ୍ୟ ସୃଷ୍ଟି କରିବା ପ୍ରଶଂସାର କାର୍ଯ୍ୟ ଆପଣ ଲେଖିଚାଲନ୍ତୁ। କବି ଗଙ୍ଗାଧର ମଧ୍ୟ ସମ୍ବଲ୍‌ପୁରୀ ଶବ୍ଦମାନ ତାଙ୍କ ଲେଖା ମାନଙ୍କରେ ବ୍ୟବହାର କରି ଏ ଭାଷାକୁ ପ୍ରତିଷ୍ଠା ଦେବାପାଇଁ ଚାହିଁଥିଲେ।' ଏହା ଏକ ମଞ୍ଜି ହୋଇ ମୋ ମନ ଭୂମିରେ ଥାଏ। ହାଇସ୍କୁଲରେ ଶଶିବାବୁଙ୍କ କେତୋଟି ଆଧ୍ୟାତ୍ମିକ ସମ୍ବଲ୍‌ପୁରୀ ଗୀତ ଓ ଅଧ୍ୟାପକ ଦର୍ଜୀଙ୍କର ପ୍ରେମ ଗୀତ ମାନ ପାଣି ଓ ପବନ ରୂପରେ କାମ ଦେଲା। ଟିକିଏ ଖତ ସାର ମିଳିଲା ସାହିତ୍ୟ ଶିକ୍ଷକ ସତ୍ୟନାରାୟଣ ବହିଦାରଙ୍କର ସମ୍ବଲପୁରୀ ଉପରେ ଥିବା ଗଭୀର ଆକର୍ଷଣୀୟ କଥାବାର୍ତ୍ତା। ମୁଁ ସମ୍ବଲ୍‌ପୁରୀ ଗୀତ ମାନ ଲେଖିଲି, ପ୍ରଶଂସା ବି ମିଳିଲା। ସେ ସମୟରେ ଏକ ଉପାଖ୍ୟାନକୁ ନେଇ ଦୁଇ ତିନୋଟି ସର୍ଗ ସମ୍ବଲପୁରୀରେ ଲେଖିଥିଲି ଯାହା ପରେ 'ସତର୍ ସତୀ ବୃନ୍ଦାବତୀ' କାବ୍ୟର ରୂପ ନେଲା। ସମ୍ବଲ୍‌ପୁରରେ ବନ୍ଧୁ ଧନପତି ମହାପାତ୍ର ଓ ନମସ୍ୟ ବିଦ୍ୱାନ୍ ଶ୍ରୀ ନୀଳମାଧବ ପାଣିଗ୍ରାହୀଙ୍କ ଉଦ୍ୟମରେ ସଭାମାନଙ୍କରେ ତାହା ଆଲୋଚିତ ହେଲା। ବନ୍ଧୁ ମହାପାତ୍ର ପ୍ରକାଶନର ଦାୟିତ୍ୱନେଲେ। ତାପରେ ବନ୍ଧୁମାନଙ୍କ ଅନୁରୋଧରେ ସମ୍ବଲପୁରୀ 'ନୁନୀ' କାବ୍ୟ ଲେଖିଲି। ଗଦ୍ୟ ସାହିତ୍ୟ ପାଇଁ ଅନେକ ସମ୍ବଲ୍‌ପୁରୀ ପ୍ରେମୀଙ୍କର ଇଚ୍ଛା ପୂର୍ତ୍ତି ଓ ମୋ ନିଜର ଗ୍ରାମ୍ୟାନୁଭୂତିର ଆତ୍ମପ୍ରକାଶ ପାଇଁ ଲେଖିଲି ଗଳ୍ପ ସଂକଳନ 'କଥାନି ସତ୍ ସତାନି' । ବନ୍ଧୁ କିଶନ ପଟ୍ଟନାୟକଙ୍କର ପ୍ରେରଣା ଓ ଗୁରୁପ୍ରତିମ ନୀଳମାଧବ ପାଣିଗ୍ରାହୀଙ୍କର ଉଦ୍ୟମରେ ତାହା ପ୍ରକାଶିତ ହେଲା। ତାପରେ ବହୁ ବନ୍ଧୁଙ୍କର

ଅନୁରୋଧରେ 'ରାମ୍‌-ରାହା' ନାମରେ ସମ୍ବଲ୍‌ପୁରୀ ରାମ୍‌କଥା ଲେଖୁଛି। 'ଆଦ୍ୟ କାଣ୍ଡ' ସରିଲାପରେ ମନରେ ଏକ ନୈରାଶ୍ୟ ଜନିତ ଅବସାଦ ଆସିଛି। ବହୁତ ଆୟାସ, ସାଧନା ଏକାଗ୍ରତା ଓ ଅଧ୍ୟବସାୟ ଆବଶ୍ୟକ କରୁଛି 'ରାମ୍‌-ରାହା'। ଏସବୁ କେବେ କିଏ ପ୍ରକାଶ କରିବ ଗୁଡ଼ାଏ ଖର୍ଚ୍ଚ କରି ? କିଏ ବା ପଢ଼ିବ ଓ କାହିଁକି ପଢ଼ିବ ? ଏମିତି ଅବସନ୍ନତାରେ ଲେଖା ଆଗେଇ ପାରିନି। ପାଣ୍ଡୁଲିପି ପାଠପରେ ବନ୍ଧୁ ବିଦ୍ୱାନ୍‌ ପୁଣି ଅନୁରୋଧ ମାଧ୍ୟମରେ ପ୍ରେରଣା ଦେଉଛନ୍ତି। ଚେଷ୍ଟା କରୁଛି ସାରିବାକୁ । ଏ ମଧ୍ୟରେ ଭେଡ଼େନ ମନୋହର ସାହିତ୍ୟ ସଂସଦ, କୋଶଳୀ ଭାଷା ସାହିତ୍ୟ, ବରପାଲି କଲେଜ ବସନ୍ତ ମିଳନ, ସମଲ୍‌ପୁରୀ ଲେଖକ ପରିଷଦ, ଅଭିମନ୍ୟୁ ସାହିତ୍ୟ ସଂସଦ ଘେଁସ୍‌ ମୋତେ ଉପାୟନ ଓ ମାନପତ୍ର ମାଧ୍ୟମରେ ମାଧ୍ୟମରେ ସଂବର୍ଦ୍ଧନା କରିଛନ୍ତି।



(ଲେଖା ସମୟ : ଜୁଲାଇ ୧୯୯୪)

# ଗାଏଲେଁ ବୁଝ୍‌ବ

୧

## ହେ ରାମ୍

ପୁଥି ପୁରାନ୍ ପୁର୍ନା ପଡ଼୍‌ସି, ତୁଇଁ ସବୁଦିନ ନୂଆଁଟେ
କଁଟି ନେ ହେବାର ଦରିଆ ତୁଇଁ ଅଁଟି ଯିବାର୍ ମୁଇଁ ଚୁଆଁଟେ । (୧)
ଭାବ-ରସର ତୁଇଁ ବରକଷ ରସି ଛିଡ଼ି ଯିବାର୍ ମୁଇଁ ଦୁଆଁଟେ,
ମାହାପୁରୁ ତୁଇଁ ମହାନ୍ ମେରୁ ମୁଇଁ ଅଗବାର ଚିଆଁଟେ । (୨)
(ମୁଇଁ) ଟୁକରା କାଗଜର ଅର୍ଜବା ଲେଖା, ତୁଇଁ ଅପଢ଼ ଆର ଅଲେଖ
କେନ ଦମହେଁ ମୁଇଁ କହେମି ଦୁହେ ଅଭିନ ଆଭର ଏକ । (୩)
ଡାଲଟେ ପଡ଼ଲେଁ ଫାଲଟେ ଗରଜେ ତୁଇଁ ମହାଘୋର ଝାର
ଏକଲା ଏକଲା ଛାଡ଼ି ନେସୁ ଜେ ମୁଇଁ ଯିମି କେନ ପାର? (୪)
କାଣା ମାଗମି ସବୁତ ଦେଇଛୁ ଡରହେଁ ଡରହେଁ ମୁଇଁ ଡାଙ୍ଗ
କିଛି ନାଇଁ ଦେଲେଁ ଭିଲ୍ ଚଲବା ଦେବୁହେଲେଁ ଟିକେ ସାଙ୍ଗ । (୫)
ସାଙ୍ଗ୍ ଛଡ଼ା କରି କାଏଁ ମଜା ତୁଇଁ ପାଏସୁ କହ ରାମ !
କିଛି ନାଇଁ ଦେଲେ ଭିଲ ଚଲମି ସୁରେଁ ଥାଉ ତୋର ନାମ । (୬)

❖❖❖

୨

## ମହାପୁରୁ ଛନେ ଠହର

ମହାପୁରୁ ଛନେ ଠହର ମୁଇଁ ବନ୍ଏ କରି ଦେଖେଁ ନୁହେଁ
କେନ୍ ଚେହେରା କେତେ ବେଲେଁ ଭୁଲିହେବା ଭାଏଲ୍ ଭୁଲେଁ ଭୁଲେଁ
ଯାହା ଭି ଦେଖିଛେଁ ଆତ୍ମା ଭିତ୍‌ରେଁ (ମୁଇଁ) ବନ୍ଏ କରି ଲେଖେଁ ନୁହେ । (୦)
ରାମ୍ ବୁଲୁଥିଲେ ଝାର୍‌କେ ଝାର୍

ମୁଣ୍ଡେଁ ଥିଲା ଜଟାର୍ ଭାର୍
ମନେ ଥିଲା ଚିନ୍ତା (ହୋ) କାହାର୍ ଭକ୍ତି କେନ୍ତା
ଶବ୍ରୀ କେ ଯାଇ ବଏଲେ ମତେ, ଭୋକ୍ କରୁଛେ କେତ୍ନି କେତେ
ଶବ୍ରୀ ଆନ୍ଲା ଫଲ୍, (ହୋ) ବାଛି ଭଲ୍ ଭଲ୍
ଖାଏଲା ବେଲ୍କେ ବଏଲା ରହ
ଭଲ୍ ଅସାର୍ ବାଛେଁ ନୁହେଁ କସା-ମଧୁର୍ ଚାଖେଁ ନୁହେ। (୧)
ଗଙ୍ଗାର୍ ଭିତ୍ରେଁ ଡଙ୍ଗା ଧରି ନାଉରୀ ବୁଢ଼ା ବଏଲା ହରି
ତୋର୍ ପାଦର୍ ଧୁଏଲ୍ (ହୋ) ଖୁଆବା ମତେ ଗୁଏଲ୍
ମାଏଝା ଯଦି କୁଣ୍ଲୀ ହେବା ବେ'ଷା ମୋର୍ ଭୁଷ୍ଲି ଯିବା
ଦେଖା ଟିକେ ତୋର୍ ପାହା (ହୋ) ଧୁଇଧୁଆ ନେସିଁ ବୁଆ
ଧୁଇସାରି ବଘ୍ଲା ବେଲ୍କେ ବଏଲା ରହ, ପୁଛେଁ ନୁହେ,
(ଆଉର୍) ବନେ କରି ଦେଖେଁ ନୁହେ, (ତୋର୍) ରୂପ୍ ଅମୃତ୍ ଢୁକେଁ ନୁହେ। (୨)



## ୩

## ଯାହା ହଇ ଗଲେ ହେବା

ଯାହା ହଇ ଗଲେଁ ହେଇଯିବା ପଛେ ନାଇଁ ଛାଡ଼େଁ ମୁଇଁ ରାମ୍କେ
କିଏ ପଠାବା ବନ୍କେ ମୁଇଁ ଦେଖମି ସେ ହାରାମ୍ କେ। (୦)
ବଡ୍ ହେଇ କରି ଜନମ୍ ହେଇଛେ ନାଇଁ ହେତା କାଏଁ ରଜା
ନାଇଁ ଖାଇକରି ରହେବା କେନ୍ତା ପେଡା ମିଠେଇ ଖଜା
କେନ୍ତା ଢ଼ଙ୍ଗେ ଖାଏବା ବନେ କସା କେନ୍ଦୁ ଆମ୍କେ ରେ ଜାମ୍ କେ। (୧)
ରାମର୍ ବାଗିର୍ ପିଲା ଗୁଟେ ସଭେ ଜାକିର୍ ନୁର
ତାର୍ ସର୍ସିଆ ଯେତ୍କି ଅଛନ୍ ଗୁଟେ ଗୁଟେ କରି ଜୁଇ
ତାର୍ ଲାଗି ତିଆର୍ ଅଛେଁ ଦେବାର୍କେ ମୋର୍ ଜାନ୍କେ ରେ ପ୍ରାଣ୍ କେ। (୨)



## ୪
## ତତେ କେନ୍ ନାଆଁଥି ଡାକ୍‌ମି

ତତେ କେନ୍ ନାଆଁଥି ଡାକ୍‌ମି
ତୋର୍‌ତ ନାଆଁ ଯେତେ ତେତେ
ତୁଇଁତ ଗୁଟେ ଠାନର୍ ନୁହୁ କେ'ନ ନୁର୍‌ମି ଯାଇ ତତେ । (୦)
ତେଜ୍ ସାଗରୁ ପାଏଲେଁ ଡୁଏ ଭଲ୍‌ସନ୍ କନ୍ ବେଲ୍ ଜୁଏ
ତାର୍ ଆଗ୍‌ମୁଣ୍ଡେଁ କେନ୍ ଆଲ୍‌ଚି ବାଢ଼ମି କହ କେତେ । (୧)
ଯାର୍ ନିଶାସୁଁ ବେଦର୍ ଜନମ୍ ତାର୍ ଆଗ ମୁଣ୍ଡେଁ କେନ୍ ଭଜନ୍
କେନ୍ ଭାଷାଥିଁ କେନ୍ତା କରି ପଢ଼ମି
ଯାର୍ ପେଟେଁ ହଜାର୍ ହଜାର୍ ଜଗତ୍ ଯାକର୍ ବସେ ବଜାର୍
ତାର୍ ଲାଗି ଫେର୍ କେନ୍ ପର୍‌ସାଦ୍ ବାଢ଼ମି କହ କେତେ । (୨)
ଭକ୍ତି ଟିକେ ଥିଲେ ମିଶି ମାଏନ୍ ବେଭାର୍ ଅଏନ୍ ଲାଗ୍‌ସି
ସେଟା ହେଲେଁ, ତୁଇଁ ନାଇଁ ହେଲେଁ କେନୁ ପାଏଁମି
ତୋର୍ ଭାବ୍‌କେ ହେତେଇ ଦେଲେଁ, ତୋର୍ ଗୀତ୍‌କେ ବତେଇ ଦେଲେଁ
ତୋର୍ ହଇ କରି ମୁଇଁ ସିନେ ଖାଲି ଗାଏମି
ତୋର୍ ମୋର୍ ପରାଭେଦ୍ ନାଇନ ପରେ କହେସି ବେଦ୍
କେତେ ବେଲେଁ ଘାଏ ସେ ଭାବେଁ ହାଏ ଭସେଇ ନେବୁ ମତେ । (୩)

❖❖❖

## ୫
## ରାମ୍‌ଭି ନେଇଁ କହିପାରେ ରାମ୍ ନାମର୍ ମହେମା

ରାମ୍ ଭି ନେଇଁ କହିପାରେ ରାମ୍ ନାମ୍‌ର ମହେମା
ତୁଇଁ ମୁଇଁ କି ଆଉର୍ କିଏ କେତେ କରି କହେମା । (୦)
ଉଲ୍‌ଟେଇ କରି ନାମ୍ କେ ଧରି ଡାକୁ ରତ୍‌ନାକର୍
ସାମେନ୍ ନୁହେ ରାମେଣ୍ ଲେଖି ମନ୍ ମୋହେ ସମ୍‌କର୍
ରାମ୍‌କେ ପାଇ ରାମର୍ ନାରୀ ନାଇଁ ଯାଇ କରି ଜନକ୍‌ପୁରୀ

ରାମ୍‌ନାମ୍ ଧରି ଆଇଛୁ ମା ଆ ଏକା ସାଙ୍ଗେ ରହେମା । (୧)
ରାମ୍‌କେ ପାଇ ରାବଣର୍ ଭାଇ ମାହାର୍ସାଦ୍ ବସି ନେଲା
ଲଙ୍କା ରାଇଜର୍ ରାଜଗାଦୀ ଲୁଙ୍ଗେ ଠକେଁ ପଡ଼ିଗଲା
ରାବାଣର୍ ମନେ ରାମର୍ ଡର୍ ରାମ୍‌ରାମ୍ ବଲେ ଅଠିପର୍
ଯାହା ପାଏଲା ଜାହାର୍ ଭାଏଗ୍ ଆମେ କେନୁ କେଭେଁ ପାଏମା
ସେଥିଲାଗି ଭାଇ ଆସ ସଭେ ରାମ୍ ରାମ୍ ଗାଏମା । (୨)



୬

## ମାହାପୁରୁ ହୋ ମୁଇଁ ମହାନ୍ ମୁରୁଖ ଡାକୁଛେଁ

ମାହାପୁରୁ ହୋ ମୁଇଁ ମହାନ୍ ମୁରୁଖ ଡାକୁଛେଁ
ଜପ୍ ତପ୍ ଗିଆନ୍ ଧିଆନ୍ ଦାନ୍ ପୁଇନ୍ ବେଦପୁରାଣ୍
ନାଇଁ ଜାନେ କିଛି ଛି ଛି ଖାଲି ହିନ୍ ଭାବେଁ ଦିନ୍ କାଟୁଛେଁ । (୦)
କେନ୍ ଜାନ୍‌ମି ଯେନ୍ ରକ୍‌ମେ ଡାକ୍‌ଲେ ହରିଣ୍ ହାତୀ
ବୃନ୍ଦାବନେ ଗୋପୀ ଅଶୋକ୍ ବନେ ସୀତା ସତୀ
ଦୂରୁ ଥାଇ କରି ଦୁର୍‌ପଦୀ ବାଗିର୍ ଡାକି ନାଇଁ ଜାନେ ଜାନୁଛେଁ । (୧)
ଖେଲି ଖାଏବାର୍ ବଏସେଁ ଡାକ୍‌ଲେ ଧ୍ରୁର୍‌ବ ଆଉର୍ ପ୍ରହଲ୍ଲାଦ
ପିଲାହେଲେଁ ବି ଥିଲା ତୁମର୍ ତାକର୍ ଲାଗି ଆହାଲ୍ଲାଦ
ସେ ଛାଡ଼ିଥିଲେ ରାଜ୍ ମହଲ୍, ମୋର୍ କୁରିଆ ନାଇଁ ଛାଡୁଛେଁ । (୨)
ମୋର୍ ଲାଗି ମୁଇଁ କିଛି ନାଇଁ ମାଗେଁ ଯାହାଇଛା ତୁଇଁ କର୍
ତୋର୍ ସୃଷ୍ଟି ଉପରେଁ ଦୃଷ୍ଟି ଥାଉ ଗୁଲ୍‌ଗୁଲା ନାଇଁ ଭର୍
ସମ୍‌କର୍ ଦୁଃଖ୍ ମତେ ଦେଇ ସମ୍‌କୁ ଉସଦ୍ ରଖ୍, ଇଟା ମାଗୁଛେଁ । (୩)



## ୭
## କାମ୍ କର କାମ୍ କର

କାମ୍ କର କାମ୍ କର କାମ୍ କର ଭାଇ କାମ୍ କର
କାମ୍ କର୍‌ବାର୍ ନାମ୍ ଭଗ୍‌ବାନ୍ କାମ୍ କରି ତାର୍ ନାମ୍ କର। (୦)
ହାତ୍ ଦେଇଛେ ଜଗନ୍ନାଥ୍ ସାଙ୍ଗେ ଦେଇଛେ ଗୋଡ୍
ଚଲ୍‌ବାର୍ କେ'ତ ବୁଦ୍ଧି ଦେଇଛେ ନାଇଁ ହୁଅ କାମ୍‌ଚୋର୍
କାମେଁ ଜିଅଁ କାମେଁ ମର କାମେଁ କାମେଁ ଆରାମ୍ କର। (୧)
ଅକର୍ମା ଯେତେ ଅଧର୍ମା ବଲିଁ ତାର୍ କଇମେ ଲେଖା
ଭଗ୍‌ବାନ୍ ବଡ଼େ ବୁଦ୍ଧିମାନ୍ ବିନା କାମେଁ ନାଇଁ ଦିଏ ଦେଖା
ତିରିଥ୍ କରି କି ବରତ୍ କର ଆଉର୍ ଭାଏଇ୍ ଚାରି ଧାମ୍ କର। (୨)
କାମ୍ କଲେଁ ପାଏବୁ ମତେ ଇଟା ମାହାପୁରୁ କଥା
ପୁରାନ୍ କହ, କି କୁରାନ୍ କହ, କହ ଭାଏଇ୍ ତାହାକେ ଗୀତା
ମାହାପୁରୁ ପାଏବାର୍ କାମ୍‌କେ, ଗନ୍‌ଲେଁ କାମ୍‌କର୍‌ବାର୍‌ନ ରାମ୍ କର। (୩)
କାମର୍ ଠାନ୍ ତାର୍ ପୂଜା ବେଦୀ କାମର୍ ଫଇ୍ ତାର୍ ଭୋଗ୍
କାମ୍ ସିଦ୍ଧିର୍ ଯେତେ ଉପେ ଚକର୍ ତାହାକେ ପାଏବାର୍ ଯୋଗ୍
ସବୁ କାମର୍‌ତ ମାଲିକ୍ ସେ ନିଜ୍‌କେ ଟିକେ ସାନ୍ କର୍। (୪)

❖❖❖

## ୮
## ମୁଇଁ କାଏଁ ଗୀତ୍ ଗାଏମି

ମୁଇଁ କାଏଁ ଗୀତ୍ ଗାଏମି ଆହା
ତୁମେ ମତେ କହେସ ସିନେ ତୁଇଁ ଗା ତୁଇଁ ଗାଆ। (୦)
ତୁମେ ନୁହେ ଶୁନ ଥରେ ଯାହାର୍ ଗୀତେଁ ଅମୃତ୍ ଝରେ
ଶୁନ୍‌ଲେଁ କେଭେଁ ବଲ୍‌ବ ପରେ ବାକି ଗୀତ୍ ମାହାଲିଆ। (୧)
ଶୁନ୍‌ବାର୍‌କେ ସେ ଗୀତ୍ ଟପେ ଦିନ୍‌ରାଏତ୍ କେତେ କପେ
ପାଏବାର୍‌କେ ସେ ଅମ୍‌ରୁତ୍ ଥିପେ ଫୁଲ୍ ଫୁଟେ ଖୁଲିଁ ହିଆ

ସେ ଝରା ଅମରତ୍ ବୁନ୍ଦେ ପାଏବାର୍ ଲାଗି କେତେ କାନ୍ଦେ
ଦେଖ ମହୁମାଛି ବନ୍‌ଏ କରି ହୁଏ ବାଉଲିଆ । (୧)
ସେ ଗୀତର୍ ତାଲେଁ ତାଲେଁ ଆମ୍ ଗଛର୍ ଡାଲେଁ ଡାଲେଁ
ନାଚେ ଦେଖ ଗେଲେଁ ଗେଲେଁ ଟିହ୍ୱା ସାଙ୍ଗେ କୁମ୍ଭାଟିଆ
ସେ ଗୀତର୍ ସୁରେଁ ସୁରେଁ ଆମ୍‌କୁଁ ରଖି ଦୂରେଁ ଦୂରେଁ
ତାର୍ ମନେ କୁରେଁ କୁରେଁ କୁଇଲି ଧରେ ପାଲିଆ । (୨)
ସେ ମହାନ୍ ଗୀତ୍ କେ ଶୁନି କେତେ କେତେ ଋଷି ମୁନୀ
ପାର୍‌ଲେଁ ଟପେ ଅଧେ ଛିନିଁ ଲେଖ୍‌ସନ୍ ସଙ୍ଗୀତ୍ ଶୁଲ୍‌କ ଡୁହ୍ୱା
ତୁମେ ଥରେ ଶୁନି ଦେଖ, ମନର୍ କିଭେଁ ପକେଇ ଚାଖ
ପାର୍‌ଲେଁ ଭିତ୍‌ରେଁ ବାହାରେଁ ମାଖ ଜୀବନ୍ ହେବା ସୁଆଦିଆ । (୩)



୯

## ଭାଇ ଶୁନ୍‌ରେ

ଭାଇ ଶୁନ୍‌ରେ.........ଏ ଭାଇ ଶୁନ୍‌ରେ
ତୋର୍ ମନ୍ ଖେତେଁ ଗିଆନ୍ ବିହାନ୍ ବୁନ୍‌ରେ । (୦)
ବୁଦ୍ଧି ଆଉର୍ ବଲ୍ କରିପକା ହଲ୍
ବିବେକ୍ ଅଛେ ଡେରା ନଙ୍ଗଲ୍ ଯୁତ୍ କରି ଧୁମ୍‌ରେ । (୧)
ରାଗ୍ ରିଣ୍ଣି ପାପ୍ ଇଟା କର୍ ସାଫ୍
ଲୋଭ୍ ଝରା ପଡ୍‌ବା ଧରା ବଦ୍‌ଲା ଭକ୍ତି କଲା ବିନ୍ଧ୍‌ରେ । (୨)
ସତ୍ ପାଏନ୍‌କେ ବୁଲା, ନେଇଁ ମରେନ ଇ ପିଲା
ଜଞ୍ଜାଲ୍ ଭାରି ହେବା ଖୁଆରି ବିରାଗ୍ କଁଟା ଲାଠ୍‌ଦୁ ଗୁଁଧ୍‌ରେ । (୩)
ତହୁଁ ମୁକ୍ତିର୍ ଫଲ୍ ଫଲ୍‌ବା ପର୍‌ବଲ୍,
ଆନ୍‌ଲେଁ ଦାଇ ଜାନ୍‌ଲେ ଖାଇ, ସାଙ୍ଗେଁ ନାଇଁ ଲାଗେନ ନୁନ୍‌ରେ । (୪)



## ୧୦
## ସରଗ୍ ନାଇଁ ଯାଏଁ

ସରଗ୍ ନାଇଁ ଯାଏଁ ଚଉବରଗ୍ ନାଇଁ ଚାହେଁ ମୁଇଁ ମାହାପୁରୁ
ତୋର୍ ପାଦର୍ ଏକା ପାଏଲେଁ ଦେଖା ପାଣ୍ଣୁ ହଉ ଭାଏଲ୍ ଦୂରୁଁ। (୦)
ଯେନ୍ ପାଦ୍‌କେ ଛିଇ କରି ପଥର ହଇଗଲା ନାରୀ, (ହୋ) ମୁରାରୀ
ସେ ପାଦେଁ ଫେର୍ କାଲୀ ନାଗର୍ ବିଷ ହେଲା ଗାଲି
ଆଉର୍ ଚାପି ହେଲା ବଳୀ ପରେ, ବନ୍‌ମାଳୀ
ସେ ପାଦ୍‌କେ କିଏ କହେବା ସରଗ୍ ଠାନୁ ସୁରୁ। (୧)
ମତେ ଯଦି କିଏ କହେବା ତୁଇଁ ତିନ୍ ଭୁବନେ ହଇ ଗଲୁନ ରଜା
ତୁଇଁ ଯାହା ଚାହେଁବୁ ଚାହା ହେବା ଖାଲି ହୁକୁମ୍ ବଜା, ହୋ ମହାରାଜା
ତୋର୍ ପାଦ୍‌କେ ଛାଡି ସେ ରାଜ୍‌ପଦ୍‌କେ ବିପଦ୍‌କେ ମୁଇଁ
କାହିଁ ମୁଡ଼ାମି କହେଲେଁ ଭି ମୋର୍ ଗୁରୁ। (୨)
ମତେ ଯଦି କିଏ ସଁପିନିଏ ସବୁ ତପିସାର୍ ସିଧି
ତାର୍ ସାଙ୍ଗେ ଯଦି ଗଦେଇ ନିଏ ଦୁନିଆଁ ଯାକର୍ ନିଧି, ହୋ ଦୟାନିଧି
ନିଧି ସିଧି ସବୁ ଚଉଲେଁ ଯଦି ମୁଇଁ ଦୁର୍‌ବୁଦ୍ଧି
(ତୋର୍) ପାଦର୍ ବାଏଲ୍ ଟାକେ ତ ପୁରୁ। (୩)



## ୧୧
## କେତେ ଲୁକା ଲୁକୁଛୁ

କେତେ ଲୁକା ଲୁକୁଛୁ ତୁଇଁ ମତେ ବଏଲେଁ ଭଗ୍‌ବାନ୍ ତତେ ନେଇଁ ନୁରେଁ ବିଲ୍‌କୁଲ୍
ଲୁକି ଲୁକି ସବୁଠାନେ ଅଛୁ ବଲିଁ କାଏଁ ନାଇ କାନେଁ
କାଏଁ କରି ଘାଏ କରିଯିମିଁ ଫେର ଏଡ଼େ ଭୁଲ। (୦)
କାଏଲ ଯେତେବେଳେଁ ଛୁଆ ଥିଲି ମୁଇଁ ଖେଲୁ ଥିଲି ବସି ବାଏଲ୍
ତୋର୍ ଥିବାର୍ ନେ ଥିବାର୍ ଜାନ୍‌ବାର୍ ଦର୍‌କାର୍ ନାଇଁ ପଡ଼ି ଥାଇଁ ଚାଏଲ୍
ବେଲ୍ ବୁଡ଼େଁ ଉଦେ ଜନ୍ ଦେଖୁଥିଲିଁ ତତେ ମନ୍‌କେ ମନ୍

ଆଉର୍ ଦେଖେଁ ଆକାଶ ସାରା ଫୁଟେ ଯେଭେଁ ତାରା ଫୁଲ୍ । (୧)
ଆଏଜ୍ ସୁର୍ଷୋନ୍ନୁଁ ସୁରୁ ବୀଜା ଗୁଟେ ଥିଁ ଗଛ ଦେଖେଁ ମହାମେରୁ
ଗଛେଁ ଗଛେଁ ପତର୍ ତୁଇଁ ସେ ପତ୍ରେଁ ପତ୍ରେଁ ପହଁରୁ
ଯେତେ ଯେତେ ଯାଉ ଲୁକି ଦେଖେଁ ନାଇଁ ପାରୁ ଠକି
ଦେଖି ପକାଲାନ କାଏଁ ବଳିଁ ପତଗୁଁ ହଁସୁ ମୁଲ୍ ମୁଲ୍ । (୨)



## ୧୨
## ତୁଇଁ ଭଲେଁଥା ଭଗ୍ବାନ୍

ତୁଇଁ ଭଲେଁ ଥା ଭଗ୍ବାନ୍, ମୁଇଁ ପଛେ ଯାଏସିଁ ଦୁଃଖେଁ ମରି
ମୋର୍ ଭିତ୍ରେଁ ପରେ ତୁଇଁ ଅଛୁ ନିଜ୍କେ ନିଜେଁ ବଅଁଚା କେନ୍ତା କରି । (୦)
କେତେ ଦୁଃଖର୍ ପଣରା ବାଢ଼ିଛୁ ସଂସାରେ ତୁଇଁ ଭିତ ଦେଖୁଥିବୁ
ମୋର୍ ବାଗିର୍ କାହାକେ ଶସ୍ତା ଗରାଖ୍ଟେ ଦୁଃଖର୍ ହାଟେଁ କାଏଁ ଭେଟ୍ବୁ
ଦୁଃଖ୍ ଦର୍ଦ୍ ତୁଇଁ ଯାହାଭି ଦଉଛୁ ସବୁ ନଉଛେଁ ଖାଲି ତୋର୍ ନାଁ ଧରି । (୧)
ଯେତେ ଦୁଃଖ ସବୁ ଦେଇପକା ତୁଇଁ ନାଇଁ, କରେଁ କଭେଁ ମନା
ବଲ୍ଦେ ସେତ୍କି ଦୁଃଖର୍ ବାଟେଁ ଯେନ୍ତା ନାଇଁ ହେମିଁ କେଭେଁ ବନା
ବିନା ହାଙ୍କେଁ ଯଦି ବନା ହେମି କେଭେଁ ତତେ ଭି ଦେମି ପାଶ୍ରି । (୨)
ଯେତେ ଦୁଃଖ ଦେଉଛୁ ଦିନୁଁ ଦିନ୍କେ ସେଟାହୁଏ ଅନୁଅତ୍ୟାଚାର୍
ତୋର୍ ଦିଆ ଦୁଃଖେଁ ଯଦି ଏତେ ଲୋଭ୍, ମତେ କାଁ କରି ଅଛୁ ଆବ୍ରି । (୩)



## ୧୩
## ଚଟୁ ଜାନି ଚକେଲ୍

ଚଟୁ ଜାନି ଚକେଲ୍ ଆଉର୍ ଜାଲ୍ ଜାନି ଜୁଏ
ମନ୍ ଜାନି କରି ମାହାପୁରୁ ସିନେ ରକମ୍ ରକମ୍ ହୁଏ । (୦)

ଭିତର୍ କର୍‌ବୁ ଯେତ୍‌କି ଉସାର୍ ଯେତ୍‌କି କର୍‌ବୁ ଲମ୍
ଠିକ୍ ସେତ୍‌କି ମାହାପୁରୁ ତୋର୍ ଜହ ନୁହେ କି କମ୍
ଯିଏ ବଲ୍‌ସି କାହିର୍ ମାହାପୁରୁ ତାହାର୍ ଲାଗି ନୁହେ। (୧)
ଯେତ୍‌କି ଉପର୍ ଉଡିପାରେ ଇ ମନର୍ ଚରେ
ସେତ୍‌କି ଆକାର୍ ଦେଖି ମାହାପୁରୁ ଆପେଁ ଆପେଁ ଫିରେ
ଦିହିପିଞ୍ଜରେଁ ବାନ୍ଧି ରଖ୍‌ଲେଁ ଦେହର୍ କଁଟେ ଥୁଏ। (୨)
ଫଟିକ୍ ଦିଶ୍‌ବା ମାହାପୁରୁ ତୋର୍ ମନ୍ ଦର୍ପନ୍ ମାଜ୍
ମଏଲା ଥିଲେଁ ତଚେ ଯାହା ଲାଗୁ ତାହାକେ ଲାଗ୍‌ସି ଲାଜ୍
ଲୁକି ଛପି କରି ଯାହା କର୍‌ସୁ ତୋର୍ ପଛେଁ ଥାଇ ଜୁହେ। (୩)



## ୧୪
## ଚାଲୁଛେ ରେ

ଚାଲୁଛେ ରେ............
ମୋର୍ ଜୀବନ୍ ଶଗଡ୍ ଗଡ଼ି ଗଡ଼ି ଧୀରେ ଧୀରେ ଚାଲୁଛେ
ଭିତିରି ବଇଦ୍ ବୁଧିମଲିଆ ବାହାରିଆ ମନ୍ ମଇମଲିଆ
ବିନ୍ ବାଡ଼ିଥିଁ ବିବେଭା ହଲିଆ, ଗାଲେଁ ହାତ୍ ଦେଇ ଭାଲୁଛେ
ଖାଲ୍ ଡ଼ିପ୍ ଇ ଦୁନିଆଁ ଧର୍‌ସା ପାଁଶେ ଅନ୍ତରେଁ ସାହା ଭର୍‌ସା
କିହେ କାହିଁ ନାହିଁ ହୋ ମିଛର୍ ଭାଇ ଦାଇ
ବନ୍ଧୁ ବାନ୍ଧବ୍ ମିତ୍ ମଏତର୍ ଶୁଭର୍ ପରୁଆ ଦୁଃଖେଁ ଅନ୍ତର୍
ସୁଖର୍ ସଙ୍ଗୀତ୍ ସହି ହୋ ଦୁଃଖେଁ ମାର୍‌ସନ୍ ହାଇ
କାଦୋପିଛଲ୍ ଥିଁ ଡ଼ଲେଁ ଗାଡି କିଏ କେନୁ ଆସି ଠେଲୁଛେ। (୧)
ବାଦ୍ ବିବାଦର୍ କାଦୋ ପାଏନ୍ ନାହିଁ ରଖେ ଇ ଗାଡିର୍ ମାଏନ୍
କାହିଁ ଗାଡି ଯାଏ ବୁଡି, କାହିଁ ବୁଢେ ହଲିଆର୍ ଠୁଡି
ଲୋଭ୍ ଲାଲ୍‌ଚର୍ ଡୁଡା ନଲିଆ କାଁ କର୍‌ବା ହେଲେଁ ହଲିଆ
ଛେକିଁ ଦେଖ୍‌ଲେଁ ଗାଡି ତାର୍ ଆଗେଁ ଯାଏସି ମାଡି

ଛତା ମାର୍‌ବାର୍‌ ବତ୍‌ରେଁ ବତ୍‌ରେଁ ଟକା ଦୁଇଟା ଡୁଲୁଛେ । (୨)
ଗାଡି ଭିତ୍‌ରୁଁ ଲେହେଁଟି କରି ଦେଖ୍‌ଲିଁ ମୋର୍‌ ଗାଡିର୍‌ ଧୁରି
କାର୍‌ ପାଦର୍‌ ଚିହ୍ନା ମତେ କଲା ଟନା ବନା
ଗୋଡ୍‌ ନାଇଁ ଦିଶେ ପଡୁଛେ ପାହ୍ନା ହୁଁଡା ଧରିଛେ ଦିଶେ ନାଇଁ ବାହ୍ନା
ଏକ୍‌ଲା ଭାବି ସିନା (ସୋଜ୍‌) ହେଲିଁ ଘଁଟା ଘନା
ମୋର୍‌ ନଜର୍‌ କେ ନାଇଁ ପାଏ ସିନା ତାର୍‌ ନଜର୍‌ଟା ବୁଲୁଛେ । (୩)



୧୫

## ଯେ ଯେନ୍ତା ଭାବ ଭାଇ

ଯେ ଯେନ୍ତା ଭାବ ଭାଇ.........ମନା ନାଇଁ
ଭାବ୍‌ସି ମୁଇଁ ଇ ସଂସାର୍‌ଟା ପଏର୍‌ଛା ଗୁଟେ ହାଟ୍‌ ଥାଏ
ବାଟ୍‌ଟା ଇତାର୍‌ ବଁକାଟେଁକା ନାଇଁ ଜାନ୍‌ଲା ଲୁକ୍‌କୁଁ ଏକା
ଯେ ଜାନ୍‌ସି ଚାଲି ଖାଲି ତାର୍‌ ଲାଗିଁ ଛାଟ୍‌ଆଏ (୦)
କେ ଆଇଛୁଁ ବିକି ଆଉର୍‌ କେ ଆଇଛୁଁ ଘିନି
ଜନେ ଲୋକ୍‌କେ ବନେ ମିଲ୍‌ସି ପାର୍‌ଲେ ଏକା ଚିହ୍ନି
ସେ ପଡସି ଠକେଁ ଯାହାର୍‌ ଭିତର୍‌ ନିଦା କାଠ ଆଏ (୧)
ଅସାର୍‌ ଜିନିଷ୍‌ ଲୁଭ୍‌ ଲୁଭାନି, ଦରଛପ୍‌ ଆଏ ବନ୍‌ଏ
ଗୁହୁଡ଼ା ଗୁହୁଡ଼ା ଲୁକେଁ ଚିହ୍ନେ ଭଲୁଁ ଭଲା ଝନଏ, ଚ଼ିହ୍ନା ଲୋକ୍‌କେ ସେଟା
ସତ୍‌ ବାକି ସବୁ ନାଟ୍‌ ଆଏ । (୨)
ଛନେ ହଁସ୍‌ଲେ ବନେ ଘାଏ ବଲ୍‌ବୁ ମଲିଁ ମଲିଁ
ଭିଡ୍‌ ଭିତ୍‌ରେଁ ଚ଼ିଡ ଲାଗୁଥିବା ବୁଲି ଗଲି ଗଲି, ବେଇବୁଡ଼ଲେଁ
ନୁରୁଥିବୁ କେନ୍‌ଟା ଯିବାର୍‌ ବାଟ୍‌ ଆଏ । (୩)



୧୬

## ମତେ ବନ୍‌ଏ ଲାଗ୍‌ସି ମୋର୍ ଗାଆଁରେ

ମତେ ବନ୍‌ଏ ଲାଗ୍‌ସି ମୋର୍ ଗାଆଁରେ,
ଛପା ଅଖ୍‌ରେଁ ନାଇଁ ଥାଉ ପଛେ, କାହିଁ ହେଲେଁ ତାର୍ ନାଁ ରେ। (୦)
ଇନର୍ ମୁନୁଷ୍ ପିଲେ ଯାହା ଅଛନ୍ ଅଜା କକା ଭାଏ
ଆପଦ୍ ଆଏଲେଁ ଦଉଡ଼ି ଆଏସନ୍ ଡକା ନାଇଁ ଲାଗେ ଘାଏ
ମାଏଝି ଟୁକେଲ୍ ଯାହା ଅଛନ୍ ସଭେ ବହେନ୍ ମାଆଁରେ। (୧)
ଇନ ଲାଲ୍ ଚହ ଚହ ବେଲ୍ ଉଦ୍‌ସି ବୁଡ୍‌ସି ହସି କରି
ଡଙ୍ଗର୍ ମେଟାଲ୍ ମହଲ୍ ନାଇଁନ ଦେବା ପୁତାକେ ଘେରି
ବିନ୍ ଧୁକ୍‌ନାର୍ ଧୁକା ଆଏସି ଦିନ୍ ରାଏତ୍ ବଁ ବାଁ ରେ। (୨)
ଇନର୍ ଗାଁ ଭୂଇଁ ଡୁଡ଼ା ନଲିଆ ଝାର୍‌ପତରା ବନ୍‌ଏ
ଘୁଲି କଁକ୍‌ରା ଗୁଏ ଗୁନ୍‌ଚା ଦେସନ୍ ଚାହେଁଲେ ଝନ୍‌ଏ
କବାର୍ କଲେଁ ଯାହାକେ ଯେତେ ଧାନ୍ ଗୁନଜି ସୁଆଁରେ। (୩)
ଅଛୁଁ ପିନେ ଦଶ୍ କୁରିଆ ଗୁଟେ ଜୀବନ ଏକା
ଆଇମାଲ୍ ଝନେ ମରିଗଲେଁ ସମ୍‌କୁଁ ଲାଗେ ଦକା
ସମ୍‌କର୍ ପକ୍ ହେଲେଁ ଯାଇ ଦିନ୍‌କେଁ ଖାଏସୁଁ ନୂଆଁରେ। (୪)



୧୭

## ସୁରୁ ସୁରୁ କୁରିଆ

ସୁରୁ ସୁରୁ କୁରିଆ ଉପରେଁ ଦୁରା ଦୁରା ପୁଆଲ୍
କେନ୍‌ଟା କାହାର୍ ରନ୍ଧା ଘର୍ କାହାର୍ ଭାଏଲ୍ ଗୁହାଲ୍। (୦)
କେନ୍ ଛାଏନ୍‌ଥି ଇମି ଯାଇଛେ ଲାଉ ମାଖନ୍ ଲହ
କେନ୍ ଛାନି ନୂଆଁ ଖପ୍‌ରା ଦୁରା ଲାଲ୍ ଚହଚହ
କେନ୍ ଛାଏନ୍ କେ ଆବ୍‌ରି ନେଇଛେ ବୁରୋ ଗଛର୍ ଛାଏ
କେନ୍ ଛାନି ବାଜେ ମୁନ ଗା ଗଛର୍ ଡାଲ୍ ଘାଏ ଘାଏ
କେନ୍ ଛାନି ବସି ପରୁଆ ଦୁଇଟା ହେସନ୍ ଲାଡ୍ ଖିଆଲ୍। (୧)

କେନ୍ ଛାଏନ୍ ଭାଏଲ୍ ଛିନା ହଇଛେ ନାଇନ ପୁଆଲ୍ ମୁଠେ
କେନ ଖାଲି ବେଡା ହଇଛେ ବଡା ଗୁଟେ ଗୁଟେ
କେନ୍ କାଁଥି ଧସ୍କି ଯାଇଛେ ମସ୍କି ନେଇଛେ ପାଟି
କେନ ଖାଲି କନା ଦୁଇଟା ଚୁପା ହଇଛେ ମାଟିଁ
କେନ ଆଉର୍ ବାଆରି ନୁହେ ଘର୍ ଆଏକି ଦୁଆର୍ । (୨)
ଗାଁ ମୁଁଡେ ଫେର୍ ମୁଡ୍ ଟେଁକିଛେ ବଢ଼େ ପକା ମହଲା
ଗାଁ ସାରା ସବୁ ସାଁଖ୍‌ଲିହଇ ସେଠାନେ ଯାଇ ରହେଲା
କୁରିଆ ଯେତ୍‌କି ଉଜରି ଯାଉଛେ ମହଲା ସେତ୍‌କି ଉଚା
ମହଲା ଯେତ୍‌କି ଭର୍‌ତି ହଉଛେ କୁରିଆ ସେତ୍‌କି ଛୁଛା
କେତେ ଦିନ୍ ଇ କୁରିଆ ମହଲାର୍ ଲାଗ୍‌ବା କବାବ୍ ସୁଆଲ୍ । (୩)



## ୧୮

## ଆମର୍ ସେ ସୁତର୍ ଆଏ

ଆମର୍ ସେ ସୁତର୍ ଆଏ ଉବ୍‌ରି ଥିଲେଁ ନାଏଁନ ଘାଏ । (୦)
ବୁଝିଥିଲେଁ ମହାନ୍ ସୁତର୍ କଥା କହେସି ବତ୍‌ରେଁ ବତର୍
ମାଏନ୍ ଗୁନ୍ ସବୁ ଧରି କଥା କହେସି ହଁସି କରି
ବିର୍‌ଝି ଥିଲେଁ ପର୍‌ଝି ନେବା ଆଡ୍ ଉଡ଼ାଲ୍ ନାଇଁ ଥାଏ । (୧)
ଛୁଆ ପୁତାର୍ ଦିହି ପାହା ନସ୍‌ଲେ ନାଇଁ ଖିଆ ପିଆ
ବନ୍‌ଏ ଥାଇ କନ୍ଦା ବୁବା କଲେଁ କିଏ ଦେଖେ ବୁଆ
ଭୁର୍‌ତା ସୁର୍‌ତା ନାଇଁ ଜାନେ ବଜେଇ ନେବା ଠାଏ ଠାଏ । (୨)
ମୋର୍ ଗୋଡ୍ କୁଟୁମ୍ ଯାହା ଆଏଲେଁ ଦେସି ଲାଲି ଚାହା
ମୁହୁଁ କର୍‌ବା ଉଷ୍‌ନା ହାଁଡି ଦେଖ୍‌ଲେଁ ଭାଗ୍‌ବ ଦିରିବ୍ ଛାଡି
ପିଠାପନା ଯିଁ ଅଯେଇ ଯିବ ଆସିଥିଲେ ତାର୍ ଦଦା ଭାଏ । (୩)
ନାଇଁ କହେଁ ଆର୍ ଏତ୍‌କି ଥାଉ ଶୁନୁଥିଲେଁ ମୋର୍ ଭାଏର୍ ବନ୍ଧୁ
ଗାଲି ଦେବା ଭାଇ ଦଟିଁ କରି ସହି ନାଇଁ ହୁଏ କହେଲେଁ ମଲିଁ
ମୁଁହ୍ ଦେଲେଁ ଇ ଦିହକ ଯାକର୍ ନାଇଁ ମାଡ଼େନ ମୋର୍ ଛାଏ । (୪)



## ୧୯
## ଇ ଆଡ଼େଁ ଗଲା ଦେଖିଛ କିଏ

ଇ ଆଡ଼େଁ ଗଲା ଦେଖିଛ କିଏ
ଭେଁଡ଼ା ବଇସିଆ, ଯୁବା ବଏସିଆ ପିଲାଟେ
ଡେଙ୍ଗ୍ ନୁହେ କି ବାଙ୍ଗର୍ ନୁହେ, ଗେମ୍ଠା ହଇ କଲା ଟେ । (୦)
ବାଉଁଶ ନଲାର୍ ବଏଁଶୀ ଗୁଟେ ଥିବା ଗୁଟେ ହାତେଁ
ହଲଦିଆ ରଙ୍ଗର୍ କରିଆ ଟିକେ ଗୁରେଇ ଥିବା ଅଁଟେଁ
ମୟୁର୍ ଝାଲ୍ ମୁଡର୍ ବାଲ୍ ବାନ୍ଧିଥିବା ଆଁଟେ
ଦହି ଦେଖୁଥିଲେ ଲାଲ୍ ଥିପୁଥିବା ସେଟା ପଟ୍ପଟ୍ ଲଇହାଟେ । (୧)
ସେ ରଇଖିଆ ବଡ଼େ ସଉକିଆ ମାଖି ମରିଥିବା ଚନ୍ଦନ
ବାହାର୍ ବେଶ୍ ବଢ଼େ ଅଏନ୍ ଯାହା ଥାଉ ତାର୍ ଚଇନ୍
ହାତେଁ ବାହାଟି ନୁପୁର୍ ପାହାଥିଁ ପିନ୍ଧିଥିବା କରି ଯତନ୍
ହଁସୁଥିବା ପନ୍ଥେ କଥା ନାଇଁ କହେ ସେଟା ଅଗ୍ବାର୍ ଫୁଲ୍ହାଟେ । (୨)
ଧାର୍ ମୁହିଁ ଉଲ ଭୁଆଷେନ୍ଟେ ଅନ୍ଥେ କାଏଁ ତାର୍ ସାଙ୍ଗେଁ
ପାଏନ୍ ଗଲାବାଟେ ନାଇଁ ଫିର୍ବାର୍ ଦିନ୍ ଦିନ୍ ଲାଗେଁ ଲାଗେଁ
କେତେ ନୁର୍ସି କାହିଁ ମରସିଁ କହେମି ଯାଇ କାର ଆଗେଁ
କାଁ କଥା ଇଟା ଅଥା ହେଲିଁ ନୁରି ମୁଇଁତ ବୁଢ଼ୀ ମଲାଟେ (୩)

❖❖❖

## ୨୦
## ନୁରିଁ ନୁରିଁ ନାଇଁ ନ ହାଲୁ

ନୁରିଁ ନୁରିଁ ନାଇଁ ନ ହାଇ୍ ଆଉ ନାଇଁ କର୍ନ ଖିଆଲ୍
ସୀତା କେନ ଅନ୍ଥୁ ଲୁକି ଗୋ
ତତେ ନାଇଁ ଦେଖି ମୋର୍ ସର୍ ଯାଏ ଶୁଖି ଗୋ, ତତେ.... (୦)
ଝାର୍ ଜଙ୍ଗଲର୍ ବାଟ୍ଘାଟ୍ ବାଘ୍ ସାଁପ୍ କେତେ
ଛପି ଥିବେ ସଜ୍ ପାଏଲେଁ ଛାପ୍କି ନେବେ ତତେ
ତୁଇଁ ମରି ଗଲେଁ ମୁଇଁ ସରିଯିମି, ଜାନ୍ କାହିଁ ହେବା ରଖିଗୋ । (୧)

ଥୁଆ ହେଇଛେ ଅନାହେଲା ଫଲ୍ ମୁଲ୍ ଯେତେ
କିଏ ବାଡ୍ବା କେତ୍‌ନି କେତେ ଭୋକ୍ କଲାନ ମତେ
ପିଲା ଲୋକ୍ ମୋର୍ ଲଛ୍‌ମନ୍‌ଟା ତାର୍ ମୁହୁଁ ଗଲାନ ଶୁଖି ଗୋ (୨)
ବାଟ୍ ନାଇଁ ଲାଗ୍‌ବା ଛିନା ଦୁଃଖ୍ ହେବା ଉନା
ଭାବି ସିନା ସାଙ୍ଗେ ତତେ ଆନିଥିଲିଁ ସୁନା
ପିଣ୍ଡୁ ପରାନ୍ ଯାଏସି ଉଡି (ତୋର୍) ଆଏବାର୍ ଉଛୁର୍ ଦେଖି ଗୋ। (୩)
କାଏଁ ହେଲା ଯେ ଝାଏଁ କରୁଛେ ଝାର୍ ପତ୍‌ରା ଆଜିର୍
ଡେବ୍‌ରି ଆଏଁଖ୍ ଫର୍‌କି ଉଠେ ବିପଦ୍ ପଡଲା ବାଗିର୍
ତତେ ପାଏଁମି କିନି ନାଇଁଜାନି ଆଖୁଁ ପାଏନ୍ ହଉଛେ ଗୁକି ଗୋ। (୪)



## ୨୧
## ବେଉଁତ୍ କରି ଗୁଡା ବାନ୍ଧ୍

ବେଉଁତ୍ କରି ଗୁଡା ବାନ୍ଧ୍ ତାହୁତ୍ କରି ଗାଡି ଫାନ୍ଦ୍
ଇଁ ଗାଁର୍ ଝି ଆର ଗାଁ କେ ଯିବା ହଇ ବହୁ ରେ
ବାପର୍ ମୁହେଁ ପାଏନ୍ ନାଇଁ ମାଁର୍ ଆଖିଁ ଲହରେ। (୦)
ଉର୍ଜୁଲି ଆର୍ ଉକିଆ ନୁରା ତାରା ବିନୋ କୁନୋ
ଗାଁ ଖୁଲି ଆର୍ କାହାର୍ ସାଙ୍ଗେ ଖେଲ୍‌ବେ ରାତିଁ ଦୁମୋ
ପରାପାଟ୍‌କ ଝାଏଁ କର୍‌ବା କିଏ ହେବା ଗହଗହ ରେ । (୧)
ସକାଲ୍ ପୁଆକେ ଗରିଆ କାଖେଁ କାଠି ଧରି ହାତେଁ
ବେଲ୍‌ବୁଡିଆ ଅଙ୍ଗ୍‌ଛି ପିନ୍ଧି କିଏ ଯିବା ବନ୍ ବାଟେଁ
ବନ୍ଧ୍ ଝୁର୍‌ବା, ଘାଟ୍ ଝୁର୍‌ବା ଝୁର୍‌ବେ ଗଛ୍ ଲହ ରେ। (୨)
ଗୁଟେ ଗାଏଁ ଜନମ୍, କରମ୍ ଦୁସ୍‌ରା ଗାଁ ଏଁ ଘରେଁ
ନିଜର୍ ଲୁକୁଁ ପର୍‌କରି, ଦିନ୍ ସର୍‌ବା ପରେଁ ପରେଁ
କୁଲ୍ ଗୋତ୍ ବି ବଦ୍‌ଲି ଯିବା ହେଟା ଚିଆସି ଜହରେ। (୩)



## ୨୨
## ଜାନି ନାଇଁ ହେଲା କି ଗନି ନାଇଁ ହେଲା

ଜାନି ନାଇଁ ହେଲା କି ଗନି ନାଇଁ ହେଲା
ସରିଗଲା, ସରିଗଲା, ସରିଗଲା, ସବୁଦିନ୍
ପିଲାଦିନ୍ ମୋର୍ ଗଲା ଖେଲେଁ, କାଦି ବୁବାଇ ଗେଲେଁ ଘେଲେଁ
ଯୋର୍ କଲେଁ ବି ଇ ବୁଢ଼ା କାଲେଁ ଲାଗ୍‌ସି ଭିନ୍ ଭିନ୍ । (୦)
ଜୁଆନ୍ ସମିୟ୍ ବୁହି ଗଲା ମୋର୍ ବଢ଼ି ପାଏନ୍ ବାଗିର୍
ରୋଜ୍ ହଇଗଲିଁ କେତେ ଅଥା ଯୋଜ୍ କଥାର୍ ଲାଗିର୍
ଜାନି ଜାନି ଜୀବନ୍ କେ ଯାହା କଲି ଛିନ୍ ଭିନ୍ । (୧)
ବିନ୍ ପାନି ମୁଇଁ ଛତା ଧରିଁ ବାଟ୍ ଦେଲିଁ କାଟି
ବିନ୍ ଲାଗେଁ ଖାଲି ବନିଜ୍ କରି ଯୋଜ୍ ମଲିଁ (ଖଟି) ଘାଁଟି
ବିନ୍ ବାଏଦେଁ ଉଖୁଲା ହଇଁ ନାଚ୍‌ଲି ଧିନ୍ ଧିନ୍ । (୨)
ଆଏଜ୍ କର୍‌ମି କାଏଲ୍ କର୍‌ମି ବଲି ରହେଲା କାମ୍
କାହାରି କିଛି କରି ନାଇଁ ମୁଇଁ କାହିଁ ଅଛେ ମୋର୍ ଠାନ୍
ମଲା ପରେଁ ମତେ ଯୋର୍ କର୍‌ବାର୍ କାଇଛେ କିଛି ଚିହ୍ନ । (୩)



## ୨୩
## ଯାହା କହେବାର୍ ଅଛେ

ଯାହା କହେବାର୍ ଅଛେ ଡାକି କରି କହେବ ପଛେ କଲାକାହ୍ନୁ
ଆଗୋ ମୋର୍ ଗେଇହା କାହ୍ନୁ, ମୋର୍ କିରିଆ ନାଇଁ ବଜାବ ବଏଁଶୀ
ବଏଁଶୀ ବାଜ୍‌ଲେଁ ରହେସି କାଏଁ ମନ୍ ଘରେଁ କି ଦୁଆରେଁ ଇ ସୁଖା ସଂସାରେଁ
ଖାଲି ତୁମର୍ ଆଡ୍‌କେ ଧାଏଁସି । (୦)
ଲୋକ୍ କହେସନ୍ ପର୍ ପୁରୁଷେଁ ଯେ ଦେସି ଧିଆନ୍
ନରକ୍ ଛାଡି ତାହାକେ କାହିଁ ନାଇଁ ମିଲେନ ଠାନ୍
ତୁମେ ଯଦି ମୋର୍ ପର୍ ହେବ, କାହାକେ ନିଜର୍ ବଲ୍‌ମିଁ
ନର୍କେଁ ପଛେ ରହେମିଁ ଖାଲି ଘାଏ ତୁମର୍ ଦେଖା ପାଏସିଁ । (୧)

କାଏଲ୍ ହଉଥିଲା ଅନ୍ଧାର୍ ଘାଏଚ୍ ବର୍‌ଷୁ ଥିଲା ପାଏନ୍
ବିଦ୍‌ରୁଥିଲା କାଁଥି କୋଡ୍ ଉଛୁଲୁଥିଲା ଛାଏନ୍
ବାଜ୍‌ଲା ବର୍ଏଣୀ ହଜ୍‌ଲା ଘାନ୍ କାଁ କରି ଘରେଁ ରହେସିଁ
ଯାହା ହଉ ହେଲେଁ ଯାଏସିଁ, କହେଲେଁ ପଛେ ସହେସିଁ । (୨)



## ୨୪

## ନାରୀ ଜାରି ରଖିଛେ ସେ ତାର୍ ବାହାଦୁରି

ନାରୀ ଜାରି ରଖିଛେ ସେ ତାର୍ ବାହାଦୁରି
ସେ ନୁହେ ସେ କାହାରିର୍ ଭଗାରୀ । (୦)
ମହିସାସୁରର୍ ଦର୍ପେ ମହୀ ଯାଉଥିଲା ଥରି
କାହାରିର୍ କଲ୍‌ଜା ନାଇଁ ଥାଇଁ ତାହାକେ ଦେବା ମାରି
ସର୍ବ ଶକ୍ତି ଠୋଲ୍ ହଇ କରି ହେଲା ଗୁଟେ ନାରୀ
ସେ ମାଏଲା ତାହାକେ, କହେଲେ ସେ ଦୁର୍ଗା ଶଙ୍କରୀ । (୧)
ଆଘୋ ଲକ୍ଷ୍ମୀ ଗୌରୀ, ପଛେଁ ହର ପଛେଁ ହରି
ଯାହା କଲେଁ ବି କିଏ ନାଇଁ ଜାନି ସୀତା ସାବିତିରୀ
କେନ୍ତା ପୋ ଜନମ୍ କଲେ ଅଞ୍ଜନା ସୁନ୍ଦରୀ
ଇ, ମାଆ ଜାତିକେ ପୂଜା କରି କେତେ ଗଲେ ତରି । (୨)
ଭକ୍ତିମତି ମୀରାବାଇ ତାର୍ ସାଙ୍ଗେ ଶବରୀ
ଲକ୍ଷ୍ମୀବାଇ କେ ଦୁର୍ଗାବତୀ କେ କିଏ ଦେବା ପାଶ୍‌ରି
ଆଗର୍ କଥାକେ କହି କନା ଖନା ସେ ବିଚାରି
ନାରୀ ନିନ୍ଦା କଲା ଲୋକ୍ ସିନା ଆଏ ଅନାଚାରୀ । (୩)



୨୫
## ଭର୍ସା ହେଲୁ କାଏଁ ଭଗବାନ୍

ଭର୍ସା ହେଲୁ କାଏଁ ଭଗବାନ୍
ଡାକି ଡାକି ମୁଇଁ ଥକି ଗଲିନ ଜଡ଼େଇ ଗଲା କାଏଁ କାନ୍
ଘୋର୍ କର୍ଲେଁ ମୋର୍ କଥା, କାହାକେ କହେଲା ମେତାଲ୍ ନାଇଁ ଦେଉ କାନ୍। (୦)
ଆହା ତୁଇ କେତେ ଢ଼ଙ୍ଗେ କରିନୁ ଭିଆନ୍
ଏତେ ଅଏନ୍ ଭିଆନ୍ ଭିତ୍ରେଁ ମତେ କେନ୍ତା କଲୁ ହୀନ୍ମାନ୍ ହୋ ଦୟାବାନ୍। (୧)
କହ ହେଲେଁ କେନ୍ କାଲେଁ କଲିଁ କାଏଁ ତୋର୍ ନୁକ୍ସାନ୍
ମୋର୍ ଭିତ୍ରେଁ ତୁଇଁ ପରେ ଢ଼ାଁଡ୍ବୁ ହେଲେଁ ତୁଇଁ ତତେ ହୋ, ଢ଼ାଁଡ୍ ସରବ୍ଜାନ୍। (୨)
ଯାହା ଦିନ୍ ଗଲା ପରେଁ ଏତ୍କେଁ ମୋର୍ ଆଡ୍କେ ଆର୍ସିଖ୍ ଟିକେ ଆନ୍
ବଡ୍ କଥା ତ ନାଇଁ ମାଗ୍ବାର୍ ଦେ ତୋର୍ଠାନେ ମତେ ଟିକେ ଠାନ୍
ହୋ ଦୟାବାନ୍, ସରବ୍ଜାନ୍। (୩)



୨୬
## ଇ ମନ୍ ଭିତ୍ରେଁ ଧନ୍ ଅଛେ

ଇ ମନ୍ ଭିତ୍ରେଁ ଧନ୍ ଅଛେ ପାଏବୁ ବାବୁ ନୁରିନେ
ପହେଲା ଏକା ମଏଲା ଯାକ ପରଛା କରି କୁରିନେ। (୦) (ଘୋଷା)
ଯେତ୍କି ଅଛେ ରାଗ୍ ଅହଙ୍କାର୍ ଦେଖ୍ ଆଘୋ କଟି
ସେତ୍କି ଗହେରେଁ ତୋର୍ ଧନ୍ ଟିକ୍କ ଘୋଜ୍ ହେଇଛେ ପାଟି
ମୁରୁଖ୍ ମନର୍ ମହାନ୍ ପଥର୍ ଭିତ୍ରେଁ ହେଇଛେ ଚୁଟି
ଅଲ୍ଗେଇ ନେଲେଁ ଖାଲି ନାଇଁ ହୁଏ ନୁନ୍ ଚୁନ୍ କରି ଚୁରିନେ। (୧)
ସେ ଧନ୍କେ ନେବାର୍ ଲାଗି ହଜାର୍ ହଜାର୍ ଚୋର୍
ରୋଜ୍ ଆସିଁ କସି ଘୋଜ୍ କର୍ସନ୍ ଗୋଲ୍
ସେ ଧନ୍କେ କେଭେଁ ନାଇଁ ବଲ୍ବୁ ମୋର୍
ବଡ୍ ଥିଲେ ଖାଲି ତୋର୍ କଟେ ବଟ୍ରେଁ ବଟ୍ରେଁ ଘୁରିନେ। (୨)
ସେ ଧନ୍ କେଭେଁ ନାଇଁ ପୁଡ଼େ ନାଇଁ ବୁଡ଼େ ଭିଲ ପାନି
ସେ ଧନ୍ ଥି ବନିଜ୍ କଲେଁ କେଭେଁ ନାଇଁ ହୁଏ ହାନି
ଗୁଟେ ଜନମେ ଥିଲେଁ ଚିହ୍ନି ଜାନି ଆଉଥରେ ଘାଏ ଦୁରିନେ। (୩)



୨୭
## ତୁଇଁ ନାଇଁ ମାନୁ ସିନା ଗୁରି

ତୁଇଁ ନାଇଁ ମାନୁ ସିନା ଗୁରି, ଇଟା ବନେ କଥା ନୁହେ, ନୁହେଲୋ, ଇଟା...
ଯେ ତ ଯାହିର୍ ତାହିର୍ ଦରବ୍ ନୁହେ, କେଭେଁ ପରେ ଇଟା ନାଇଁ କୁହେଲୋ,
କୁହେଲୋ । (୦)
ପରର୍ ମୁନୁଷ୍ (ଆଉର୍) ପରର୍ ଜିନିଷ୍, ଦେଖ୍ଲେଁ ସୁନ୍ଦର୍ ଚାଖ୍ଲେଁ ବିଷ୍
ଜାନ୍‌ବୁ ଯେଭେ ହେଲେଁ ଛିଇବାର୍‌କେ ଗଲେଁ
ଅଗ୍‌ବାର୍ ଅଗ୍‌ବାର୍ ଅଗ୍ନୀ ଜୁଏ-ଜୁଏଲୋ-ଇଟା ବନେ କଥା । (୧)
ମନ୍ ଉଡି ଯାଏସି ଯେତ୍‌କି ଉଡାଲେଁ
କଥା ଲୁକେ କାଏଁ ଯେତ୍‌କି ଘୁଡାଲେଁ ?
ମନ୍ ଉଡେଇ କରି ମହତ୍ ବୁଡେଇ କରି
ରହେବୁ କାଏଁ ନାଇଁନ ଭୟେ, ଭୟେଲୋ, ଇଟା ବନେ କଥା । (୨)



୨୮
## ପର୍‌ଜାରେ ତୁଇଁ, ରଜା ହେଲୁନ ପରେ

ପର୍‌ଜାରେ ତୁଇଁ, ରଜା ହେଲୁନ ପରେ ନୁହେ ଜାନୁ ତାଏଲ୍
ତୋର୍ ନଙ୍ଗଲର୍ ଗାରେଁ କପାଲର୍ ଧାର୍ ସଲ୍‌ଖିବା କାଏଁ ଭାଏଲ୍ । (୦)
ଟୁଣେ ନାଇଁ କାଠି ଆର୍ ପାଏନ୍ ନାଇଁ ମୁଡେ ରେ ଭାଇ ପାଏନ୍ ନାଇଁ ମୁଡେ
ସଖାଲୁଁ ଯାଇ ଖେତ୍‌କେ ତୁଇ ଫିର୍‌ସୁ ବେଲ୍ ବୁଡେ
କେଭେଁ ହେଲେଁ ଜାନ୍‌ଲୁନ କାଏଁ ତତ୍‌ଲା ଭାତେ ଦାଏଲ୍ । (୧)
ପେଟ୍‌ଟୁଁ ଉଲ୍‌ଟି ଯେନ୍ ପଏସେଁ ମାଲ୍ ଗୁଜାରି ଗନୁରେ ଭାଇ ମାଲ୍ ଗୁଜାରି ଗନୁ
ସେ ପଏସେଁ ମଟର୍ ଘିନା ହେଟା କେନ ତୁଇ ଜାନୁ ତୁଇ ହାତ୍ ଟେକ୍‌ଲେଁ ମୁଡ୍
ହଲାସନ୍
ପାଏସୁ ଖାଲି ମଟର୍ ଉଡା ବାଏଲ୍ । (୨)



## ୨୯

## ରାମ୍ ଗଲେ ଲଛମନ୍ ଗଲେ

ରାମ୍ ଗଲେ ଲଛ୍‌ମନ୍ ଗଲେ ଗଲେ ସାଙ୍ଗେ ସୀତା ହୋ
ରାମ୍ ଥିବାର୍ ତକ୍ ଅଯୋଧ୍ୟା ଅଏନ୍ ରାମର୍ ବିନେ ପିତା । (୦) (ଘୋଷା)
ସରଜୂ ନଦୀ ଖଁଡି ଖଁଡି କେତେ ସହର୍ ଗାଆଁ
କେଭେଁ ହେଲେଁ କେନ୍ ପୁରାନ୍ ଥିଁ ପଡିଛେ କାଏଁ କାର୍ ନାଁ
ଜଗତପତି ଯେନ ଜନମ ନେଲେ ସେଟା ଜଗତ୍ ଜିତା ହୋ । (୧)
ସୁଖ୍ ସରାଗ୍ ଯାହା ଥିଲା ସବୁ ଗଲା ନିଥ୍‌ରି
ସେ କଥାକେ ପୁରାନ୍ ବାଲେ ସରଜୂ ବଲିଁ ଦେଲେ ଚିତ୍‌ରି
ସୁଖ ସରାଗ ସାଙ୍ଗେଁ ଗଲା ମଲେ ଦଶରଥ ପିତା ହୋ । (୨)



## ୩୦

## ଦୁଃଖ୍ ଦରଦ୍ ଯାହା ଦେବାର୍ ଅଛେ

ଦୁଃଖ୍ ଦରଦ୍ ଯାହା ଦେବାର୍ ଅଛେ, ହରି
ସବୁ ଦେଇ ନେତୁ ପଛେ,
ସହେବାର୍ ଶକ୍ତି ଆଗ୍‌ତୁରା ଏକା
ଦେଇ ନେଇ ଥିତୁ ଗଁଚେ । (୦)
ମନ୍‌ଟେ ଦେଇଛୁ ସେନେ ସିନେ ପର୍ଶୁ
ରହି ଥିତୁ ଅନୁଖନୁ
ଯାହା ହେଲେ ମାହାପୁରୁ ଅହୋରାତର୍
ନାଇଁ ଯାଏଥିତୁ ସେନୁ
ଦୁଃଖ୍ ଖର୍‌ହା ଛୁଆ ଘୁଁଚି ଯାଉଥିତେ
ଦେଖି ବଢ଼େ ବାଘ ଅଛେ । (୦)
ତୋର ଡ଼ିହ୍ନା ବନା ନାଇଁ ଥିଲେ ମନା
ହଇ ଯାଏ ମରୁଭୂଇଁ
ତୁଇଁ ନାଇଁଥିଲେ ଲଟାଟେ ଭିଲ୍ ହେଲେ

ଭୁଲେଁ ଭି କଁଅଁଲେ ନାଇଁ
ମିଛର୍ ଗଛ୍ ଥାଇ ଫଲିଥିସି ତହିଁ
ଲଦିହେଇଁ ଅଗ୍‌ବାର୍ 'ମୁଇଁ' ଗଛେ । (୨)



### ୩୧

## ମୁଇଁ ଭାରତ୍ ଦେଶର୍ ପିଲା

ମୁଇଁ ଭାରତ୍ ଦେଶର୍ ପିଲା ଭାଇ ଭାରତ୍ ଦେଶର୍ ପିଲା
ହିନ୍ଦୁ ହୁଏଁକି ମୁସଲ୍‌ମାନ୍ ବୌଦ୍ଧ ହୁଏଁ କି ଖ୍ରିଷ୍ଟିଆନ୍
କାହାର୍ କାଣା ଗଲା,
ସେଥିଁ କାହାର୍ କାଣା ଗଲା ଭାଇ, ଭାରତ୍ ଦେଶର୍ ପିଲା । (୦)
ଦେଶ୍ ଜାତିର୍ ଗୁଟେ ବାପ୍ କରମ୍ ଚାନ୍ଦ୍ ଗାନ୍ଧୀ
ଦେଶ୍ ଯାକର୍ ସଭେ ଗୁଟେ ଡୁରେଁ ହେଇଛୁଁ ବାନ୍ଧି,
କାର୍ କିଭେଁ ଫେର୍ ହାଡ୍ ଅଛେ ସେ ବନ୍ଧନ୍ କର୍‌ବା ଢ଼ିଲା । (୧)
ଆମର୍ ଦେଶେଁ ଆମେ ରଜା, ଆମେ ପର୍‌ଜା ପୁଓ
ଆମର୍ ଡାକ୍‌କେ ଆମେ ଶୁନି ଆମେ କର୍‌ସୁଁ ଓ
ଆମର୍ ଦେଶ୍‌କେ ଆମେ ଗଢ଼ିଛୁଁ କାହାର୍ ସାହାକ୍ ଥିଲା,
ସେଥିଁ କାହାର୍ ସାହାକ୍ ଥିଲା । (୨)
ଦିନ୍ ଆଏବା ଫେର୍ ଫଲ୍‌ବା ଆମର୍ ଦେଶେଁ ସୁନା
ଦୁଖେଁ ମର୍‌ବାର୍ ଭୁଖେଁ ମର୍‌ବାର୍ କଥା ହେବା ଜୁନ୍‌ହାଁ
ଆମର୍ ନୀତିଥିଁ ଚାଲ୍‌ଲେଁ ସଂସାର୍ ନାଇଁ ହୁଏ ଗୁଲ୍‌ଗୁଲା
ଆଉ ନାଇଁ ହୁଏ ଗୁଲ୍‌ଗୁଲା । (୩)



### ୩୨
## ଝୁଛା ସନାର୍ଘଟା ଇ ସଂସାରରେ

ଝୁଛା ସନାର୍ଘଟା ଇ ସଂସାରରେ ମନୁଆଁ
କେନ୍ତା ଢ଼ଙ୍ଗେ ହେବୁ ପାର୍। (୦)
ଦିହିଟାକେ ତୋର୍ କରୁ କେତେ ଯତନ୍
କଁଟା ଗୁଟେ ମାଡ୍‌ଲେଁ କୁଁଥଉ କେତେ ରକମ୍
ନାଇଁ ଜାନ୍‌ଲୁ ଦିନ୍‌ଏ ଯଲେ ତୋର୍ ଜୀବନ୍
ଦିହିଟା ପୁଡି଼ ହେବା ଖାର୍। □(୧)
ଏଛ୍‌ନିକା ଲୋକ୍ ଅଛନ୍ କନା ଶୁନା
ପାର୍ ଯାଉନ୍ଛେଁ ଯାହା କଲେଁ ଦୋଷ୍ ଗୁନ୍‌ହାଁ
ମଲା ବେଲେଁ ନାଇଁ ଲାଗେ ମନା ଗୁନା
ନାଇଁ ପାଉଁ ସେଥୁଁ ନିସ୍ତାର୍‌ରେ ମନୁଆଁ। (୨)



### ୩୩
## ଝଟ୍ ଝଟ୍ କର୍ ଖୁରି ଗିନା

ଝଟ୍ ଝଟ୍ କର୍ ଖୁରି ଗିନା ଇଟା ବାଛି ଯିମାଁରେ
ସାଙ୍ଗ୍ ସାଙ୍ଗ୍ ହେଇଁ ବଢ଼େ ପୁରୁ ଯିମାଁ।
ଭୁଚି ଭରା ନାଏଁ କରଲେଁ ନାଏଁ ଜଲେ ଅନ୍ଧାନରେ। (୦)
କାଏଲ୍ ଆଇଥିଲେ ପଧାନ୍ ଘରେଁ
ମୁଇଁ ବଏଲିଁ ନାଇଁ ପାରେଁ
ସାହୁ ଘରର୍ ଭୁଚି ତାମ୍‌ଦୁ ଶୁଝିନେସିଁ ମାଁ ରେ। (୧)
ସାହୁ ଘରର୍ ଖେତ୍ ବଡ଼ା ଧୁର୍ ନାଇଁ ଛାଡ଼ି ନିଏ ବଢ଼େ ପୁର୍
ବେଲ୍ ଟଲା ତକ୍ ଟାଙ୍ଗି ନେସି କହେଲେଁ ହେସି ଗୁନ୍‌ହାରେ। (୨)
ଉପର୍ ପରାର୍ ବାମ୍‌ହନ୍ ଘର୍ କାଏଲ୍ ହଉଥିଲା କର୍‌ବର୍
କାଏଁ ମାହାଲିଆ ନାପି ନଉଛନ୍ ମନ୍ ମିଲାମିଲି ସିନାରେ। (୩)



## ୩୪
## ସେ କେନ୍ତା କେଭେଁ ନାଇଁ ଫିରେ

ଦଣ୍‌ରା ଆଏଛୀ ଧୀରେ ଧୀରେ
ସେ କେନ୍ତା କେଭେଁ ନାଇଁ ଫିରେ । (୦)
ଭୁଗ୍‌ଭୁଗାନୁ ଫୁଟ୍‌ଲାନ କଏଁ ଫୁଲ୍
ରାତିଁ ଜନ୍ କେ ଦେଖଇ ହଁସେ ମୁଲ୍ ମୁଲ୍
ପାଏନ୍‌କେ ଫିର୍‌ଲେନ ପାନିର୍ ଚରେ । (୧)
ଦେଖି ଆସିଥିଲା ସେ ଦୁଚିଆ
କହେଲା ଆଏମି ଆଏଲେଁ ଭାଏ କାଁଚିଆ
ସେ ଆଶା ଦିନ୍‌କେ ରାଏତ୍‌କେ ଘାରେ । (୨)
ମନ୍‌ଟା ଚା'ର୍ ଆଡ଼୍‌କେ ଯେବେଁ ଭାଗସି
ଆଏଲାନ ଆଏଲାନ ବାଗିର୍ ଲାଗ୍‌ସି
ସେ ଆଏଲେଁ ଗାଁ ଖୁଏଲ୍‌କେ ଭିରେ । (୩)



## ୩୫
## ଆମର୍ ପିଲା ଦିନର୍ କଥା

ନେ ନାଇଁ ରଖିକରି କୋର୍ ଥରେ କର୍ ଘୋର୍ ରେ
ଆମର୍ ପିଲା ଦିନର୍ କଥା
ସେ ଦିନର୍ କଥା ସେନ୍ତା ଥାଇଁ
ଆଏଜ୍ ଜଗୁଛେ ଅଥା
ଘୋର୍ କର୍ ଆମର୍ ପିଲା ଦିନର କଥା । (୦)
ଆଝିର୍ ବାଗିର୍ ସେ ଦିନ୍ ଭି ବେଲ୍ ଯାଉଥିଲା ବୁଡ଼ି
ବୋଲ୍ ନେ ମାନି ଲାଇ୍ ପନତ୍ ଡୋର୍
ଛାଡ଼୍‌ତୁ ଯାଉଥିଲା ଉଡ଼ି
ସେ ଦିନର୍ ସେ ପାଏନ୍ ବର୍‌ଷା
ଦୁହିକର୍ ଗୁଟେ ଛତା
ଘୋର୍ କର୍ ଆମର୍ ପିଲା ଦିନର୍ କଥା (୧)

କେନ୍‌ତା ଲାଗ୍‌ସି ସୁର୍‌ତା କଲେଁ
ତୁଇଁ ଆଛିର୍ ପରର୍ ଘରେଁ
ପର୍‌ହର୍ ହାତେଁ ବାଲ୍ ସାଉଁଲା
ସୁର୍‌ତା କରି କରି ମରେଁ
ତୁଇଁ ନାଇଁ ତ କେ କର୍‌ତା
ମନ୍‌କେ ଭୁର୍‌ତା ସୁରୁତା । (୨)



## ୩୬
## ମାଏଟ ମା'ର ପିଲା

ମୁଇଁ ଭାଇ ! ସେ ମାଏଟ୍-ମାଁର ପିଲା
ସୁନା ସନା ସେ ମାଏଟ୍ ମୋର ହୀରା ଉପଜଉ ଥିଲା ।।୦।।
ହରିଶଙ୍କର, ନରସିଂନାଥ, ଖଁଡ଼ାଧାର ଆର ପରଧାନ ପାଟ
ଢେଗି ଉତକି ଇ ମାଟି ମୋର କର୍‌ସନ୍ ଖେଲା ଲୀଲା ।।୧।।

ଇ ମାଏଟକେ ଆବରି କରି ଆସନ ପକାଏ ସମଲେଇଶିରୀ
ବଲ ବପୁ ଶିରୀ ଉଲଦି ଭରେ ପୁଓ ଝି'ର ଉଁଝ୍‌ଲା ।।୨।।

ଇନ ଜନମି ସୁନ୍ଦର ସାଏ
ଧରି ସାଙ୍ଗେ ଜକା ଭାଏ
ପରଦେଶୀ ରଜାର ଟାନ କରି ନେଲା ଢ଼ିଲା ।।୩।।

ଭୀମ ଭୋଇ ଆର ଗଙ୍ଗାଧର
କାଏବ କବିତା କେଢ଼େ ସୁନ୍ଦର
ଗାଇ ଖାଇ ଇ ମାଟିର ନାଆଁ କରିନେଲେ ଉଜାଲା ।।୪।।

(୧୯୯୪)



## ୩୭

## ପଲସା ଝାରେଁ

ପଲସା ଝାରେଁ ମଣାଇ ଜଲେ ମହୁଲ ମୁଲକି ହଁସେ
ବଉଲ ଭରା ଆମ ବୁରେଇ କୁଇଲି ସୁରେଁ ରସେ
ଜାମ ଭନା ଗୁନ ଗୁନାଏ ଫଗୁଆ ପଚର ଉଠେଁ (ଓଠେଁ)
କେନ ଅଛେ ଯେ ମନର ମିତ ନାଇଁ ଶୁନେ କାଏଁ ମୁଟେଁ
ନାଁ ଜନା ନାଇଁ କାଁ ତୃରେ ଯେ ଡ଼ାହି ବାଆରି ବସେ ।।୧।।

ମନର କନେ ମନ୍-ମକରର ଚେହେରା ଉଠେ ଝଲସି
ଝପେଇ ହଏ ଘାଏକେ ଘାଏ, ଛଇକେ ଆଶାର କଇସୀ
ଏବେ ଆଏବା ସେବେ ଆଏବା ପମିଯ୍ଯା ପରଲିଁ ଖସେ ।।୨।।

ରୂପା ଚାଇଁଗୀର ଫୁଲ ପସରା ଝୁଲେଇ କହେ କୁରେ
କହେ କାଁ କରି ଅଥାବିଥା ସେ ବି ତତେ ନୁରେ
ନୁରା ଖୁଜାଥିଁ ପୂରା ଆନନ୍ଦ ମିଣଲେଁ ଘାଏକେଁ ନଶେ ।।୩।।

(୧୯୯୮)

❖❖❖

## ୩୮

## ଆସ ନ ବୋ ଆସ ଘାଏ

ଖଂଡ଼ାଧାର୍ ଆର ପରଧାନ ପାଟ୍
ହରିଶଁକର ସାଂଗେ ନରସିଂନାଥ୍

ଡ଼ଂଗରୁ ଡ଼େଗି ଡ଼ିଂଗରା ପିଟି ନେଁ ଶୁଭେ କାଏଁ କହୁଛନ୍ ।
ରାଏଜର ଗୁନ ଗାଏର୍ ମା
କମ ନୁହେ କେଭେଁ କାଏଁ ଡ଼ରମା
ଇ ଇଲାକାକେ କାହିଁର ଲୁକେଁ ହରୁମେଷା ଦୁହୁଛନ ।।୧।।
ଫୁତକାରୁଛେ ଉତ୍‌କାମାରି
କୁଇଲି ଘୁଗର୍ ଝୁନି ଝାରି
କହେ କାହାକେ କାଏଁ କରି ଡ଼ର୍‌ସ ଯଦରି ହାଏ।
କାଁ ହେଲା ନେ ଡ଼େରି ଛାତି
କହେସ ଇନ ଇ ମାଟି
ଏଭେଁ ଏଭେଁ ଜନମ ବୀର ସୁରେନ୍ଦର ସାଏ ।।୨।।
ଦେଖ୍ ନ ମାରାଗୁଡ଼ାର ଗଡ୍
ବିକ୍ରମ ଖୁଲର ଅଖର ପଢ଼
ତେଭେଁ ଜାନବୁ ତୋର ସଁସକୃତି କେତେ କୁନହା ଆଏ ।
କେତେ ପୁରନା ତୋର ମାଏଟ୍
କେଭୁଁ ବସିଛେ ମୁନୁଷ କାଏତ୍
ପୁରଖା ତୋର କେତେ ଶିଖେତ ସୋର କର୍ ନ ଯାଏ ।।୩।।
ପରିମଲ୍ ପରବତ୍ ତଲେଁ
ଶୁନବୁ ଯାଆ କଲେଁ କଲେଁ
ପଥରମାନେ ଘୁଷି ହଉଛନ୍ ନାଗାର୍ଜୁନର ପାଠ୍‌କେ ।
ମୁଷା ଅସୁରକେ ବିଲେଇ ହଇ
ମହାପୁରୁ ମାର୍ବେ ଜୁହି ଜୁହି
ପଁଚୁ ପାଣ୍ଡବ ଆଏବାର ଯିବାର ଜାନବୁ ଦେଖଲେଁ ବାଟ୍‌କେ ।।୪।।
ଯାଆ ଝରିଆଇ୍ ରାନୀପୁର୍
ସାତ ବହନି ତୁର୍ ତୁର୍

ଚଉଷଠି ଯୁଗନିର ମୂର୍ତ୍ତି ଥୁଇଁ ପାଧି ବସୁଛନ ତନ୍ତର।
ଆଶ୍ରିଯ ଲାଗସି ଆଜିର ଏକା
ଇନିର ଲୁକେ ଅକା ବକା
ବକତ୍ ବାନ୍ଧି ନେଇଛେ କାଏଁ ଗା ଦରିଆ ଗଁଡ଼ିର ମନ୍ତର୍ ।।୫।।

ରାମ ଦରହକେ ଘାଏ ଯାଆ
ଦେଖି ଆଏବୁ ରାମର୍ ପାହ୍ବା
ଇନ ପରେ ସୁନା ମିଇସି ଛନକି ନେଲେଁ ବାଏଇ୍।
ମାଏଟ କୂଡ଼ଲେଁ ମିଇସି ହୀରା
କାହିଁ ମୁଚି କାହିଁ ନୀଲା।
ରୋମ୍‌ର ହାତେଁ ଇନର କପ୍‌ଟା ବିକୁଥିଲେ କାଏଇ ।।୬।।

ଜଗତ ଯାକର ନୁରି ଆନ
କାହିଁ ପାଏବୁ ଏନ୍ତା ଠାନ
ପାଏନ୍ ମେଟାଇ ସୁନା ବରଷା ହଉଥିବା ଯାହିଁ।
ସୁବର୍‌ନ ମେରୁ ଶିବ ସାଖୀ
ପଦ୍ମରା ତାକର ପାଏଦ୍‌କା ମାଖି
ହେଥିର ଲାଗି ସୋନପୁର ନାଆଁ ହଇଥିଲା କି ନାଇଁ ।।୭।।

ଆସ ନ ବୋ ଆସ ଘାଏ
ସବୁ ଦିନେ କାଏଁ ହାଏ ହାଏ
ହୋ କରି ଉଠ୍‌ମା ଆମର ଭାଷା ଭୂଇଁ କେ ନେଇ।
ଆମର ଠାନେ ଆମର ଚୁଁଦି
ଧରି ମାରୁଛନ ଆମକୁ ଧଁଦି
ତୁଟେଇ ନେମା ସବୁ ଫଦି ଫିକର୍ ଏକା ଯାଇ ।।୮।।

(୧୯୯୨)



## ୩୯
## ମୋର ମାଆଁ ସମ୍ବଲପୁର

ଭାରତ୍ ବଂଧେ ବଗ ବଗାନୁ ଫୁଟଲା ଲେଖେଁ ପଦମ୍ ଫୁଲ।
କେଡ୍ଡେ ସୁନ୍ଦର କେଡ୍ଡେ ଡ଼ଗର ମୋର ମାଆଁ ଇ ସମ୍ବଲପୁର ।।
ମହାନଏଦ୍ ଇନ ମହାନ ବତ୍ରେଁ ମା'ର ମହେମା ଗୀତକେ।
ଗାଇ ଗାଇ ମୁହିନେସି ଦିନ ରାଏତ୍ ମା'ର ଚିଉକେ।।
ନିଖ୍ରେଇ କରି କେତେ ଯତ୍ନେ ପାଏନ୍ ଆନସି ବୁହି।
ମାଏନ ଗୁନ୍‌ଥିଁ ମା'ର ଗୋଡ଼କେ ଦେସି ଅଏନ ଧୁଇ।।
ଧୁଇଲା ପାହାର୍ ଝରଲା ବାଏଲ୍ ଛନକି ନେଲେଁ ମିଲସି ସୁନା।
ପନତ୍ କାନି ଅଢ଼େଇ ନେଲେଁ ହୀରା ଚାହିଁ ଶହେ ଗୁନା।।
ମା'ର ଛାତି ବାରପାହାଡ଼ ଛନଏ କେଭେଁ ନୁହେ ଥରେ।
କଲାପାହାଡ଼ ଗୁରାସର୍ଜାର ଯେ ହେଲ ସେ ଡ଼ରେ।।
ତା'ର କୁଲେଁ ଛନ୍‌କି ଉଠସି ମେହେର ବାଗିର୍ କବିଟେ।
ବୀର ସୁରେନ୍ଦର ଉଚ୍‌କିସି ଆର୍ ନର୍ସିଂନାଥର ଛବିଟେ।।
ମୋର ମା'ର ପାହାତଲ୍‌କେ ସରିହେବା କାଏଁ ସରଗ୍ ଛାର।
ତା'ର ପାହା ତଲେଁ ମୁକ୍ତି ମିଲବା ଜନମିମି ସେ'ନ ବାରମ୍ବାର।।

(୧୯୯୨)

❖❖❖

## ୪୦
## ରାମ ମୋର ନାଏକ

ହେ ରାମ ତୋର ହଉ ଜୟ ତୋର ନ ଥାଉ ଲୟ।
ଭିଲ ବାଁଧି କରି ଭାଗୁ ଭୟ ମନ ରହୁ ମୋର ଥୟ।।
ସୁକୃତ-ସୂର ହଉ ଉଦୟ ଦୁସ୍‌କୃତ ଯାଉ କ୍ଷୟ।
ନାଇଁ ହ ନିରଦୟ ଦେଖା ଜଗତ ରାମ ମୟ।।
ମୋର ମନ କେତେ ଭକ୍ତିମୟ ତୁଇଁ କରିଥିବୁ ତୟ।
ହଇ ଚିତା ଚ଼ଏତନମୟ ଦେଖାମି ଅଛୁ ବଲି ଅତିଶୟ

ଭକ୍ତିହୀନ ମୁଇଁ ଅତିଶୟ୍ ତୁଇଁ ଶକ୍ତିମୟ୍।।
ଦେଲା ଟିକକ ହେଲାନ ବୟ୍ ଦେ ବୁଦେ ବିନୟ୍।।
କାଏବ୍ ଲେଖମି ବଲି ମୁଇଁ ନୁରୁଥିଲିଁ ନାଏକ୍
ନାରଦ୍ ବଏଲେ ସେଥିରଲାଗିଁ ତୁଇଁ ଏକାନ ଲାଏକ୍।
ରମିହେସି ସମିହେସି ରସ ଅଛେ ତୋର ନାମେ।
ଶୁନଲେଁ ଗୁନଲେଁ କେତେ ବନେ ଅମୃତ ଥିପେ ତୋର କାମେ।।



(ସଂଭବତଃ 'ରାମରାହା' ଆରମ୍ଭ କଲା ଅବସରରେ ୧୯୯୨-୯୩ରେ ଏହା ଲିଖିତ)

(ସମାପ୍ତ)

# ଉପନିଷଦର ସ୍ୱର

## ବନ୍ଦନା

ଯେ କାହାକେ ଦେଖା ନାଇଁ ଦିଏ ସମ୍‌କୁଁ ଦେଖୁଥାଏ
ଛିନୁ ନାଇଁ ଛିନୁ ତାହାର୍ ପାହେଁ ପରୁଛେଁ ଘାଏ ॥୧॥
ସେ ସବେଁ ଅଛେ କି ନି କିହେ ନାଇଁ ଜାନ୍‌ଏ
କାହାର୍ ନାଇଁ ଥିବାର୍ ଟାକେ ସେ ନାଇଁ ମାନ୍‌ଏ ॥୨॥
ଚରେର୍ କଁଠେ ଗୀତ୍ ଗାଇ ଶୁନ୍‌ଏ-ଅନ୍ତର-କାନେ
ଗଛ୍-ଲତାର ମୁଡ୍ ହଲାଇଁ ବୁଝେ ତା'ର୍ ମାନେ ॥୩॥
କେତେ ରଙ୍ଗର୍ ଫୁଲ୍ ଫୁଟି ହଁସେ ମୁଲ୍ ମୁଲ୍
କହର୍ ଧାରେଁ କହି ନିଏ "ଗନି ନୁହେ ମୂଲ୍"॥୪॥
ପୃଗୁମ୍ ହଇଁ ଏକସ୍‌କଁଟି ଗୁକି ନିଏ ଉକିଆ
ବନ୍‌ଏ ବୁତାକେ ଜନ୍‌ଏ ନ, ତା'ର୍ କବାର୍ ଏକ୍‌ଲୁକିଆ ॥୫॥
ଗୁଣି ବସ୍‌ଲେଁ ହଏ ସଂଖ୍ୟା-ସଂସାର୍‌ନୁ ପାର୍
ଭାଗ୍ କର୍‌ଲେଁ କେତେ ସାନ୍ ଯେ ହିସାବ୍ ନାଇଁ ତା'ର୍ ॥୬॥
କାହା କେ ଧରାଦିଏ ନାଇଁ ସମ୍‌କୁଁ ରଖେ ଧରି
ସୁତର୍ ଆଏ ଜାନ୍‌ଲେଁ ହଏ ସବୁ ଦୁସ୍ତର୍ ତରି ॥୭॥
ସୂତା ହଇଁ ଗୁଁଥା ରଖେ ଗର୍‌ହ ନଖତର୍ ସାରା
ନିଶାସେଁ ତା'ର୍ ନିସ୍‌ରି ଆସେ ଜୀବନ୍-ଗିଆନ୍ ଧାରା ॥୮॥
ସେ ଧାଗୁଁ ରଁହେ ମେତାଲ୍ ମୋର୍ ପୁହୁଁଚ୍‌କେ ହେଲେଁ
ଦୁରେଁ ଥାଇ ଭି ପାଶେଁ ଅଛେଁ ମାନ୍‌ତିଁ ସବୁବେଲେଁ ॥୯॥
ଅକଥନ୍ ତାର୍ କଥନ୍ ସବେଁ ଅଘଟନ୍ ହଇଁ ଘଟେ
କା'ଣା ବୁଝ୍‌ମି ? ମୁଇଁ ଗିଆନ୍ ଗୁଆଁଲା ପଶୁ ପଟେ ॥୧୦॥
ମୋର୍ ଭିତ୍‌ରେଁ ତାହାକେ ତ ତା'ର୍ ଭିତ୍‌ରେ ମୁଇଁ
ଅଥକ୍ ଚେରେଷ୍ଟା ଥିଁ ଭି ନାଇଁ ହଉଛେ ଥୁଇଁ ॥୧୧॥

ଯାନ୍ ସୁରୁ 'ମୁଇଁ' ନେଇ ଅନବରତ୍ ତ ବାଏ
ବଡ୍ ମୁଇଁ ଯାଙ୍କେ ଅପଡ୍, କେନେ ମାନ୍‌ସିଁ ଯାଏ ?॥୧୨॥
ତାହାକେ ମୋର୍ ଭିତ୍‌ରେଁ ସଦ୍‌ରି କରି ପାର୍‌ତିଁ ଥାବ୍
କାହିଁ ରହେତା ଯାବର୍ ଜାତିଆ ଦୁଖ୍ ଅନର୍‌ଜାବ୍ ॥୧୩॥
ତ' ବି ତାହାକେ ତା'ର୍ ଦୟାନେ ବସୁଛେଁ ଆଏଜ୍ ନୁରି
ପାଏତିଁ ହେଲେଁ ଅନୁଖନୁ ରହେତିଁ ହଇ ଯୁରି ॥୧୪॥
ଯେନେ ଅଛୁ ଯେନ୍ତା ଅଛୁ ଗଁଡ୍ବେ ଦୟା କର୍
ବିଶ୍ୱାସ୍‌କେ ନେ'ନ ଛନ୍‌ଏ, ପ୍ରଭୁ ବିଶ୍ୱମ୍ଭର୍ । ॥୧୫॥
ଗିଆନ୍ ପୁରା ବାଁଧି ନେଇଛୁ ସିଆନ୍ ସୁଜନ୍ ହାତେଁ
ବେଦ୍ ବେଦାନ୍ତ୍ ତାହାଗୁଁ ରଁଚ୍‌କର୍ ଲାଗିଁ ହାତ୍ ପାତେଁ ॥୧୬॥
ଗୋଠ୍ ଟାଙ୍କେ ଗୁ'ଠେଲୋକ୍ ସାଁଗ୍ ସର୍‌ସିଆ ଧରିଁ
ଅନ୍ ମୁନ୍‌ଷିଆ ଅନେକ ଅଛୁଁ ତତେ ନ ଅନ୍‌ସରି ॥୧୭॥
ତୋର୍ ଗିଆଁନ୍-ଘରିଆନୁ ଛଲ୍‌କିଲା ରସ୍ ଥିପେ
ପାଏଲେଁ ପଲାତା ଦୁଖ୍, ବିବେକର ବେଁକ୍ ଡ଼ିପେ ॥୧୮॥
ଗିଆନ୍ ତୁଇଁ ଧିଆନ୍ ତୁଇଁ ବିଚ୍ଚାର ଆଚ୍ଚାର୍ ସବ୍
ତୁଇଁ ବର୍‌ନିଛୁ ବେଦ୍ ବେଦାନ୍ତେଁ ତୋ'ହରି ଅନୁଭବ୍ ॥୧୯॥
ସେ ପରମ୍ ପର୍‌ସାଦ୍‌କେ ଉପ୍‌ନିଷଦୁଁ ସାଆଁଟି
ପାର୍‌ଚି କାଏଁ ମୋର ଭାଷାର୍ ଭାଏ ବହେନ୍‌କୁଁ ବାଆଁଟି ॥୨୦॥
ପୂରାଠାନୁ ପୂରା ମିଲ୍‌ବା ଯାହା ରହେବା ପୂରା
ଆମର୍ ହାତ୍ ଲାଗ୍‌ଲେଁ ହେବା ଅଗ୍‌ବା ଦୂରା ଦୁରା ॥୨୧॥



# ଶ୍ରୀ ଇଶୋପନିଷଦ୍

- ୧ -

**ଓଁ ଇଶାବାସ୍ୟମିଦଂ ସର୍ବଂ ଯତ୍ କିଂଚ ଜଗତ୍ୟାଂ ଜଗତ୍**
**ତେନ ତ୍ୟକ୍ତେନ ଭୁଞ୍ଜିଥା ମା ଗୃଧଃ କସ୍ୟସ୍ୱିଦ୍ ଧନମ୍ ॥୧॥**

ଗତ୍ ହେଲା ନ କେତେ କାଲ୍ ଜଗତ୍ ହେଲା ଦିନୁ
ନିର୍ଯସ୍ କରି କେ କହେବା ଜଗତ୍ କର୍ତା ବିନୁ ॥୧॥
ଅଜିବ୍ କେତେ ଜୀବ୍ ଇନେ ଆଶ୍‌ରିଯ୍ କେତେ ଚିଜ୍
ଦେଖି କାନ୍‌ରେଁ ସମ୍‌କର୍ ଏକା ଏଖେଇ ଗୁଟେ ବୀଜ୍ ॥୨॥
ସମ୍‌କୁଁ ଦେଇଛେ ସୀମା ଗୁଟେ, ଗୁଟେ ଅଧିକାର୍
ସଭେ ରହୁନ୍ ତାର୍ ଦେନ୍‌କେ କରି ସୀଇକାର୍ ॥୩॥
ପରର୍ ସୀମା ନାଇଁ ଚପ୍‌ରିଁ ପର୍‌ହର୍‌ଟା ନାଇଁ ଆଦ୍‌ରୁ
ନିଜ୍‌କେ ଯାହା ମିଲିପାରିଛେ ତାହାକେ ହିଁ ଆଦ୍‌ରୁ ॥୪॥
ଗୁଟେ ହାତେଁ ଗଢ଼ି ରଖିଛେ ଦରବ୍ କେତେ ପର୍‌କାର୍
ସମ୍‌କୁଁ ଦେଇଛେ ଯାହାର୍ ଯେତ୍‌ତା ଚଲି ପାର୍‌ବାର୍ ଦର୍‌କାର୍ ॥୫॥
ସବୁ ଭିତ୍‌ରେଁ ସେ ଥାଇ ସବୁ କର୍‌ନିକେ ଭୁଞ୍ଜୁଛେ
ପାଏଲା ଦର୍‌ବେଁ ସନ୍ତୋଷ୍ କେ ? କହ ପାଇଁ ବି ଗୁଞ୍ଜୁଛେ ॥୬॥
ନିଜର୍ ଦର୍‌କାର୍ ପରେଁ କିଏ ସବ୍ କରୁଛେ ତିଆଗ୍
ତାହାକେ ଭୁଗ, ଅଏଧକାକେ ନାଇଁ ହୁଅ ଆଗ୍ ॥୭॥
କନ୍‌କର୍ କାହାରି ନୁହେ ଯାହାକେ କହେସନ୍ ଧନ୍
ଏକ୍‌ଲା ନିଜର୍ କର୍‌ବାର୍ ମନ୍ ପର୍‌ଛା ଅପରଛନ୍ ॥୮॥
ତାର୍ ଦେନ୍‌କେ ନାଇଁ ମାନି ଯେ ସବୁ କହେସି ମୋର୍
ଅଶାନ୍ତ୍ ସିଏ ନିତାନ୍ତ୍ ଭାବେଁ ଆଏ ଦୁର୍ଦାନ୍ତ୍ ଚୋର୍ ॥୯॥
ପାଏଲା ଅଧିକାରର୍ ଯେ ନାଇଁ ଡେଗେ ସୀମା
ଲାଏକ୍ ଜାନି ବନ୍ଏ ଭାଏଗର୍ ଦିଏ ତା'ର୍ ଜିମା ॥୧୦॥

-୨-

**କୁର୍ବନ୍ନେବେହ କର୍ମାଣି ଜିଜୀବିଷେଚ୍ଛତଂ ସମାଃ ।**
**ଏବଂ ତ୍ୱୟି ନାନ୍ୟଥେ ତୋଽସ୍ତିନକର୍ମ ଲିପ୍ୟତେ ନରେ ॥୨॥**

ଏନ୍ତା ଭାବେଁ କୁତା କରି ଜୀଇଁଲେଁ ବଛର୍ ଶଏ
ଇନିଆଁ କେନ୍ କାର୍‌ବାର୍‌ରେ ମନ୍ କାହିଁ ହଏ ? ॥୧॥
କବାର୍ ଅଗ୍‌ବାର୍ ଇବାର୍ ଆଏ କବାଗୀକେ ବାନ୍ଧେ
କବାଗୀ ଉପ୍‌ରେ ସବାଗୀ ହଇଁ ବର୍ଜସ୍ କରି ଫାନ୍ଦେ ॥୨॥
କବାର୍‌େ ହେଲେଁ ସାନି ଘାଁଟି କର୍‌ତା ପରାଧୀନ୍
କବାର୍‌େ ଗୁଲେଇଁ ହଇଁ କାଟେ କୁର୍‌ଥା ରାଏତ୍ ଦିନ୍ ॥୩॥
କବାର୍ ଭିତରେଁ ବାରବାର୍ ନର୍ କୁଡ଼ି ଉପ୍‌କି ରହେ
ଶୁଦ୍ଧ ଅଲିପ୍ତ କବାର୍‌େ 'ସିନା' ଜୀବନର୍ ଜଏ ଜଏ ॥୪॥
ଯେନ୍ କର୍‌ମେ ବଂଧନ୍ ନାଇଁ ସେ କରମ୍ କେ କରି
କରମ୍-ଉପାସନା କରି ରହୁ ଦେହେ ଧରି ॥୫॥
ନେହେଲେଁ ଇ କାମ୍ ହଏ ଆତ୍ମ-ଘାତର୍ ବାଟ୍
ବାଁକ୍ ଟେଁକ୍ ବାଟ୍ କେଭେଁ ନୁହେ ଟିକେ ଛାଟ୍ ॥୬॥
ତ'ବି କାଁଯେ କବାର୍‌କେ ହାଜର୍ ହେସି ନର୍
ମରନ୍ ନାଇଁ ଥିଲେଁ ବି ତ ଡ଼ାକି ହାକି ମର୍ ॥୭॥

-୩-

**ଅସୁର୍ଯ୍ୟା ନାମ ତେ ଲୋକା ଅନ୍ଧେ ନ ତମସାଽଽବୃତାଃ**
**ତାଂସ୍ତେ ପ୍ରେତ୍ୟାଭିଗଛନ୍ତି ୟେ କେ ଚାତ୍ମ ହନୋ ଜନାଃ ॥୩॥**

ଆତ୍‌ମା କେ ନାଇଁ ଜାନି ପାର୍‌ଲେଁ, ଆତ୍ମଘାତୀ
ଜାନି ହେସି ତାହାକେ ଯେବେଁ ପର୍‌ସି କାମର୍ ଘାଟୀ ॥୮॥
ଆତ୍ମା କେ ଭୁଲିଁ କଲେଁ ଦେହର ଲାଗିଁ କାମ୍
ନିଜର୍ କାଯେଁ କରି ଚ଼ାଲ୍‌ସି ଅନେକର୍ ନୁକ୍ ସାନ୍ ॥୯॥
ବାଟ୍ ଦେଖୁ ଅସୁର୍ ଲୋକ ଅଜ୍ଞାନ୍ ଅଁଧାର୍ ଘେରା

ଦେହୋ ମାଶାନ୍ ପଦା 'ଆତ୍ମା ଯେ' ନେ ଧରେ ଢ଼େରା ॥୧୦॥
କାମ୍ କରି ନାଇଁ ଜାନ୍‌ଲେଁ ଅସୁର୍ ପୁରେଁ ବାସ
ଅମର୍ ଆତ୍ମା ଅମର୍ ପୁର୍‌କେ ଯାଏତା ସିନା ଖାସ୍ ॥୧୧॥
କାମର୍ ଭାବେଁ କାମ୍ କର ନାଇଁ ହୁଅ ଲିପି
ନାଇଁ ମାଖ କାମ୍‌ନା-ରସ୍ ତାହୁଁ ପଡ୍‌ସି ଥିପି ॥୧୨॥

-୪-

**ଅନେଜଦେକଂ ମନସୋ ଜବୀୟୋ**
**ନୈନ ଦେବା ଆପ୍ନୁବନ୍ ପୂର୍ବମର୍ଷତ୍ ।**
**ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍**
**ତସ୍ମିନ୍ନପୋ ମାତରିଶ୍ୱା ଦଧାତି ॥୪॥**

ଅଗତି ହଇଁ ବି ମତିର ଗତି ଜିତିଁ ତା'ର୍ ଗମନ୍
ତା'ର୍ ଠାନେ ଡଲ୍ ପର୍‌ସି ସବୁ ଦୁରୁତ୍ ଧାବନ୍ ॥୧॥
ସବୁ ତୁର୍‌ତି ଗତି କେ ସେ ହଇ ଯାଏସି ପାର୍
କେହେନି ଦେବ୍‌ତା ପୁହୁଁଚି ପାରନ୍ ନାଇଁ ପାଶ୍‌କେ ତାର୍ ॥୨॥
ପାଏନ୍ ପବନ୍ ଯେନ୍‌ମାନ୍‌କର୍ ଅଛେ ଅଧିକାରେଁ
କାମ୍ କର୍‌ସନ୍ ସେ ସବ୍ ତା'ର୍ ମନ୍ ଅନୁସାରେଁ ॥୩॥
ସମ୍‌କର୍ ଶାସନ୍ ତାର୍ ସବୁକାଲେଁ ଜାରି
ସୁର୍‌ଷ୍ଟି ଥିଁ କିଏ ? ତାହାଗୁଁ ଶେରେଷ୍ଠ ଆଏ ଭାରୀ ॥୪॥

-୫-

**ତଦେଜତି ତନ୍ନୈଜତି ତଦ୍‌ଦୂରେ ତଦ୍ୱନ୍ତିକେ**
**ତଦନ୍ତରସ୍ୟ ସର୍ବସ୍ୟ ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ॥୫॥**

ହଗୁମେଷା ଚାଲେ ଆରୁ ଆଦୁଁ ଚାଲେ ନାହିଁ
ବନିହାଁ ଦୂରେଁ ଥାଏ ବି ସେ ଅଗ୍‌ବା ପାଶେଁ ଥାଇଁ ॥୧॥
ସବୁ ଜିନିଷର୍ ଭିତ୍‌ରେଁ ଥାଇ ଥାଏ ସବୁର୍ ବାହାରେଁ

ଏତ୍ତା ଶକ୍ତି ସାଧିତ୍ ହେବା ତାହାର ବିନା କାହାର୍ଁ ।।୨।।
ଯାଇଁ ଯାଏ ନାହିଁ ଥାଇଁ ଥାଏ ନାହିଁ ସିଏ
ଇ ଶକ୍ତି ଯାର ଅକ୍ତିଆର ପରମ୍ ପୁରୁଷ୍ ସିଏ ।।୪।।

-୬-

ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନ୍ୟେବାନୁ ପଶ୍ୟତି
ସର୍ବ ଭୂତେଷୁ ଚାତ୍ମାନଂ ତତୋ ନ ବିଜୁଗୁପ୍‌ସତେ ।।୬।।
ଯେ ଯଦରପି ସବୁ ପ୍ରାଣୀର ଆତ୍ମା ଭିତ୍‌ରେଁ ଭିତ୍‌ରେଁ
ଦରାଡ଼ି ହଇଁ ନୁରି ଦେଖେ ଆତ୍ମାକେ ଠିକ୍ ଘୃତ୍‌ରେଁ ।।୧।।
ତାହାକେ ଦିଶେ ସବୁ ଆତ୍‌ମା ପରମାତ୍ମାର ରୂପ୍
ଅପ୍‌କଟାବା କାହାକେ ? ରହେ ନିର୍କେ ନିର୍କେ ଚୁପ୍ ।।୨।।
ଜଗଦାତ୍ମା ଜକ୍ ଜକ୍ ଦିଶେ ସବୁ ଜୀବ୍ ଭିତ୍‌ରେଁ
କିଏ ଅପ୍‌କଟ୍, କିଏ ସୁନ୍ଦର୍ ବାଆରିବା କେନ୍ ବତ୍‌ରେଁ ।।୩।।

-୭-

ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବା ଭୂଦ୍ବି ଜାନତଃ
ତତ୍ର କୋ ମୋହଃ କଃ ଶୋକ ଏକତ୍ୱମନୁପଶ୍ୟତଃ ।।୭।।
ସବୁ ପରାନୀର୍ ଠାନେ ଆତ୍ମା ଥିବାର୍ ଯେ ଜାନ୍‌ଏ
ସେତାକେ କାଁ କର୍‌ବା ମୋହ୍ ଦୁଖ୍‌କେ କାହିଁ ମାନ୍‌ଏ ?।।୧।।
ନିଜର୍ ଆତ୍ମା ଦେଖି ପାରେ ଯେ ସବୁ ପରାନୀର୍ ଠାନେ
'ସେ ଯେ ଆଏ' 'ମୁଇଁ ସେ ଆଏଁ' ଅନୁଖନୁ ମାନେ ।।୨।।

-୮-

ସ ପର୍ଯ୍ୟଗାଚ୍ଛୁକ୍ରମକାୟ୍ ମବ୍ରଣ -
ମସ୍ନାବିରଂ ଶୁଦ୍ଧମପାପ ବିଦ୍ଧମ୍ ।
କବିର୍ ମନୀଷୀ ପରିଭୂଃ ସ୍ୱୟମ୍ଭୁର୍
ଯାଥା ତଥ୍ୟତୋଽର୍ଥାନ୍ ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ।।୮।।

ତାହାକେ ଜାନ୍‌ବ ସର୍ତେ ଆଏ ସରବ୍‌ ଶକ୍ତିମାନ୍‌
ଛିର୍‌ ସର୍‌ସର୍‌ ଶରୀର୍‌ ହୀନ୍‌ ଶୁଦ୍ଧ୍‌ ନିଷ୍ପାପ୍‌ ଆନ୍‌ ॥୧॥
କବି ଆଏ ମନୀଷୀ ଆଏ ସବୁ ନୁ ବି ମହାନ୍‌
ନିଜେ ନିଜେ ଜନମ୍‌ ହେସି ଆଏ ସରବ୍‌ଜାନ୍‌ ॥୨॥
ତାହାର୍‌ କାଯେଁ ମନ୍‌ମାନେ ସବୁକାଲର୍‌ ଲାଗି
ସମାନ୍‌ ଭାବେଁ ଦିଆ ହେସି ନାଇଁ ବି କେଭେଁ ମାଗି ॥୩॥
ଇଟା ସେ ଅଭୂତ୍‌ ଆତ୍ମାର୍‌ ଆଏ ନ ପରିଚୟ୍‌
ତାହାକେ ଚିହ୍ନି ଜାନି କର୍‌ ତାହାରି ଜୟ୍‌ ଜୟ୍‌ ॥୪॥

-୯-

ଅନ୍ଧଂ ତମଃ ପ୍ରବିଶ୍ୟନ୍ତି ଯେଽବିଦ୍ୟା ମୁପାସତେ ।
ତତୋ ଭୂୟ୍‌ ଇବ ତେ ତମୋ ୟ ଉ ବିଦ୍ୟାୟାଂ ରତାଃ ॥୯॥
ଅଜ୍ଞାନ୍‌-ଅଁଧାର୍‌କେ ଡୁକ୍‌ସନ ଅବିଦ୍ୟାକେ ପୂଜ୍‌ଲେଁ
ତାହାର୍ଁ ଜହ ଅଁଧାର୍‌ ବିଦ୍ୟା-ବିବାଦ୍‌ ନେ ବି ଯୁଝ୍‌ଲେଁ ॥୧॥
କାଁଣା ପରାଭେଦ୍‌ ଆଏ ବିଦ୍ୟା ଅବିଦ୍ୟାର୍‌
ନାଇଁ ଜାନି ସାନି ହେଲେଁ ଅଗ୍‌ବାର୍‌ ଅଁଧାର୍‌ ॥୨॥

-୧୦-

ଅନ୍ୟ ଦେବାହୁର୍ବିଦ୍ୟୟା ନ୍ୟ ଦାହୁର୍‌ ବିଦ୍ୟୟା ।
ଇତି ଶୁଶ୍ରୁମଧୀରାଣାଂ ଯେ ନସ୍ତଦ୍‌ ବିଚ ଚକ୍ଷିରେ ॥୧୦॥
ଗିଆନୀ ଗିଆନ୍‌ ସୁଧୀର୍‌ ମାନେ ଦେଇଯାଇଛନ୍‌ ବୁଝେଇ
ଶୁନି ସେ'ଟା ମନ୍‌ ମାନ୍‌କୁଁ ରଖ୍‌ବାର କଥା ଗିଝେଇ ॥୧॥
ବିଦ୍ୟାର୍‌ ପାଟେଁ ଅଧ୍ୟା ସର୍‌ଲେଁ ମିଲ୍‌ସି ଯେନ୍‌ ଫଲ୍‌
ଅବିଦ୍ୟାର୍ଥି ମିଲ୍‌ବା କାଏଁ ହେଉା ଅବିକଲ୍‌ ॥୨॥
ବିଦ୍ୟାର୍ଥି ବିନୟ୍‌ ମିଳେ ଅବିଦ୍ୟାନେ ଗରବ୍‌
ବିଦ୍ୟା ବୁଝେ ଆତ୍ମାକେ ଅବିଦ୍ୟା ତ ଦରବ୍‌ ॥୩॥

-୧୧-

**ବିଦ୍ୟାଂ ଚ଼ା ବିଦ୍ୟାଂ ଚ ଯସ୍ତଦ୍ ବେଦୋଭୟଂ ସହ ।**
**ଅବିଦ୍ୟାୟା ମୃତ୍ୟୁଂତୀର୍ତ୍ୱା ବିଦ୍ୟୟା ମୃତମଶ୍ନୁତେ ॥୧୧॥**

ବିଦ୍ୟା ଆର୍ ଅବିଦ୍ୟା ଯେ ଦୁହିଙ୍କୁ ଜାନିଥାଏ
ଅବିଦ୍ୟାଥିଁ ମୁର୍‌ତୁ ପର୍ରେ ମୁର୍‌ତୁ ଡେ଼ଗୁଥାଏ ॥୧॥
ବିଦ୍ୟାର୍ ବଲେ଼ ମୁର୍‌ତୁ କେ ସବୁଦିନର୍ ଲାଗି
ଡେ଼ହେଁକି ଯାଇ ଅମର୍ ପନ୍‌ର ହଏ ହର୍ଦମ୍ ଭାଗୀ ॥୨॥
ଆତ୍ମାକେ ଜାନ୍‌ବାରଟା ହିଁ ତ ବିଦ୍ୟା ଆଏ
ସେଥିର୍ ବଲେ଼ ମୁର୍‌ତୁ ଜିତି ଅମ୍‌ରେତ୍‌କେ ପାଏ ॥୩॥

-୧୨-

**ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସଂଭୂତି ମୁପାସତେ ।**
**ତତୋ ଭୂୟ ଇବ ତେ ତମୋ ଯ ଉ ସଂଭୂତ୍ୟାଂ ରତାଃ ॥୧୨॥**

କ୍ଷିତି ନେ ଯାର୍ ଥିତି ନାଇଁ ସେ'ଟା ଅସଂଭୂତି
ତାହାକେ ପୂଜ୍‌ଲେ଼ ନେଇ ଯାଏସି ଅଜ୍ଞାନ୍-ଅଁଧାର୍ କୁଚି ॥୧॥
ତାହାଙ୍କୁ କହ ଅଁଧାର୍ ନିକେ ନେସି ଘିଚ଼ି ଟାନି
ଥିତି ଥିବାର ସଂଭୂତି କେ ଯେ ବସ୍‌ସି ମାନି ॥୨॥
ଅସଂଭୂତି ଅସମ୍ଭବ ଥିତି ତା'ର୍ ଜାନି
ଜାଁ କରି ତାର୍ ଉପାସନାକେ ଯିବ ହଇଁ ଟାନି ॥୩॥
ସଂଭୂତି ତ ଇହାଦେ ଅଛେ ପଛେ ନାଇଁ ଥାଏ
ଜାଁ କରି ତାର୍ ପଛ୍ ପଛ୍ ହେଲେ଼ ହଉଥିବ ଘାଏ ॥୪॥

-୧୩-

**ଅନ୍ୟ ଦେବାହୁଃ ସମ୍ଭବାଦ ନ୍ୟଦାହୁରସମ୍ଭବାତ୍ ।**
**ଇତି ଶୁଶ୍ରୁମ ଧୀରାଣାଂ ଯେ ନସ୍ତଦ୍ ବ୍ୱିଚ୍ଚକ୍ଷିରେ ॥୧୩॥**

ଥିର୍ ମନା ଧୀର୍‌ମାନେ ବୁଝି ବିଚ଼ାରି କହନ୍
ଥିତି ସବୁର୍ କାରଣ୍ ଯେନ୍ ପରମ୍ କାରଣ୍ ବୁହନ୍ ॥୧॥

ଆସି ଉଭାହୁଅ ମୋ ଅଣି ଆଗରେ ନାହିଁ ଆଉ ଅନ୍ୟ ରାହା ॥୬॥

ଢ଼ୁହା- ତେଜରେ ମନରୁ ଜୀବନ ଆଶା
ସମନ ନୀଳୟ ଯିବ ସହସା
ନ ହେବି ମୁଁ ଆଉ ଉଗାରୀ ହସା
ଆସିଲାଣି ତୋର ମରଣ ଦଶା



-୧୦-

## ବସୁଦେବ ବୋଲେ

ବସୁଦେବ ବୋଲେ ରାଜା ନୁହ ନିରିଦୟ
ତୁମେ ମହାବଳୀ ହୋଇ କିପାଁକର ଭୟ ॥୧॥
ଦେବକୀ ଗରଭୁଁ ଯେତେ ଲଭିବେ ଜନମ
ତୁମ ପାଶେ ଦେବି ଆଣି ଦେଉଛି ବଚନ ॥୨॥
ତୁମର ଯେ ଶତ୍ରୁ ଦେବି ତୁମରି ଆଗରେ
ମୋ କଥା ପରତେ କର କହୁଛି ସତରେ ॥୩॥
ଏହାଶୁଣି କଂସରାଜା ମନ କଲା ଥୟ
ପାଶୋରି କି ଦେଲା କ୍ଷଣେ ମରଣର ଭୟ? ॥୪॥
ଆଦେଶିଲା ଏହିକ୍ଷଣି ଏ ଦୁହିଙ୍କି ନିଅ
ବନ୍ଦୀଘରେ ରଖିହାତ ପାଦ ବାନ୍ଧିଦିଅ ॥୫॥
ସମସ୍ତ ପ୍ରହରୀ ଜଗିଥିବେ ବନ୍ଦୀଘର
ପ୍ରସବର କାଳେ ମତେ ଦେବ ସମାଚାର ॥୬॥

ଢ଼ୁହା- ନିଅରେ ନିଅରେ ନିଅ ତୁରିତେ
ଦେବକୀକୁ ବସୁଦେବ ସହିତେ
ରଖନାହିଁ ଆଉ ମୋର ଅଗ୍ରତେ
ବାନ୍ଧିବ ନରଖି ଟିକେ ପରତେ



-୧୧-

## ପାଷାଣ ପାଚେରୀ

ପାଷାଣ ପାଚେରୀ ଘେରା ଚଉଦିଗେ
କଂସରାଜା ବନ୍ଦୀଘରେ
ଦେବକୀ ଦୁଃଖର ଧାରା ଝରୁଅଛି
ନୟନର ନୀରଧାରେ ।।
ଝରେଗୋ ମାତାର ନୟନୁ ଲୁହଝରେ
ହରି ତୁମେ ଧରି କେଉଁ ଧଇରଯ
ରହିଛଯା ମଉନରେ ।।୦।।
ସେ ପୁରେ କାନ୍ଦିଲା ଅବନୀ ଜନନୀ
କାନ୍ଦିଲା ଧରିତ୍ରୀ ମାତା
କାନ୍ଦି ବହେ କେତେ ମର୍ତ୍ତ୍ୟରେ ମାନବ
ସରଗ ଦେଶେ ଦେବତା
ଜନନୀ ଜଠରୁ ଯୋଗ ତେଜି ଆସ
ଆସ ଏ ଅବନୀ ପୁରେ ।।୧।।
ଡୁହା- ଆସ ଆସ ହରିହେ ଆଉ ନୁହ ନିଷ୍ଠୁର
ଜନନୀ ଯାତନା ହେଲାଣି ଅସୁହା
ଦୟାକରି ଆସ ଅବନୀପୁର

□ □ □

-୧୨-

## ବେଦନା ବିହ୍ୱଳେ

ବେଦନା ବିହ୍ୱଳେ ମଥାପାତି କୋଳେ ରଖିଣ କହେ ଦେବକୀ
ଗରଭ ସନ୍ତାନ ଜନମ ଆଗରୁ ଜୀବନ ମୋର ନେବ କି
ପ୍ରାଣନାଥ ପ୍ରାଣ ଗଲା ମୋର ଜାଣ ସହିନୁହେଁ ଏ ବେଦନା ଗୋ
କଂସର ଭଉଣୀ ବୋଲିକି ଭଗାରୀ କରି ଦେଉଛି ଯାତନା ଗୋ
ପ୍ରାଣନାଥ ପ୍ରାଣଯାଉ, ଯୁଗେ ଯୁଗେ କଥା ରହିଥାଉ ଗୋ ।।୧।।
ଜନମ ଯା ନାହିଁ ଜନମ ନେଉଛି କା ଆଗେ କରେଁ ଗୁହାରି ଗୋ

ଶିକୁଳିରେ ହାତ ବନ୍ଧା ପ୍ରାଣନାଥ ଯୋଡ଼ି ନ ପାରେ ଜୁହାରୀ ଗୋ
ଗୋଡ଼େ ଲାଗିଅଛି ବେଡ଼ି, ଉଠି ବସିଲେ ଯାଉଛି ପଡ଼ି ଗୋ ॥୨॥
ବସୁଦେବ ଧୀର ପ୍ରାଣ ସଜନୀର ନୟନର ନୀର ପୋଛି
କହେ ପ୍ରିୟତମା ଏ ସାରା ବେଦନା ସହିବାର ମାତ୍ର ଅଛି
ସହିନିଅ ପ୍ରିୟତମା ଏ ସାରା ବେଦନା ଗୋ
ଅଶାନ୍ତ ମୁଁ କି ବୋଲିଣ ଦେବି କି ସାନ୍ତ୍ୱନା ଗୋ ॥୩॥
କାନ୍ଦନା ଗୋ ବିଧୁମୁଖୀ - ଜଗତେ କେ ନୁହେଁ ଦୁଃଖୀ
ମାଯ଼ା ଶିକୁଳିରେ ବନ୍ଧା ସାରା ସରଜନା ଗୋ ॥୪॥
ଜଗତର ଦୁଃଖ ଭାର ହୋଇବ ବୋଲି ଉଦ୍ଧାର
ତୁମ୍ଭେ ଭୋଗିବ ସେ ଦୁଃଖ ବିଧି ବିଡ଼ମ୍ବନାଗୋ ॥୫॥
ଦୁହା- ସହି ନିଅ ଗୋ ପରାଣ ସହି
ଜନମ ନେବେ ଯାର ଜନମ ନାହିଁ
ବଢ଼ିଗଲା କେତେ କଂସ ଅତ୍ୟାଚାର, ସହିନିଅ...
ବଢ଼ିଗଲା କେତେ ଧରା ଦୁଃଖ ଭାର, ସହିନିଅ ସହିନିଅ...
ରାଜକନ୍ୟା ଦେଖିଇତ ବନ୍ଦୀଘର, ସହିନିଅ ସହିନିଅ ସହିନିଅ
ଚାହୁଁଛନ୍ତି ଯେବେ ଜଗତ ପାଇଁ, ସହିନିଅ ସହିନିଅ ॥



-୧୩-

## ବିଭିଷିକା ମୟ

ବିଭୀଷିକା ମୟ ଦୁଃଖ ପଥଧାରେ ଯାତ୍ରୀ ଆଉ ସହଯାତ୍ରୀ
ବିଭୁଙ୍କୁ ସୁମରି ଜୁହାରୀ କହନ୍ତି ପାହିଯାଉ କାଳରାତ୍ରୀ
ନାରାୟଣ ତୁମେ ପରା ନରର ଅୟନ
ବାଟକାହିଁ ଦିଶେ ନାହିଁ ଫିଟାଅ ନୟନ ॥୧॥
କାନ୍ଦିଲେ ସରଣ ଲୁହ କି ଅଛିହେ ତୁମେ କହ
କି ଜନିଷେ କରିବି ମୁଁ ତୁମରି ଅର୍ଚ୍ଚନ ॥୧॥
ମୋର ବୋଲି ଅବଶେଷ ନାହିଁ କିଛି ହେ ବିଶ୍ୱେଶ
ନେବଯଦି ଦେଉଛି ମୁଁ ଏ ଛାର ପରାଣ ॥୨॥

ଡୁହା- ପରାଣ ଦେବତା ମୋର ନିଅ ଏ ପରାଣ
ଜୀବନ ବୋଲି ଦେଇଛ ଜୀବନ୍ତ ମରଣ
ନିଅ ନିଅ ପ୍ରଭୁ ନିଅ ନିଅହେ
ଏ ଛାର ଜୀବନଟିକ ନିଅ ନିଅ ପ୍ରଭୁ ନିଅ ନିଅହେ
ନୁହେଁ କେବେ ଲୋଭନୀୟ, ନିଅ ନିଅ ପ୍ରଭୁ ନିଅ ନିଅହେ
ନିଅପ୍ରଭୁ ବନ୍ଦନୀୟ, ନିଅ ନିଅ ପ୍ରଭୁ ନିଅ ନିଅହେ ।।



-୧୪-

## ହରିବୋଲି ହରିଣାକ୍ଷୀ

ହରି ବୋଲି ହରିଣାକ୍ଷୀ ସେ ଦେବକୀ ଧରିତ୍ରୀରେ ଗଲେପଡ଼ି
ବସୁ ବସୁ ବସୁଦେବ ବସୁଧାରେ ପ୍ରିୟା ପାଶେ ଗଲେ ପଡ଼ି
ଘନ ଗରଜିତ ନୀରବ ନିଶିଥ ହୋଇଗଲା ତେଜୀୟାନ
ଶଙ୍ଖ, ଚକ୍ର, ଗଦା, ପଦ୍ମ ହାତେଧରି ବିରାଜିତ ଭଗବାନ
ଅଧିର ନ ହୁଅ ତୁମେ ଅଧିର ନ ହୁଅ ହେ
କାହାରି ଦୁଃଖ ଦେଖି ମୁଁ ନୁହେଁ କେବେ ନିରୀଦୟ ।।୦।।
ଭୋଗିଛ ଯାହା ଯାତନା ହେଲା ସେ ମୋ ନିରାକନା
କୃପାରେ କୃପଣ ନୁହେଁ ଘେନ ମୋର ଅନୁଗ୍ରହ ।।୧।।
ଛିଣ୍ଡିଯାଉ ଏ ଶିକୁଳି ବନ୍ଧନୁ ୟାଅ ମୁକୁଳି
ଅଜନ୍ମା ମୁଁ ଜନ୍ମନେବି ଆଉ ନାହିଁ କିଛି ଭୟ ।।୨।।
ଡୁହା- ତୁମଠାରେ ଦିନେ କରିଥିଲି ସତ
ପୁଅପରି ମୁହିଁ ହେବି ବୋଲି ଜାତ
ଜନମିଲା ପରେ ମତେ ନେବ ଗୋପପଥ
କନ୍ୟାରୂପେ ତହିଁ ଜନ୍ମିଥିବେ ଜଗନ୍ନାଥ
ବଦଳରେ ତାଙ୍କୁ ଆଣି କଂସ ହାତ
ଗୋପେବଢ଼ି କରିବି ମୁଁ ଦଇତ ନିପାତ



-୧୫-

## ନୀରବ ନିଶୀଥର

ନୀରବ ନିଶୀଥର ସେ ନିରନ୍ଧ୍ର ଅନ୍ଧକାର
ବନ୍ଧନ ମୁକ୍ତା ଦେବକୀ ମୁଖେ ଆହ୍ଵାକାର
କହନ୍ତି ପଡିଦେବ ବସୁଦେବ ପାଶେ
ଦେଖନାଥ ଜଗନ୍ନାଥ ଆମରି ପୁଅ ସେ
ଦେଖ ଏ ପୁଅକୁ, ଦେଖହେ ପ୍ରିୟତମ
ମଧୁରିମା ଆଉ ସୁନ୍ଦରୀମା ସବୁ
ମୂର୍ତ୍ତିମାନ ଏହି ସୁଅକୁ ।।୦।।
ଦେଖିଲେ ନ ରହେ ଦୁଃଖ-ଦେଖ ଦେଖ ପଦ୍ମମୁଖ
ଭୁଲିଯିବ ସ୍ୱର୍ଗସୁଖ ପୋଛି ନିଅ ଲୁହକୁ ।।୧।।
ଜୀବନର ଜଳପନା - କାମନାର କଳପନା
ଫିଙ୍ଗିଦିଅ ସାଥେ ତାର ଛାତିତଳ କୋହକୁ ।।୨।।
ତୁହା- ପ୍ରାଣନାଥ, ପ୍ରାଣନାଥ ଦେଖ ପ୍ରାଣଭରି
ପ୍ରାଣହୀନ ଦେହେ ପ୍ରାଣ ଯିବହେ ସଞ୍ଚରି
ଏକଠାବେ କେତେଶିରୀ ରହିଅଛି ପୁରି
ସବୁ ନୀରବତା ଭଙ୍ଗକରି ସଦ୍ୟଜାତ ଶିଶୁର କ୍ରନ୍ଦନ
ନିଷ୍ଫନ୍ଦ କାରାଗାର ଗଗନ ପବନ ଭରି ଜାଗିଉଠେ ସ୍ପନ୍ଦନ



-୧୬-

## ସଚ୍ଚିଦାନନ୍ଦ ସୁନ୍ଦର

ସଚ୍ଚିଦାନନ୍ଦ ସୁନ୍ଦର ସେ ମୂର୍ତ୍ତିରେ ସବୁ ରୂପର ଆଭା
ନୟନ ବେନିରେ ଚନ୍ଦ୍ର ସୂର୍ଯ୍ୟର ଆଭା
ଅଙ୍ଗେ ଅଙ୍ଗେ ଅନଙ୍ଗର ସେ ଉତ୍ତାଳ ଉତ୍ସଙ୍ଗ
ଦେଖି ଦେଖି ଦେବକୀର ହେଲା ଧ୍ୟାନ ଭଙ୍ଗ
ବସୁଦେବ ପାଶେଥାଇ ଉଠାନ୍ତି ପ୍ରିୟାରେ

ମୂର୍ଚ୍ଛିତା ସଦ୍ୟ ମାତୃକା କରୁଣାର୍ଦ୍ର ହିଆରେ
ଉଠ ଉଠ ସହଚରୀ ଗୋ, ଉଠ ସୁର ସୁନ୍ଦରୀ
ଏ ସୁନ୍ଦର ରୂପ - ନୟନେ ନ ଲାଗୁଁ
ତିଳେ ନ ପାରିଲ ଧଇର୍ଯ୍ୟ ଧରି ।।୦।।
ଦେଖିଲେ ଏ ରୂପ କାରାଗାର ଦୁଃଖ
ସବୁ ନିମିଷକେ ଯିବ ବିସ୍ମରି
ଜନମ ଯାତନା ଛାଡ଼ି ପଳାଇବ
ଅଙ୍ଗେ ଅଙ୍ଗେ ସୁଖ ହୋଇବ ଭରି ।।୧।।
ନନ୍ଦିତ ନନ୍ଦନ ତେଜି ଅକିଞ୍ଚନ
କି କରିବି ପାରେ ନାହିଁ ବିଚାରି
ତୁମ ଛଡ଼ା ଆଉ କେ ଅଛି ଗୋ ଏଠି
କାହାକୁ ଅବା ମୁଁ ଯିବି ପଚାରି ।।୨।।
ତୁହା- ଉଠ ଉଠ ପ୍ରିୟ ଉଠଗୋ ବାରେ
ଅନୁଭବ କର ଉପଭୋଗରେ
କରୁଣା କରର ଏହି କୃପାରେ

□ □ □

-୧୭-

## ହେ ମୋହନ ଆସ

ହେ ମୋହନ ଆସ ଗରୁଡ଼ାସନ ହେ
ଜଗତ ଯେ ବହେ ତାକୁ ବୋହିଯିବି
ଗୋପପଥ ଧାରେ ଧାରେ ବହନ ।।୦।।
ଇଚ୍ଛାମୟ ତବ ଇଚ୍ଛା ମହାନ
ମୋ ଛାର ହାତେ କରିବେ ପୂରଣ ।।୧।।
ଜୀବେ କଢ଼ାଏ ଯେ ଭବ ଅରଣ୍ୟ
ଯିବେ ମୋ ସାଥେ ମୁଁ ହୋଇବି ଧନ୍ୟ ।।୨।।
ଅନ୍ଧକାରେ ଅନ୍ଧ ମୋର ନୟନ
ବାଟ କହି ଦିଅ ହେ ନାରାୟଣ ।।୩।।

ଦୁହା- ପୃଥିବୀ ଆକାଶେ ପ୍ରେମକରେ ଆଜି
ଚାଲ ପ୍ରଭୁ ଏହି ଲଗନେ
ସାଥେ ଅଛି ମୁହିଁ ନେଇ ଚାଲ ପ୍ରଭୁ
ଯାଉଥିବି ପ୍ରେମ ମଗନେ

□ □ □

-୧୮-

## ଫିଟିଗଲା କଂସ

ଫିଟିଗଲା କଂସ କାରାବାସର ସେ କଂସାର କବାଟ
ଆବାହନୀ ଗାଏ କୃଷ୍ଣ ଅଷ୍ଟମୀର ସେ ଭାଦ୍ର ନିଶୀଥ
ନିର୍ମୋକ ବସୁଦେବର ମୁକ୍ତ ଗତିପଥ ହେଲା ପ୍ରତିହତ
ବ୍ୟଗ୍ରପାଦ ଉଗ୍ରସେନ ଆଗେ ଦେଖି ସ୍ତମ୍ଭୀଭୂତ
ଦଣ୍ଡାୟିତ ବସୁଦେବ ଉପରେ ଶଙ୍ଖ, ଚକ୍ର, ଗଦା ଧରି ବିଜେ ଭଗବାନ
ଭକ୍ତିପୂର୍ଣ୍ଣ ହୃଦୟରେ ସ୍ତୁତିପାଠ କରେ ଉଗ୍ରସେନ
ହେ ହରି, ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରୀ
ହତଚପା ମୁହିଁ- ହେଲି ହତପାପ
ଆହେତୁକ କୃପା ଲାଭ କରି ।।୦।।
ରାଜା ଥିଲି ଦିନେ ଥିଲାମନେ ଦୁଃଖ
ହେଲି ବୋଲି ରାଜ ପ୍ରହରୀ
ଥିଲେ ରାଜପଦେ ଏ ପରମ ପଦେ
ପାଇଥାନ୍ତି କହ କେଉଁପରି ।।୧।।
ସାନ ନ କଲେ କି ମହାନର ଦେଖା
ମିଳିଯିବ କେଉଁ ପରି
ସାନ କଲ ବୋଲି ପ୍ରାଣନାଥ ମୋର
ପାଇଲି ଦେଖା ତୁମରି ।।୨।।
ଦୁହା- ମାଗୁଛି ହୋଇ ଅତି ଦୀନ
ବନ୍ଧୁହୀନର ଏ ଆହେ ଦୀନବନ୍ଧୁ ପଦତଳେ ନିବେଦନ
ମୋହପରି ଦୀନ ପ୍ରଭୁ ସବୁଦିନ ପାଉଥାଉ ତୁମ ଦରଶନ
ମୋପରି ଅଭାଗା ଭାଗୀ ହେଉଥାଉ ତୁମ ଦରଶନେ ନିତିଦିନ

□ □ □

-୧୯-

## ବସୁଦେବ ଆଗରେ

ବସୁଦେବ ଆଗରେ ସହସ୍ର ଜ୍ୟୋତିଷ୍କର ଦ୍ୟୁତି
ପ୍ରତି ପଦପାତ ଉଦ୍‌ଭାସିତ ଉଦ୍‌ଭାସିତ ଅତି
ଚାଲନ୍ତି ବସୁଦେବ ଗୋପପଥ ପ୍ରାନ୍ତେ
ଯମୁନା ଆସଇ ଧାଇଁ ଦର୍ଶନ ନିମନ୍ତେ
ପୁଣ୍ୟତୋୟା ଯମୁନାର ଅବରୋଧ ଜାଣି
ବସୁଦେବ କହୁଛନ୍ତି ଯୋଡ଼ି ବେନି ପାଣି
ଯମୁନା ବିମନା କିପାଁ ଘେନ ମୋ ବିନତି କି
ମୋ ପାଇଁ ମୁଁ କହୁନାହିଁ ନିଏ ମୁଁ ଶ୍ରୀପତି କି ।।୦।।
କି ପାଇଁ ଗୋ ତୁ ଗରଜି-ଧାଇଁଅଛୁ ବ୍ୟଗ୍ରେ ଆଜି
ଯମର ଭଉଣୀ ବୋଲି ଦେଉ ଯମ ଭୀତି କି ।।୧।।
ସଂସାର ସରିତା ପତି ତରାଏ ଯେ ନିତି ନିତି
ସରିତା ଗୋ ସେ ମୋ ସାଥି କମାଅ ତୋ ସ୍ଥିତିକି ।।୨।।
ତୁହା- ମନା ନ ମାନିଲୁ ଯମୁନାଗୋ ପଶୁଛି ଝସାଇ
ହାତେ ଅଛି ଚିନ୍ତାମଣି ନ ନେବୁ ଖସାଇ

□ □ □

-୨୦-

## ଫୁଲି ଫୁଲି ଆସୁଅଛି

ଫୁଲି ଫୁଲି ଆସୁଅଛି ଯମୁନା ଆଉ ବସୁଦେବ ଯାଉଅଛି ପଶି ପଶି
ତଳେ ଯମୁନାର ସ୍ରୋତ ଉର୍ଦ୍ଧ୍ୱେ ବରଷୁଛି ଘନ ବାରି ରାଶି ।
ତିନ୍ତୁଥିବ ସନ୍ତାନ ମୋ ବରଷୁଛି ଜଳ,
ହାତ ଅଞ୍ଜଳି ଦେଖିଲେ ହୋଇଣ ବିକଳ ।
କେତେବଡ଼ ସର୍ପଫଣା ଶିଶୁକୁ ଆବୋରି,
ରହି ଅଛି ଜାଣି ପିତା ନିଜକୁ ବି ଦେଲା ଯେ ପାଶୋରି ।
ଶୁଖିଲା ଯମୁନା ନଇ ପାରିହେଲେ ପୁତ୍ର ସଙ୍ଗେ ପିତା,

ନନ୍ଦଘରେ ପ୍ରବେଶିଲେ ଯଶୋଦା ଯେ ତହିଁ ମୂର୍ଚ୍ଛାଗତା
ଜନମିଛି ଯୋଗମାୟା ବିଜୁଳିର କାନ୍ତି,
ସେ ବିଜୁଳି କନ୍ୟା ଧରି ଥୋଇଲେ ସନ୍ତତି।
ପାହିଗଲା ନିଶିଥିନୀ ଗଲା ଅନ୍ଧକାର,
ନନ୍ଦଘରେ ପୁତ୍ରଜନ୍ମ ଘୋଷେ ଆହ୍ଲାକାର।
ଦେଖ ଆନନ୍ଦ ମୂରତି ନନ୍ଦ ମନ୍ଦିରେ ଗୋ ସଜନୀ ଦେଖ ସଜନୀ
କେଉଁ ଅମରାରୁ ଖସି ଆସିଅଛି ଗୋପକୁ ଧୀରେ ଏ ଅବନୀ ।।୦।।
କଳା ହେଲେ କିସ ହେଲା କଳାକର ତେଜ ଦେଖି ଯିବ ସରମି
ଶତ ସୂରୁଯ ତ ସତେଲୋ ସଜନୀ ଜ୍ୟୋତି ଦେଖିଯିବେ ନରମି ।।୧।।
ଯଶୋଦାକୁ ଯଶ ଦାନ କରିବାକୁ କିଏ ବା ଆସିଛି ଅବନୀ
ନନ୍ଦନ ନିନ୍ଦିବ ନିଜ କପାଳକୁ ପାଇଗଲା କୂଳ ପାବନୀ ।।୨।।
କୃଷ୍ଣ ଜନ୍ମ ଜାଣି ଆନନ୍ଦ ତଟିନୀ ମହିରେ ବହିଲା ଉଜାଣି
ହେମଚନ୍ଦ୍ର ହୃଦେ ଆନନ୍ଦର ପଦ ପଡ଼ିବ କେବେ ବା କେଜାଣି ।।୩।।
ଦୁହା- ଆସ ଆସ ଲୋ ସଜନୀ ଦେଖିବା ଆସ
ଆନନ୍ଦରେ ଆସ ଆଜି ନନ୍ଦ ଉଆସ - ଦେଖିବା ଆସ
ଶତ ଜନମର ତୋର ଗତ ଆୟୁଷ - ଦେଖିବା ଆସ
ଫେରି ଆସିବ ଲୋ ଘେନି କେତେ ପିୟୂଷ - ଦେଖିବା ଆସ
ଆସ ଆସ ପୂରିଯିବ ସକଳ ଆଶ - ଦେଖିବା ଆସ

□ □ □

(ସମାପ୍ତ)

# ରାଧା ସନ୍ନ୍ୟାସ

-୧-

## ଗୋବିନ୍ଦ ଗୋପାଳ

ଗୋବିନ୍ଦ ଗୋପାଳ କୃଷ୍ଣ ଗୋପୀ ହୃଦବାସୀ,
ମୋ ହୃଦ ମନ୍ଦିରେ ଧୀରେ ଦୟାକର ଆସି ।।୦।।
ମାନସ ଆସନ ମୋର ରଖିଛି ସଜାଇ,
ହେ ମୁନି ମାନସ ବାସୀ ବସ ବାରେ ଯାଇ ।।୧।।

ପ୍ରେମେ ଆଖି ବାରି ଢ଼ାଳି ଧୋଇବି ଚରଣ,
ପ୍ରାଣ ନଇବିଦ୍ୟ ପଦେ କରିବି ଅର୍ପଣ ॥୨॥
ଦୀନ ହେମଚନ୍ଦ୍ର ପୂଜା ଘେନ ଭାବଗ୍ରାହୀ
ତୁମରି ଆସିବା ଆଶେ ରହିଛି ଅନାଇ ॥୩॥
ଢ଼ୁହା- ଅନାଇ ଅନାଇ ମଲି - ନାହିଁ କରନା ହେ
ଆସବାରେ ଦୟାକରି - ନାହିଁ କରନା ହେ
ଆସିପଛେ ଯିବ ଫେରି - ନାହିଁ କରନା ହେ
ପୂଜାମୋର ହେଉଘେନା - ନାହିଁ କରନା ହେ ।



- ୨ -

## ପ୍ରଥମ ପ୍ରଣତି

ପ୍ରଥମ ପ୍ରଣତି ତୋରେ ରାଧାପତି
ଦୁଜେ ଗୁରୁ ଚଇତନ୍ୟ, ॥୦॥
ତୋହ ପ୍ରେମେ ବାଇ ଗଉର ନିତାଇ
ତାଙ୍କ ପଦେ ମୋ ପ୍ରଣାମ ॥୧॥
ଚତୁର୍ଥ ପ୍ରଣତି ସାଧୁଜନ କତି
କ୍ଷମାକର ମୋର ଦୋଷ,
ତରିବି ହେ ଧରି ସଂକୀର୍ତ୍ତନ ତରି
ଗାଇ ଶ୍ରୀରାଧା ସନ୍ନ୍ୟାସ ॥୨॥
କୃଷ୍ଣ ପ୍ରେମ ଗୁଣ ଗୁଣି ଶତ ଗୁଣ
ଗୁଣୀ ଜନେ ପୁଣି ଶୁଣ,
ହେମଚନ୍ଦ୍ର ଦୀନ ତୁମରି ଅଧୀନ
ମାଗେ ତବ ପ୍ରେମ ଋଣ ॥୩॥
ଢ଼ୁହା- କୃଷ୍ଣ କୃଷ୍ଣ ବୋଲିରେ ଆଜି ନାଚିବି ମୁହିଁ

ହୋଇ ପାଗଳ,
ପାଗଳ କୃଷ୍ଣ ରାଧାନାମେ ରାଧାନାମ ଗାଇ
ହୋଇବି ଭୋଳ ।
ରାଧେକୃଷ୍ଣ, ରାଧେକୃଷ୍ଣ, ରାଧେ ରାଧେ, କୃଷ୍ଣ କୃଷ୍ଣ ।



-୩-

## ଗୋପପୁରେ ଗୋପୀମେଳେ

ଗୋପପୁରେ ଗୋପୀମେଳେ ଗୋପ ଯୁବରାଜ,
ଶଇଶବ ସାରିହେଲେ ଯଉବନେ ଆଜ ହେ ॥୦॥
ସର୍ବ ଗୋପାଙ୍ଗନା ସହ ଶ୍ରୀମତୀ କିଶୋରୀ,
କୃଷ୍ଣ ପ୍ରେମେ ପାଗଳିନୀ ଜଗତ ପାଶୋରି ॥୧॥
କୃଷ୍ଣ ପ୍ରେମ ମଧୁପାଇ ପିତା ହେଲା ସର୍ବ
ଗୋପ ଅପବାଦ ଯେତେ କୃଷ୍ଣ ପ୍ରେମେ ଖର୍ବ ॥୨॥
ଚନ୍ଦ୍ର ସତେ କୃଷ୍ଣଚନ୍ଦ୍ର ଗୋପୀ ହେଲେ ତାରା,
କୃଷ୍ଣ ବିନେ ଗୋପପୁର ଗୋପୀ ପାଇ କାରା ॥୩॥
ଗୋପୀ ପଦ୍ମବନେ କୃଷ୍ଣ ବସନ୍ତ ଭ୍ରମର,
ଶ୍ରୀକୃଷ୍ଣ ଚୁମ୍ବନ ଚିହ୍ନେ ପୂରେ ଗୋପୀ ଭାଲ ॥୪॥
ଗୋପୀ ଛାତି ପରେ କୃଷ୍ଣ ଗୋରଚନା ଚିତା,
ସୁଚିତ୍ରିତ ଏହି ପ୍ରେମ ହେମ କରେ ଚିନ୍ତା ॥୫॥
ଡୁହା- ଚିନ୍ତାମଣି ହରି,
କୁଚିନ୍ତାରେ ଗଲି ସରି - ଚିନ୍ତାମଣି ହରି,
କହ କେଉଁ ଚିନ୍ତାକରି - ଚିନ୍ତାମଣି ହରି,
ଭବସିନ୍ଧୁ ହେବିପାରି - ଚିନ୍ତାମଣି ହରି,
କହ ସତେ ଦୟାକରି - ଚିନ୍ତାମଣି ହରି ।



-୪-

## ଗୋପୀ ଗୋପ

ଗୋପୀ ଗୋପ ଗୋପାଳଙ୍କ ପାଳକ ମୁରାରୀ,
ସ୍ୱଜନ ଦୁର୍ଜ୍ଜନ କଂସ କରିଛି ବଇରୀ ॥୦॥
ଜଗତ ଗତି ଗୋବିନ୍ଦ କଂସକୁ ଦୁର୍ଗତି,
ବାଳକୃଷ୍ଣ ବିନାଶନେ ବୋଲେ ତା ଦୁର୍ମତି ॥୧॥
ପୂତନା ମାରଣ କୃଷ୍ଣେ ମରାଇବା ଆଶେ,
ପୁତନାଦି ବିଘ୍ନଗତା ପେଶେ କୃଷ୍ଣ ପାଶେ ॥୨॥
ଷଣ୍ଢା, ବକା, ଅର୍ଘା କରି ଆଉ ଯେତେ ଚାର,
ପଠାଇଲା ସେ ଯେ ମାତ୍ର କୃଷ୍ଣେ କେତେ ଛାର ॥୩॥
କଂସ ପେଶା ଚାରତ୍ଣେ ବହ୍ନି ସମ ହରି,
ଜାଳି ଉଜଳି ରହିଲେ ବ୍ରଜରେ ବିହରି ॥୪॥
ତୁହା- ବିହରି ବିହରି ଆସ
ମୋ ହୃଦ ବ୍ରଜରେ ବାରେ - ବିହରି ବିହରି ଆସ
ହେ ବ୍ରଜ ବିହାରୀ ହରେ - ବିହରି ବିହରି ଆସ
ହେମର ଏ ଭିକ୍ଷା ଥରେ -ବିହରି ବିହରି ଆସ
ଆସହେ ଆସହେ
ନ ଆସିଲେ ଚଳେନା - ଆସହେ ଆସହେ
ଧର୍ଯ୍ୟ ଦୀପ ଜଳେନା - ଆସହେ ଆସହେ

□ □ □

-୫-

## ମଧୁପୁରେ ଧନୁସଭା

ମଧୁପୁରେ ଧନୁସଭା ଧରେ ବହୁ ଶୋଭା,
ଦୁର୍ଜନର ଆୟୋଜନ ଜନମନ ଲୋଭା ହେ ॥୦॥
କରିଛି ସାୟକ ପୂଜା ମଥୁରା ନାୟକ,.
ଦେଖାଇବ ବୋଲି କୃଷ୍ଣ ନିଧନ ନାଟକ ହେ ॥୧॥

ରାଇଲା ମନ୍ତ୍ରୀ ଅକ୍ରୂରେ କହିଲା ବୁଝାଇ,
ଶୀଘ୍ର ହେ ଅକ୍ରୂର ତୁମେ ଗୋପପୁର ଯାଇ ହେ ॥୨॥
ନନ୍ଦ ଯଶୋଦାଙ୍କ ସଙ୍ଗେ କୃଷ୍ଣ ବଳରାମ,
ଆଉ ସର୍ବ ଗୋପାଳଙ୍କୁ ସଙ୍ଗେ ସଙ୍ଗେ ଆଣ ହେ ॥୩॥
ଆଜ୍ଞାମାତ୍ରେ ଅକ୍ରୂର ସେ ରଥ ଘେନିଗଲା,
କହେ ହେମଚନ୍ଦ୍ର କଂସ କପାଳ ଫାଟିଲା ହେ ॥୪॥
ଡ଼ୁହା- କପାଳ ଫାଟିଲା
କୃଷ୍ଣ ଯେବେ ଗୋପୁଁ ଯିବେ - କପାଳ ଫାଟିଲା
ନନ୍ଦ ଯେବେ ଛାଡ଼ି ଦେବେ - କପାଳ ଫାଟିଲା

□ □ □

-୭-

## ବ୍ରଜପୁରୁଁ ନେବ ବୋଲି

ବ୍ରଜପୁରୁଁ ନେବ ବୋଲି ବରଜ ବିହାରୀ ଦୂତ
ଆସେ ରଥ ଧରି ଦୂତ ଆସେ ରଥ ଧରି ॥୦॥
କଂସରାଜା ଧନୁସଭା କରେ ଆୟୋଜନ
ପଠାଇଛି ରଥନେବ କୃଷ୍ଣ ବଳରାମ ॥୧॥
କେହୁ ବୋଲେ ତାଙ୍କ ସଙ୍ଗେ ଯିବେ ରାଜାରାଣୀ
କେହୁ ବୋଲେ କେ ଛାଡ଼ିବ କହ ଜାଣି ଜାଣି ॥୨॥
ଡ଼ୁହା- ଯାହାହେବ ପଛେ ହେଉ ଗୋ
ନ ଛାଡ଼ିବା କୃଷ୍ଣେ କେବେ କେ ନେଉଛି ନେଉ
ରଥଧରି ଦୂତ ପଛେ ଆସି ଫେରିଯାଉ

□ □ □

-୭-

## ଗୋପ ନଗରରେ

ଗୋପ ନଗରରେ ଗୋପିନୀ ସକଳ କପାଳରେ ଦେଲେ ହାତ
ଯିବେ ବୋଲି ଗୋପୀନାଥ
କେ ବୋଲଇ ଯଦି ଯିବେଗୋ ସଜନୀ
ହୋଇବି ମୁଁ ପ୍ରାଣେ ହତ ॥୦॥

ରାଧା ନୟନରୁ ନ ଶୁଖଇ ନୀର
ମୁଖେ ଫୁଟେ ନି ଗୋ ଭାଷା,
ବାସ ବସନରୁ ତୁଟଇ ଆଦର
ଜୀବନରେ ନାହିଁ ଆଶା,
ସେ ଗଲେ ଆମେ କି କରିବା ସଜନୀ
ଧରିବା ମଥୁରା ପଥ ॥୧॥
ତୁହା- ଯିବେଗୋ ଯଦି ଗୋପରୁ ଗୋପୀକା ଜୀବନ
ସଜହୁଅ ଗୋ ସଜନୀ ସଙ୍ଗେ ଯିବା ମଧୁବନ
ନ ନେଲେ ସଙ୍ଗେ ସଜନୀ, ଯମୁନାରେ ଦେବା ପ୍ରାଣ



-୮-

## ଶ୍ୟାମଘନ ମଧୁପୁର

ଶ୍ୟାମଘନ ମଧୁପୁର ଯିବେ ଚାଲିକି,
ଗୋପାଳୁଣୀ କି ଗୋପାଳ - ମାଆପାଖେ ଗୋପବାଳ,
ଏକ ଗୋପବାଳୀ କହେ ଆନ ବାଳୀକି ॥୦॥
ରହୁବରକୁ ଓଗାଳି ଆଗେ
ବହୁ ଗୋପର ବୋହୁ,
କହନ୍ତି କାନ୍ଦି କୃଷ୍ଣ ନ ଯାଉ
ଗୋପର ଗୋପେ ରହୁ,
ଆଉ ନ ଦିଶିବ - ତା ମୁଖ ରାଜୀବ - ସହିରେ
ହେମଚନ୍ଦ୍ର କହେ କାଲିକି ॥୧॥
ତୁହା- ଫେରିଆ ଫେରିଆ ଆଉ ନ ଯା ହରି,
ନ ଯା ଗୋପଡେଜି ଗୋପ ବିହାରୀ,
ଫେରିଆ, ଫେରିଆ ।



-୯-

## ଗୋପିନୀ ବିନତି

ଗୋପିନୀ ବିନତି ଗୋପୀପତି ପ୍ରତି
ଦୂତ ପ୍ରତିପତ୍ତି ନାଶିଲା,
ଜଗତ ବିପତ୍ତି କଂସ ନରପତି
ବିପତ୍ତିକି ତାର ଘୁଞ୍ଚିଲା ॥୦॥
ଅକ୍ରୂର ମନେ ପାଞ୍ଚିଲା
ନୃଶଂସ କଂସକି ସତେ ବଞ୍ଚିଲା ॥୧॥
କିପରି ମୁଁ ପାପୀ ମାରି ସବୁ ଗୋପୀ
ଗୋପୀ ପଦ୍ମ ମିହିରେ ନେବି
ଏ ଗୋପ ଆକାଶେ ଆଲୋକ ପ୍ରକାଶେ
ତାମସେ ଗୋପେ କିପାଁ ନେବି
ଅକ୍ରୂର ମନେ ପାଞ୍ଚିଲା
ଗୋପୀମରା ପାପ ନିଶ୍ଚେ ଲାଗିଲା ॥୨॥
ଯେବେ ଗୋପୀନାଥ ନ ଯିବେ ମୁଁ ହତ
ଗଲେ ନିଶ୍ଚେ କଂସ ମରିବ
ଗୋପାଙ୍ଗନା ପ୍ରେମ ଦୁଃଖ ନିବାରଣ
ଦେଖିବି ଆଜକେ କଳିବ
ଅକ୍ରୂର ମନେ ଭାବିଲା
ପ୍ରେମମୟ ପ୍ରେମ ମନେ ଗୁଣିଲା ॥୩॥
ସେ ଯେ ଅନ୍ତର୍ଯାମୀ ସବୁକଥା ଜାଣି
କରିବେ ଯା କରିବା ଉଚିତ
ପ୍ରେମୀ କୃଷ୍ଣଚନ୍ଦ୍ର ପାଦେ ହେମଚନ୍ଦ୍ର
ବାନ୍ଧିକି ପାରିବ ତା ଚିତ୍ତ
ଅକ୍ରୁର ଚିନ୍ତା ତେଜିଲା, ଗୋପୀଦେହେ କୃଷ୍ଣ ଆତ୍ମା ଖୋଜିଲା ॥୪॥
ଦୁହା- ଖୋଜିଲା ଜୀବ - କୃଷ୍ଣ ଆତ୍ମା ଗୋପୀ ଶରୀର



-୧୦-

## ରାଧା ଆଖି ପାଣି

ରାଧା ଆଖି ପାଣି ପୋଛି ପୁଛିଲେ ମୁରଲୀ ପାଣି ହେ
ଏତେ ଛଳ ପାଇଚି ଥିଲ କେବେ ତ ନ ଥିଲି ଜାଣି ହେ ॥୦॥
ଯହିଁ ରାଧା କୃଷ୍ଣ ତହିଁ - ବୋଲିନାଥ ଥିଲ କହି
ଯିବ ଯେବେ ପ୍ରାଣସାଇଁ ମିଛହେବ ତୁମ ବାଣୀ ହେ ॥୧॥
ଯେବେ ପ୍ରଭୁ ଗୋପ ତେଜିବ - ରାଧାବ୍ରଜ ବରଜିବ
ନିଶ୍ଚେ ଯମପୁର ଯିବ ରହିବ ତୁମରି ବାଣୀ ହେ ॥୨॥
ଯିବେ ଜାଣି କୃଷ୍ଣଚନ୍ଦ୍ର - ଘୁଖେ ରାଧା ମୁଖଚନ୍ଦ୍ର
କାନ୍ଦେଦୀନ ହେମଚନ୍ଦ୍ର ରାଧା ହେବେ ସନ୍ନ୍ୟାସିନୀ ହେ ॥୩॥
ଡୁଦ୍ଧା- ସନ୍ନ୍ୟାସିନୀ ହେବି ନିଶ୍ଚୟ।
ରାଧା ମନେ କଲେ ଥୟହେ - ସନ୍ନ୍ୟାସିନୀ ହେବି ନିଶ୍ଚୟ।
ସନ୍ୟାସିନୀ ହେବି,
ଗେରୁଆ ବସନ ପିନ୍ଧି - ସନ୍ନ୍ୟାସିନୀ ହେବି,
ଲଲାଟେ ଚନ୍ଦନ ଘେନି - ସନ୍ନ୍ୟାସିନୀ ହେବି,
କୃଷ୍ଣ ନାମ ମୁଖେ ଧରି - ସନ୍ନ୍ୟାସିନୀ ହେବି,
ଯେତେଦିନ ବଞ୍ଚିଥିବି - ସନ୍ନ୍ୟାସିନୀ ହେବି,



-୧୪-

## ଗୋପ ରମଣୀ, ପର କରନା

ଗୋପ ରମଣୀ, ପର କରନା ମୁଁ ଗୋପର,
ପରକଲା ପରକାର ପରକାଶ କର ଗୋ ॥୦॥
ମୁଁ ଗଲେ ମଥୁରା - ଗୋପିନୀ ନୁହ ଆତୁରା,
ରହିବ ଗୋ ଅପାଶୋରା ତୁମେ ମୋହର ॥୧॥

-୯-

## ଗୋପିନୀ ବିନତି

ଗୋପିନୀ ବିନତି ଗୋପୀପତି ପ୍ରତି
ଦୂତ ପ୍ରତିପତ୍ତି ନାଶିଲା,
ଜଗତ ବିପତ୍ତି କଂସ ନରପତି
ବିପତ୍ତିକି ତାର ଘୁଞ୍ଚିଲା ॥୦॥
ଅକ୍ରୁର ମନେ ପାଞ୍ଚିଲା
ନୃଶଂସ କଂସକି ପତେ ବଞ୍ଚିଲା ॥୧॥
କିପରି ମୁଁ ପାପୀ ମାରି ସବୁ ଗୋପୀ
ଗୋପୀ ପଦ୍ମ ମିହିରେ ନେବି
ଏ ଗୋପ ଆକାଶେ ଆଲୋକ ପ୍ରକାଶେ
ତାମସେ ଗୋପେ କିପାଁ ନେବି
ଅକ୍ରୁର ମନେ ପାଞ୍ଚିଲା
ଗୋପୀମରା ପାପ ନିଶ୍ଚେ ଲାଗିଲା ॥୨॥
ଯେବେ ଗୋପୀନାଥ ନ ଯିବେ ମୁଁ ହତ
ଗଲେ ନିଶ୍ଚେ କଂସ ମରିବ
ଗୋପାଙ୍ଗନା ପ୍ରେମ ଦୁଃଖ ନିବାରଣ
ଦେଖିବି ଆଜକେ ବଳିବ
ଅକ୍ରୁର ମନେ ଭାବିଲା
ପ୍ରେମମୟ୍ ପ୍ରେମ ମନେ ଗୁଣିଲା ॥୩॥
ସେ ଯେ ଅନ୍ତର୍ଯ୍ୟାମୀ ସବୁକଥା ଜାଣି
କରିବେ ଯା କରିବା ଉଚିତ
ପ୍ରେମୀ କୃଷ୍ଣଚନ୍ଦ୍ର ପାଦେ ହେମଚନ୍ଦ୍ର
ବାନ୍ଧିକି ପାରିବ ତା ଚିତ୍ତ
ଅକ୍ରୁର ଚିନ୍ତା ତେଜିଲା, ଗୋପୀଦେହେ କୃଷ୍ଣ ଆତ୍ମା ଖୋଜିଲା ॥୪॥
ଦୁହା- ଖୋଜିଲା ଜୀବ - କୃଷ୍ଣ ଆତ୍ମା ଗୋପୀ ଶରୀର



-୧୦-

## ରାଧା ଆଖି ପାଣି

ରାଧା ଆଖି ପାଣି ପୋଛି ପୁଛିଲେ ମୁରଲୀ ପାଣି ହେ
ଏତେ ଛଳ ପାଇଛି ଥିଲ କେବେ ତ ନ ଥିଲି ଜାଣି ହେ ॥୦॥
ଯହିଁ ରାଧା କୃଷ୍ଣ ତହିଁ - ବୋଲିନାଥ ଥିଲ କହି
ଯିବ ଯେବେ ପ୍ରାଣସାଇଁ ମିଛହେବ ତୁମ ବାଣୀ ହେ ॥୧॥
ଯେବେ ପ୍ରଭୁ ଗୋପ ତେଜିବ - ରାଧାବ୍ରଜ ବରଜିବ
ନିଷ୍ଟେ ଯମପୁର ଯିବ ରହିବ ତୁମରି ବାଣୀ ହେ ॥୨॥
ଯିବେ ଜାଣି କୃଷ୍ଣଚନ୍ଦ୍ର - ସୁଖେ ରାଧା ମୁଖଚନ୍ଦ୍ର
କାନ୍ଦେଦୀନ ହେମଚନ୍ଦ୍ର ରାଧା ହେବେ ସନ୍ନ୍ୟାସିନୀ ହେ ॥୩॥
ତୁହା- ସନ୍ନ୍ୟାସିନୀ ହେବି ନିଶ୍ଚୟ।
ରାଧା ମନେ କଲେ ଥୟହେ - ସନ୍ନ୍ୟାସିନୀ ହେବି ନିଶ୍ଚୟ।
ସନ୍ୟାସିନୀ ହେବି,
ଗେରୁଆ ବସନ ପିନ୍ଧି - ସନ୍ନ୍ୟାସିନୀ ହେବି,
ଭଲାଟେ ଚନ୍ଦନ ଘେନି - ସନ୍ନ୍ୟାସିନୀ ହେବି,
କୃଷ୍ଣ ନାମ ମୁଖେ ଧରି - ସନ୍ନ୍ୟାସିନୀ ହେବି,
ଯେତେଦିନ ବଞ୍ଚିଥିବି - ସନ୍ନ୍ୟାସିନୀ ହେବି,



-୧୪-

## ଗୋପ ରମଣୀ, ପର କରନା

ଗୋପ ରମଣୀ, ପର କରନା ମୁଁ ଗୋପର,
ପରକଲା ପରକାର ପରକାଶ କର ଗୋ ॥୦॥
ମୁଁ ଗଲେ ମଥୁରା - ଗୋପିନୀ ନୁହ ଆତୁରା,
ରହିବ ଗୋ ଅପାଶୋରା ତୁମେ ମୋହର ॥୧॥

କାନ୍ଦି କନ୍ଦାଅନା ମୋତେ - ଛାଡ଼ି ଦିଅ ଧୀର ଚିତ୍ତେ,
ରହିପୁଣି ଦିନାକେତେ ଫେରିବି ଘର ॥୨॥
ଗୋପୀ ପିଣ୍ଡୁ ମୋ ଜୀବନ - ରହି ନ ପାରିବ ଭିନ୍ନ,
କହେ ହେମଚନ୍ଦ୍ର ଦୀନ ନୁହଁ କାତର ॥୩॥
ଡୁହା- ପର କରନା ଗୋ
ସୁନାଗୋରୀ ଗୋପନାରୀ - ପର କରନା ଗୋ
ନିଶ୍ଚୟ ଆସିବି ଫେରି - ପର କରନା ଗୋ
ମୁଁ ପରା ତୁମ ନିଜର - ପର କରନା ଗୋ
ଗୋପିନୀ ସୁନା ବରନା - ପର କରନା ଗୋ



-୧୨-

## ରାଧାର ବିନୟ ବାଣୀ

ରାଧାର ବିନୟ ବାଣୀ ଗୋପୀ କାତର କାହାଣୀ
ହାଣି ସବୁ ଯିବେ ନିଶ୍ଚେ ବେଣୁପାଣି
ତେଜି ଗୋପ ରାଜାରାଣୀ,
ମଧୁରା ଯିବାର ନୁହେଁ ବାରି ବାର
କିଶୋରୀ ପାରିଲେ ଜାଣି ॥୦॥
ଫେରିଲେ ଘରକୁ ରାଧା ଚନ୍ଦ୍ରାନନୀ
ଆକୁଳ ଭାବକୁ ଧରି
ଘେନିଲେ କପାଳେ ଚିତା ଚନ୍ଦନର
ସନ୍ୟାସ ଭାବ ଆଚରି
ଅଙ୍ଗୁ ଅଳଙ୍କାର ବସନ ସୁନ୍ଦର
ପାଇଲେ ଶେଷ ମେଲାଣି ॥୧॥
କନକ କଙ୍କଣ ପକାଇଲେ ଦୂରେ
ହାତେ ରୁଦ୍ରାକ୍ଷର ମାଳା
କଷାୟ ବସନ ପରିଧାନ ଅଙ୍ଗେ

ଜପା ମାଳୀ ଶୋଭେ ଗଳା
ଗଲା ଶ୍ୟାମଘନ ଚୋରାଇ ମୋ ମନ
ବଢ଼ଇ ହେମ ଜାଳେଣି ॥୨॥
ଡ଼ୁହା- ହରିଣୀ ନୟନା ରାଧାକୁ ଆଉ ଦିଅନା ବାଧା
ହରି ହେଲେ ହରି ନ ପାରିବ ଧରି
ତବ ପ୍ରେମଗୁଣେ ହୋଇଛି ବନ୍ଧା



-୧୩-

## ସୁନ୍ଦର ଶ୍ୟାମ

ସୁନ୍ଦର ଶ୍ୟାମ ସୁନ୍ଦର ଲାଗି
ରାଧା ହେଲା ସନ୍ୟାସିନୀ ଗୋ
ସିନ୍ଦୁର ତେଜି ଚିତା ଚନ୍ଦନର
ଘେନିବସେ ବିରହିଣୀ ଗୋ ॥୦॥
ଯେ କେଶେ ସୁନ୍ଦରୀ ବାନ୍ଧୁଥିଲା ଜୁଡ଼ା
ସେ କେଶ ସୁନ୍ଦର ପଡ଼ିଛି ମୁକୁଳା
ବାହୁରୁ ବାହୁଟି ତଳେ ପଡ଼େ ଲୋଟି
ଶୂନ୍ୟ ଦିଶେ ବାହୁବେଣୀ ଗୋ ॥୧॥
କଣ୍ଠୁ ରତ୍ନହାର କଲାଣି ବାହାର
ତୁଳସୀ କଣ୍ଠିରେ ଗୁନ୍ଥିଲାଣି ହାର
ସିନ୍ଦୁର ତେଜି ଚିତା ଚନ୍ଦନର
ଘେନିବସେ ବିରହିଣୀ ଗୋ ॥୨॥
ଡ଼ୁହା- ଶ୍ୟାମ ସୁନ୍ଦର ହେ ତୁମରି ପାଇଁ
ରାଇ ବିନୋଦିନୀ ହେଲାଣି ବାଇ - ଶ୍ୟାମ ସୁନ୍ଦର ହେ ତୁମରି ପାଇଁ
ବନମାଳୀ ରୂପ ମନରେ ଭାଳି
ବନଜ ବଦନା ହେଲା ପାଗଳୀ - ବନମାଳୀ ରୂପ ମନରେ ଭାଳି



-୧୪-

## ସବୁ ହୃଦୁଦରେ

ସବୁ ହୃଦୁଦରେ ଦରଦ ରଖି ସବୁରି ନୟନେ ଜଳ
ଗଲେ ଗିରୀଧାରୀ ହଳଧର
ଗୋପ ଦାଣ୍ଡେ ରଥ ଧୂଳି ଉଡ଼ି ଛାଇ
ଛାଇଯାଏ ଗଗନ ପଟଳ ।।୦।।
ଗୋପନାରୀ ସବୁ ରଥ ପଥ ଚାହିଁ
ରହିଥିଲେ ଜଳ ଜଳ
ପିଣ୍ଡୁ ପ୍ରାଣଗଲା ପ୍ରାୟ ଗୋପାଙ୍ଗନା
ହେଲେ ସବୁ କଳବଳ
ରାଧା ହୃଦୁଦରୁ ହଜିଗଲା ଜ୍ଞାନ
ପଡ଼ି ରହିଲା ଭୂତଳ ।।୧।।
ଡୁହା- ରାଧା ନୟନରୁ ବହଇ ନୀର
ନୀର ନୁହେଁ ନୀରଜାକ୍ଷି ଅନ୍ତର, ରୁଧିର ଧାର

□ □ □

-୧୫-

## ମୁଁ ସେଇପଥେ ଯିବି

ମୁଁ ସେଇପଥେ ଯିବି ଚାଲି ଗୋ
ଯେ ପଥେ ଯାଇଛି ବନମାଳୀ,
ଝରିଥିବ ଯହିଁ ତାର ଚରଣର ରେଣୁ
ମତେ ଦିଅ ସେହି ଧୂଳି ଗୋ
ମୁଁ ଅଙ୍ଗେ ହେବି ବୋଳି ।।୦।।
ଭାଷିଣ ଏସନ ରାଧା ତତ୍କ୍ଷଣ
ଭୂତଳେ ପଡ଼ିଲା ଢଳି
ମୁଦ୍ରିତ ନୟନେ ଚାହେଁ କ୍ଷଣେ କ୍ଷଣେ

ଭଜେ କାହିଁ ବନମାଳୀ
ଛାନ ପାଇ କେବେ ଧ୍ୟାନ କରି ବସେ
ବନମାଳୀ ରୂପ ଭାଳି ॥୧॥
ଡୁଡ୍ଧା- ଅନ୍ତରେ ଦେଖେ
ମୁଦ୍ରିତ ନୟନେ ଗୋବିନ୍ଦ ମୂରତି - ଅନ୍ତରେ ଦେଖେ
ବନମାଳୀ ରୂପ ମାନସେ ଲେଖେ - ଅନ୍ତରେ ଦେଖେ



-୧୬-

## ଅନ୍ତରେ ଦେଖେ ଗୋରୀ

ଅନ୍ତରେ ଦେଖେ ଗୋରୀ ଅନ୍ତର୍ଯ୍ୟାମୀ ରୂପ
ବାହାରେ ନାହିଁ ତାର ଛାନ
ଗଡ଼ି ଗୋପଦାଣ୍ଡେ - ଧୂଳି ବୋଳି ମୁଣ୍ଡେ
କୃଷ୍ଣ ଚରଣ ରେଣୁ କରେ ସନ୍ଧାନ ॥୦॥
ଧୂଳି ଧୂସରିତ କିଶୋରୀ ଶରୀର
ଶିରେ ଶୋଭେ ତାର ଚନ୍ଦନର ଗାର
ବସନ ମାନେନା ମନା ଖସୁଥାଇ ଘନ ଘନ ॥୧॥
କନକ ଅଙ୍ଗେ ତାର କୃଷ୍ଣ କୃଷ୍ଣ ଲେଖା
ହାତେ ଜପାମାଳୀ ବୋଲେ ଦିଅ ଭିକ୍ଷା
ଭିକ୍ଷା ମାଗେ ଭିଖାରିଣୀ ରୂପେ କୃଷ୍ଣ ପ୍ରାଣଧନ ॥୨॥
ଡୁଡ୍ଧା- ଏ ଗୋପ ଦାଣ୍ଡେ ଆଜି ନୂଆଁ ଭିଖାରିଣୀ ମୁଁ,
ଖାଲି କୃଷ୍ଣନାମ ଦିଅ ମତେ ଆଣି ଗୋ,
ବିନୋଦିନୀ ରାଧା ହେଲା ଆଜି ବିରହିଣୀ ଗୋ ।



-୧୭-

## ହରିହେ - ଆଜି ହେଲି ଭିକାରିଣୀ

ହରିହେ - ଆଜି ହେଲି ଭିକାରିଣୀ
ଗୋପୀନାଥ ଥାଉଁ ଏହି ଗୋପପୁରେ
ମୁହିଁ ହେଲି ଅନାଥିନୀ ।।୦।।
ବୃନ୍ଦା କାନନେ ଗଲେ ନାହାନ୍ତି ହରି
ଯମୁନା ଗଲେ ନାହିଁ ଯମୁନା ବିହାରୀ
କୁଞ୍ଜେ କୁଞ୍ଜେ ବିରହ ବହ୍ନି ଗୁଞ୍ଜେ
ନାହିଁ ଆଉ ମୁରଲୀ ଧ୍ୱନୀ ।।୧।।
ମୁରଲୀ ଧର ନାହିଁ, ନାହିଁ ସେ ମୁରଲୀ
ଗୋଠେ କିଏ ଡ଼ାକଦେବ ଆସଲୋ ଧବଳୀ
ଅମା ଅନ୍ଧାରେ କହ କିଏ ଡ଼ାକି ବହେ ଧୀରେ ଧୀରେ
ଡ଼ାକିବ ଆସ ବିନୋଦିନୀ ।।୨।।
ତୁହା- ଆଉ ଡ଼ାକେନା ଗୋ ଡ଼ାକେନା
ମୂରଲୀ ମଧୁର ସ୍ୱରେ
ଆସ ରାଇ ବିନୋଦିନୀ
ଆସ ଗୋ ଯମୁନା କୂଳେ ।



-୧୮-

## ରାଧାର ଏମନ୍ତ ଦଶା

ରାଧାର ଏମନ୍ତ ଦଶା
ଦେଖି ସବୁ ଗୋପୀ ଅଚି ଆକୁଳରେ
ସେ ଦୁଃଖେ ହେଲେ ବିବଶା ।।୦।।
ସଜନୀ ସମାଜ ରଜନୀଶମୁଖୀ
ରାଧାକୁ ବସାଇ ପାଶେ
କେହି ଅବା ଅଚି ଆକୁଳେ ବୋଲଇ

ରାଧାପ୍ରାଣେ ନାହିଁ ଆଶା ।।୧।।
ଯେତେବେଳେ ଗୋରୀ ହରି ହରି ବୋଲି
ଜ୍ଞାନହୀନା ହୋଇ ପଡ଼େ
କେ ସଜନୀ ଆସି ବିଞ୍ଚଇ ବିଞ୍ଚଣା
କେ କରେ ଜୀବନେ ଶଂସା ।।୨।।
କେ ସଜନୀ ଆସି ସିଞ୍ଚଇ ପାଣି
ନୂଆଁ ବସନ କେ ଧାଉଁଛି ଆଣି
କେଉଁ ଗୋପୀ କହେ ଗୋପୀନାଥ ନାମ
ଆଉ ନ ଧରିବ ମୁଖେ
ଅନାଥିନୀ ସବୁ ହୋଇଲୁଁ ଗୋପିନୀ
ତୁଟିଲା ସବୁ ଭରସା ।।୩।।
କେ ସଜନୀ ଆସି ରାଧା କର ଧରି
ବୋଲଇ ଉଠ ଗୋ ଉଠ
କେହ୍ନୁ ଆସି ସବୁ ଗୋପୀ ମଧ୍ୟେ କରେ
ରାଧା ପ୍ରେମ ପରଶଂସା ।।୪।।
ତୁହା- କେହ୍ନୁ ବୋଲେ ଆଉ ନୁହ ଗୋ ବାଇ
ତୁମ ସମ ଆଉ କେ ଅଛି ରାଇ

□ □ □

-୧୯-

## ନୀରଜ ନୟନା

ନୀରଜ ନୟନା ରାଧା ବରଜ ଦାଣ୍ଡରେ
ନୀର ଜର ଜର ନେତ୍ରେ ବସେ ଉଦାସେ,
ପୂର୍ଣ୍ଣମୀ ଚନ୍ଦ୍ର କି ଉଦୟ ଆଗରୁ
ପଡ଼ିଗଲା ଅବା ରାହୁ ଗରାସେ ।।୦।।
କାହିଁଗଲେ ବନମାଳୀ ବୋଲି ଝାଳେ ବାଳୀ
ଯାଉଥିଲା ନୀରପାଶେ ସବୁ ଦେଲା ଢ଼ାଳି

ସେହି ନୀର ଗୋପିନୀ ସବୁ ଆଖି ନୀରେ
ମିଶେ ଯେବେ ଗୋପ ସାରା ସେ ନୀରେ ଭାସେ ।।୧।।
କୃଷ୍ଣ ଯିବା ଯୋଗୁଁ ଏକେ ପଡ଼ିଛି ଚହଳ
ଆହୁରି ବିକଳ କଲା ରାଧା ଆଖି ଜଳ
ସେ ସ୍ୱରେ କାନ୍ଦେ ଭୂତଳ କାନ୍ଦିଲା ପାତାଳ
ସେହି ସ୍ୱରେ ପ୍ରତିଧ୍ୱନି ଉଠେ ଆକାଶେ ।।୨।।
ଘୋଷା- ଉଦାସିନୀ ରାଧାଯିବ ମରିହେ,
ହରି ତୁମରି ରୂପ ସୁମରି,
କଳଜ ନୟନୁ ଜଳ,
ଝରି ଝରି ନିଶ୍ଚେ ଯିବ ସରିହେ,
ହରି ତୁମରି ରୂପ ସୁମରି ।



-୨୦-

## ସୁଧାଂଶୁମୁଖୀ ରାଧା

ସୁଧାଂଶୁମୁଖୀ ରାଧା ହୃଦେ ବେଦନା ଭାର ବଳିପଡ଼େ,
ବନମାଳୀର ଚରଣ ରେଣୁ ମାଗିବ ବୋଲି ଢଳି ପଡ଼େ ।।୦।।
ଅଙ୍ଗୁ ବସନ ପଡ଼ଇ ଖସି କେ ଗୋପୀ ଦିଏ ଖୋସି
ଆକୁଳ ମନେ ବ୍ୟାକୁଳ ସ୍ୱରେ କୃଷ୍ଣ ନାମ ହୁଏ ଘୋଷି
ସେ ଦଶା ଦେଖି ଗୋପନଗରେ ଦୁଃଖର ନିଆଁ ଜଳି ପଡ଼େ ।।୧।।
ଭରମି ଉଠେ ମାନସ ତାର ମରମେ ମାରେ କର
କହେ କାହିଁକି ଏଡ଼ିକି ହୀନ ପୋଡ଼ା କରମ ମୋର
ହାକୃଷ୍ଣ ବୋଲି ହତାଶ ହୃଦେ ନିରାଶ ମନେ ଟଳିପଡ଼େ ।।୨।।
ଘୋଷା- ଗୋବିନ୍ଦ ନାମେ କାନ୍ଦଇ ଅରବିନ୍ଦମୁଖୀ ରାଇ,
ବର ବରନାର ଦୁଃଖ ଦେଖିଲେ ନ ହୁଏ ସହି ।



-୨୧-

## ତୁମରି ଲାଗି ହରି

ତୁମରି ଲାଗି ହରି ଗଲିଣି ମୁଁ ସରି,
କି ଲାଭ କହ ଏ ମଲା ଦେହ ଧରି ॥୦॥
ମନେ ଅଛି ଯେବେ ଧନ ଏଇ ଗୋପ ଗ୍ରାମେ
ଅପବାଦ ରଟିଯାଏ ଏ ମୋହରି ନାମେ
ମୋର ଦୁଃଖେ ତୁମ ଆଖି ଲୁହ ଆସେ ଝରି ॥୧॥
ଆଜି ଯେବେ ଦୁଃଖ ନିଆଁ କାଳ ନିଜ ହାତେ
ଅଭାଗିନୀ ତୁମ ଦୟା ପାଇଁ ହାତ ପାତେ
ଏତେ ନିରିଦୟ କିପାଁ କେଉଁ ହୃଦ ଧରି ॥୨॥
ତୁହା- ତୁମରି ନାମେ ଯଦି ପାରନ୍ତି ମରି
ନରକକୁ ଗଲେ ବି ଭାବନ୍ତି ସରଗ ପରି
ଅନୁରୋଧ ଖାଲିପ୍ରଭୁ ସେ ମରଣ ଦିଅ ହରି

□ □ □

-୨୨-

## ମରିବି ବୋଲି କାମନା ଯଦି

ମରିବି ବୋଲି କାମନା ଯଦି ମରି ପାରେନି ମୁହିଁ
ଅଦେଖା ହାତେ କେ ବାରଣ କରେ, କହ ହେ ନାହିଁ ନାହିଁ ॥୦॥
ମରଣ ସୁଖ ଦେଖିବି ବୋଲି ଇଚ୍ଛା ଯଦି ମୋର,
ମାନସ ଆଖେ ଦିଶଇ ମତେ କା ରୂପ ମନୋହର,
ସେ ଆସି କହେ, ତୁହିଁ ଗୋ ମୋର ତୋହରି ସିନା ମୁହିଁ ॥୧॥
ଯାହାରି ଲାଗି ତେଜିବି ବୋଲି ଭାବଇ ଏହି ଦେହ,
ସେ ଆସି କହେ ପାଶେ ଅଛି ମୁଁ ନିରାଶ ନାହିଁ ହୁଅ,
ତୁ ମଲେ ମୁହିଁ ତେଜି ବି ଦେହ ବଞ୍ଚିବି କାହା ପାଇଁ ॥୨॥
ତୁହା- ନାହିଁ ନାହିଁ ହରି
ରାଧାପଛେ ଯାଉ ମରି
କହାଅନି ଆକାଶ ପାତାଳ ଏ ଧରଣୀପୁରୀ - ରାଧାପଛେ ଯାଉ ମରି।

□ □ □

-୨୩-

## କିଶୋରୀ ଗାଏ କୃଷ୍ଣ ନାମେ

କିଶୋରୀ ଗାଏ କୃଷ୍ଣ ନାମେ
କି ସୁରେ ସୁନ୍ଦରୀ ଅନୁଭବ କରେ ପ୍ରାଣେ ।।୦।।
କୃଷ୍ଣ ରୂପ ଧରି ବୁକେ - କୃଷ୍ଣ ନାମ ଗାଇ ମୁଖେ
ଅଙ୍ଗେ କୃଷ୍ଣ କୃଷ୍ଣ ଲେଖେ ବୁଲେ ଗୋପ ଗ୍ରାମେ ।।୧।।
ବୋଲେ ଗୋ ସଜନୀ ମୋର - ଆସିଲେ ମରଣ ଘୋର
କହିଦେବ ଥରେ ସହି କୃଷ୍ଣ ବୋଲି କାନେ ।।୨।।
ମୋ ମଲା ଶରୀର ଜାଳି - ହେବ ଯେ ପାଉଁଶ କାଳି
କୃଷ୍ଣ ଯିବା ବାଟେ ଢ଼ାଳି ଦେବ ସ୍ଥାନେ ସ୍ଥାନେ ।।୩।।
ତୁଣ୍ଡା- ଗାଇଲା ଗୀତ ରାଇ କିଶୋରୀ
କୃଷ୍ଣ ନାମ ଗାଇ ହୋଇଗଲା ବାଇ
କୃଷ୍ଣ ନାମେ ସବୁ ଦେଲା ପାଶୋରି ।



-୨୪-

## ଫେରିଯାଅ ଫେରିଯାଅ

ଫେରିଯାଅ ଫେରିଯାଅ ମୋର ପ୍ରିୟ ସଜନୀ,
ଗୋପେ ନ ଯାଇ ଯାପିବି ଏଥି ଦିବା ରଜନୀ ।।୦।।
ଜୀବନ ମୋ ଜାଗିଥିଲା ଯାହାର ନାମେ,
ନାହିଁ ନାହିଁ ଆଉ ତୁମରି ଗୋପ ଗ୍ରାମେ,
କହ କାହାଲାଗି ଫେରିବି ଗୋ ପ୍ରିୟ ସଜନୀ ।।୧।।
ଜୀବନର କଳପନା ଯା'ଥିଲା ମୋର,
ଅକ୍ରୂର ରଥର ସାଥେ ହେଲା ବାହାର,
ସଖି ସିଏ ବିନା ପ୍ରାଣ ମୁହିଁ ପିଣ୍ଡ ଭାଗିନୀ ।।୨।।
ବାରଣ କରନା ମୋତେ ମୋହରି ରାଣ,
ତେଜିବି ତେଜିବି ଏହି ହୀନ ପରାଣ,
ତୁମେ କାହିଁ ପାଇଁ ହେବ ମୋର ଦୁଃଖ ଭାଗିନୀ ।।୩।।

ଢ଼ୁଢ଼ା- ଫେରିଯାଅ ଫେରିଯାଅ ପ୍ରିୟ ସଜନୀ,
କାହାଲାଗି ଫେରିବି ଗୋ ପ୍ରାଣ ସଙ୍ଗିନି,
ପିଏ ପିନା ପ୍ରାଣ ମୁହିଁ ପିଣ୍ଡ ଭାଗିନୀ,
କାହିଁ ପାଇଁ ହେବ ମୋର ଦୁଃଖଭାଗିନୀ ।

□ □ □

-୨୫-

## ମାନ ମାନ ମାନିନୀ

ମାନ ମାନ ମାନିନୀ ମନା ଥରେ,
ନାଥ ଥାଇଁ ନୁହ ଆଉ ଅନାଥରେ ।।୦।।
ପ୍ରାଣ ସଙ୍ଗିନୀ ତୁ ଦେଲେ ପ୍ରାଣ
ପ୍ରାଣ ନାଥ ହେବେ ହତ ପ୍ରାଣ
ପ୍ରାଣ ସଙ୍ଗିନୀ ତୁ ଶ୍ୟାମ ବିନୋଦିନୀ
ଖ୍ୟାତି ବୃନ୍ଦାଅନା ଜଗତରେ ।।୧।।
ଜରକ ରଦନା ତୋର କର
ଧରୁଛୁଁ ସବୁ ଗୋପିନୀ ଜର
ଜରମରେ ଥିଲେ ଗୋପ ଜଙ୍ଗାକର
ଫେରି ଆସିବେ ଗୋ ଏ ପଥରେ ।।୨।।
ଢ଼ୁଢ଼ା- ସଖି ଥରେ ହେଲେ ମାନଗୋ ମନା,
କର ଧରୁଛୁଁ ଗୋ ସଖୀ, ଆଉ ତୁ ନୁହ ବିମନା ।

□ □ □

-୨୬-

## ପ୍ରାଣ ସହିଗୋ

ପ୍ରାଣ ସହିଗୋ ଅଭାଗିନୀ ମୁହିଁ,
ପ୍ରାଣଯିବ ମୋର ପରିତ୍ରାଣ ଆଉ ନାହିଁ ।।୦।।
ଶାଶୁ ନଣନ୍ଦର କଟୁବାଣୀ,
ସବୁ ସହୁଥିଲି ଜାଣି ଜାଣି,

ବଂଧୁ ମଧୁ ବଂଶୀ ସ୍ୱନ ଶୁଣି,
ସେହି ମଧୁର ମୁରଲୀ ଶୁଣିବି ମୁଁ କାହିଁ ॥୧॥
ଯାକୁ ଦେଖିନ ପାରିଲେ କ୍ଷଣେ,
ମୋହଠାରୁ କେ ନିର୍ଲ୍ଲଜୀ ଅଛି କିଏ କାହିଁ ॥୨॥
ଦୁହା- ପ୍ରାଣ ସହି ଗୋ ଛାଡ଼ ଛାଡ଼ ଆଶା ମୋହର
ଜାଣି ଗୋପ ନଗରରୁ ହୋଇ ସାରିଛି ବାହାର



-୨୭-

## ବିରହିଣୀ ରାଧାରାଣୀ

ବିରହିଣୀ ରାଧାରାଣୀ ଘେନ ବିନତି ଆମର,
ତୋହପାଇଁ ଚାନ୍ଦମୁହାଁ ମୁକୁନ୍ଦ ଶ୍ୟାମ ଅନ୍ତର ॥୦॥
ତୁ ହୋଇଛୁ ସନ୍ନ୍ୟାସିନୀ,
ଜାଣିଲେ ଏହା ବେଣୁପାଣି,
ଜୀବ ଜଳି ବନମାଳୀ ଅମୁହାଁ ମନ ମନ୍ଦିର ॥୧॥
ଏ ବିରହ ହୁତାଶନ,
ଜାଳେ କି ଖାଲି ତୋ ଜୀବନ,
ଦେଖ ଚିରି ଏ ଆମରି ହୃଦେ ତା ରୂପ ସୁନ୍ଦର ॥୨॥
ଦୁହା- ଚନ୍ଦନର ଚିତା ଲିଭାଅ ସଜନୀ,
ସନ୍ନ୍ୟାସିନୀ ବେଶ ଦୂରକର,
ରୁଦ୍ରାକ୍ଷର ମାଳା ଫିଙ୍ଗିଦିଅ ଦୂରେ,
କଷାୟ ବସନ ପରିହର ।



-୨୮-

## ଧରୁଛି ଚରଣ

ଧରୁଛି ଚରଣ
କରନା ମତେ ଗୋ ବାରଣ,
ପ୍ରାଣନାଥ ନାହିଁ କାହାପାଇଁ ରଖିବି ପରାଣ ॥୦॥
ଜୀବନ ତିମିର ଘୋର - ନାହିଁ ସାହା ସାଥୀ ମୋର
ଯେ ଥିଲା ସେ ହେଲା ଦୂର କେ ଦେବ ମୋତେ ଶରଣ ॥୧॥
ତା ମଧୁ ମୂରତି ସଖୀ - ମାନସ ମନ୍ଦିରେ ରଖି,
ପ୍ରାଣ ନୈବେଦ୍ୟ ସମର୍ପି ପୂଜି ମାଗିବି ମରଣ ॥୨॥
ତୁହା- ବାରଣ ଗମନା ସଖି ବାରଣ କରନା ଆଉ,
ଲୋଡ଼ାନାହିଁ ସଖି ପୋଡ଼ା ପରାଣଟି ଯାଉ,
ଅଭାଗିନୀ ରାଧା ଶ୍ୟାମ ପ୍ରେମେ ମଲା କଥା ରହୁ ।

□ □ □

-୨୯-

## ଯଦୁପତି ମଧୁପୁର

ଯଦୁପତି ମଧୁପୁର ଯିବ ଯଦି ଯାଅହେ
ଅକାରଣ ଆମ ଆଖି ଲୁହ,
ସନ୍ନ୍ୟାସିନୀ ହୋଇଲାଣି, ଭାଗ୍ୟବତୀ ରାଧାରାଣୀ
ଆମେ ସବୁ ଅଭାଗିନୀ
ଘେରି ଘାରେ ପରିବାର ମୋହ ଆଉ ସମାଜର ଭୟ ହେ ॥୦॥
ତୁମ ପୀରତିରେ ପାଗଳୀ ହେବାକୁ
ହୃଦେ କାହିଁ ସେତିକି ଭକତି,
ତୁମ ବିରହରେ ଦେହମୋହ ଛାଡ଼ି
ପାରିବାର କାହିଁ ବା ଶକତି,
ତୁମରିକି ଆମଠାରେ ନାହିଁ ଅନୁଗ୍ରହହେ ॥୧॥
କେବେ ମାଗିନାହୁଁ କିଛି ପ୍ରାଣ ପାଇଁ
ଆଜି ମାଗୁଁ ଦିଅ ଟିକେ ବିଷ,

କା ଲାଗି ଜୀବନ ରଖିବୁଁ ମୋହନ,
ଗୋପୁଁ ଗଲେ ଜୀବନର ଲଣ,
ତୁମ ସଙ୍ଗେ ଯିବ ଯାଉ ପଡ଼ି ରହୁ ଦେହ ହେ ॥୨॥
ଭୁଢା- ଗୋପୀନାଥ ହେ !
ତୁମ ଯିବା ଆଗୁଁ ମରିବୁଁ,
କଳାକାହ୍ନୁ ଗଲା ବୋଲି କେହି ନ ଜାଣିବୁ ପ୍ରଭୁ ।



-୩୦-

## ଗୋପ ଯୁବତୀ

ଗୋପ ଯୁବତୀ ଗୋ କୋପ ଏତିକି,
ଦିଶେନା ସୁନ୍ଦର ଦିଶେନା ଗୋ ଦିଶେନା ସୁନ୍ଦର ଦିଶେନା,
ତୁମ ଆଖି ନୀରେ ମୋର ରଜତର ଗାର,
ଭାବ କି ସୁନ୍ଦରୀ ମିଶେନା ଗୋ ॥୦॥
ତୁମ ପ୍ରେମଦାନେ ମୁହିଁ ବନ୍ଧା ଚାନ୍ଦମୁହିଁ
ପାରିବି କି ସହଜେ ମୁକୁଳି,
ଜନମ ଜନମ ଧରି ଅଛି ଯେ ସଖି ତୁମରି
ଅଛିଣ୍ଡାଏ ପୀରତି ଶିକୁଳୀ,
ତୁମରି କି ନାମ ମୁହିଁ ନିତି ଦିନ ଘୋଷେନା ॥୧॥
ଭୁଢା- ଆଉ କାନ୍ଦନା କାନ୍ଦନା ଗୋରୀ ଆସିବି ଫେରି
ଗୋପେ ତୁମରି,
ତୋ ଲୁହ ଝରିଲେ ମୋ ଲହୁ ଝରିଯାଏ,
ସହି ପାରିବିକି ସହି କହ ସତ କରି ।



-୩୧-

## ଯାଉ ମଥୁରାର ପଥେ

ଯାଉ ମଥୁରାର ପଥେ ରଥଯାଉ
ଗୋପୀପ୍ରାଣ ତାର ସାଥେ ଯାଉ ॥୦॥

ଆସିଥିଲା ଗୋପୀପ୍ରାଣ ନେବାକୁ ସ୍ୟନ୍ଦନ,
ବଳରାମ ଯିବେ, ଯିବେ ଯଶୋଦା ନନ୍ଦନ,
ଗୋପୁଁ ଗୋପାଳରେ ଯିବେ ହୋଇ ମେଳ,
ଗୋପିନୀ ଜୀବନ ଯାଉ ଦେହୁଁ ॥୧॥
ରାଧାର ଶରଧା ଆଉ ଗୋପିନୀ ବିଶ୍ୱାସ,
ରଥ ଧୂଳି ସଙ୍ଗେ ମିଶି ମିଶିଲା ଆକାଶ,
ଗୋପ ଗଗନୁ ରେ ଯାଉ ଅଛି ଭାନୁ,
ତାହା ସଙ୍ଗେ ଗୋପ ସାରା ଯାଉ ॥୨॥
ତୁହା- ଯାଉଛୋ ସଜନୀ ଯାଉ ଯାଉ ଏହି ଗୋପ ସାରା,
ରଖି ନ ପାରିବି ସଖି ନିରମାଖି ଏ
ଗୋପୀ ଆଖି ଲୁହଧାରା,
ଏହି ଗୋପ ନଗରୀ - ଯେ ହରି ଥିଲେ ଧରି,
ନିଠୁର ହିଆଧରି ଗଲେ ବାହାରି ସେ ମଥୁରା ।



-୩୨-

## ମଥୁରା ପଥେ ଗଲା ରଥ

ମଥୁରା ପଥେ ଗଲା ରଥ
ଗୋକୁଳ ରହିଲା ଦୂରେ ଦୂରେ,
ରାଇକି ଦେଇ ସନ୍ନ୍ୟାସ - ଗୋପୀ କୂଳେ ଭାବାବେଶ,
ନିରାଶାର ଜଳା ଛାଇ ଗଲା ଦ୍ୱାରେ ଦ୍ୱାରେ ॥୦॥
ଆଉ କି ବାଜିବ ବେଣୁ - କହି ଯାଅ ତୁମେ କାହ୍ନୁ
କାହାପଛେ ବୁଲିବେ ଗୋପ ଗୋପୀ ଧେନୁ ଯମୁନାର କୂଳେ କୂଳେ ॥୧॥
କୃଷ୍ଣ ଗଲା ବାଟଧୂଳି - ଗୋପୀ ଅଙ୍ଗେହେଲେ ବୋଳି
ସନ୍ୟାସିନୀ ରାଧା ହୋଇଲା ପାଗଳୀ କୃଷ୍ଣ ନାମେ ଧୀରେ ଧୀରେ ॥୨॥
ରାଧାର ସନ୍ନ୍ୟାସ ଗୀତ - ପରକାଶେ ବ୍ରହ୍ମ ଗୀତ
ହେମଚନ୍ଦ୍ର ଅପଣ୍ଡିତ ଅକିଞ୍ଚିତ ବାତ୍ସଳତା କରେ ଥରେ ॥୩॥

ତୁହ୍ମା- ଏ ଗୋପ ଦେହ ଛାଡ଼ି ଯିବରେ ଜୀବ ତ୍ୱାଇ,
ଜୀବ ଦିନେ ଜୀବନ ବନମାଳୀ ଯିବ
ତୋ କଲା ଭଇକାମ - ଯିବ ସଙ୍ଗେ ହୋଇ ରାମ,
ମନରେ ଏ ଚୋର ଧନର,
ଆଉ ସବୁ ଯିବ ରହି ଗୋପୀ ହୋଇ ଖାଲି ଭାଳି ଭାଳି।

□ □ □

(ସମାପ୍ତ)

# ଶରତ୍ ରାସ

-୧-

## ଶ୍ୟାମ ସୁନ୍ଦର

ଶ୍ୟାମ ସୁନ୍ଦର ପରଣାମ ପୟରେ
ରାସ ବିହାରୀ ହରି,
ରାଧା ହୃଦ ପଦକ - ଗୋପୀ ମତି ମୋଦକ,
ଯଶୋଦା ଆନନ୍ଦ ବରଧନକାରୀ ॥୦॥
କେକୀ ଚନ୍ଦ୍ରିକା ଶିରେ ଶୋଭିତ,
କୁଙ୍କୁମ ବିନ୍ଦୁ ଭାଳେ ଚିତ୍ରିତ,
ବଂଶୀକର ହରି ପିତାମ୍ବରଧାରୀ,
ଗୋପୀ ହୃଦ ବରଜ ବିହାରୀ ॥୧॥
ଡୁହା- ରାସ ରସିକ ଶେଖର ଆସ ଆସହେ ଆସହେ,
ଆସ ହୃଦ ବୃନ୍ଦାବନେ - ଆସ ଚପଳ ଚରଣେ,
ଆସ ନ କର ନିରାଶ ଥରେ ଆସ ।
ଆସ ଜୀବନର ଧବ - ଆସ ମରଣ ବାନ୍ଧବ,
ଆସ ମୁରଲୀଧର ସୁନ୍ଦର ଆସ ।

□ □ □

-୨-

## କଳି କାଳେ

କଳି କାଳେ ଭବୁଁ ପାପ ପରାଭବୁଁ
ତରିବାକୁ ମତି ଅଛି ଯାର ରେ
ସଂକୀର୍ତ୍ତନ ତରି ଧର,
ନ ପାରୁଁ ତପ ଆଚରି - ନ ଜାଣୁ ତ ଧ୍ୟାନ କରି,
ଅଛ ତ ସହଜେ ଯଜ୍ଞ କଥା ନ ବିଚାରରେ ॥୦॥

ସଂକେତେ ବା ପରିହାସେ - ହରିନାମ ମୁଖେ ଭାଷେ
ଗୀତ ଛନ୍ଦେ ଅବା ଯେହୁ ଗାଏ,
ହେଳାରେ ବି ଧରି ନାମ ଭେଳା ପାଏ ସେହିଜନ
ହରିନାମ ମିଳେ ଯାକୁ ସେହୁ ତରିଯାଏ ।
କୀର୍ତ୍ତନେ ନ ପାର ଯଦି ଶରବଣ କରରେ ॥୧॥
ଲୀଳାରୂପେ ଅବତରି - ଦ୍ୱାପରେ ରାସ ବିହାରୀ
ରାସଲୀଳା ରସର ସାଗର
ସେ ମଧୁ ରସ ସାଗରେ - ଆସ ଅବଗାହ ଥରେ
ତରିଯିବ ଭବ ଅକୂପାର
ଶୁଣି ଗାଇମନ ତୋଷ କରରେ ॥୨॥
ଢୁଢା- ହରିନାମେ ଗୀତ ଗାଅରେ ମନ ଗାଅ
ପ୍ରଭୁପାଦେ ଚିତ୍ତ ଲଗାଅ ଲଗାଅ
ଜପ ତପ ଧ୍ୟାନ କିଛି ଲାଗେ ନାହିଁ
ଗାଅରେ ବାରେ ଗାଅ ପରାଣ ଲଗାଇ
ଲାଗେ ନାହିଁ ଧନ - ଲାଗେନା ସାଧନ
ଚିତ୍ତ ଗୃହେ ତୋର ପୀରତି ଜଗାଅ ।



-୩-

## ରାସ ବିହାରୀଙ୍କ ଦରଶନ ପାଇଁ

ରାସ ବିହାରୀଙ୍କ ଦରଶନ ପାଇଁ
ଆସେ ଧାଇଁ ଆସେ ଧାଇଁ ॥୦॥
ବରଷା ବିୟୋଗେ ଶରତ ଆସିଲା
ବୃନ୍ଦା ବିପିନ ଦ୍ୱାରେ,
ଚନ୍ଦ୍ର ବଦନେ ବନ୍ଦନା ଗାଏ
ପାଦ ଧୁଏ ଜ୍ୟୋତ୍ସ୍ନା ଜଳେ,

ଆସ ପ୍ରଭୁ ଥରେ ଏ ରାସ ମଣ୍ଡଳେ
ନାହିଁ କର ନାହିଁ ନାହିଁ ।।୧।।
ପାଶରେ ତାଙ୍କରି ରାସ ହେବ ବୋଲି
ପାଦ ତୋ ଗଲେ ଶିହରି,
ନିହାରୀକା ଛଳେ କୁସୁମେ ପତରେ
ଢ଼ଳେ ପ୍ରେମ ଅଶ୍ରୁବାରି,
ଗନ୍ଧବହ ଆସି ଗନ୍ଧ ପରଶେ
ଡ଼ାକେ ଆସ ରାସପାଇଁ ।।୨।।
ନିୟତିର ଏହି ଆବାହନ ଶୁଣି
ରହି ନ ପାରିଲେ ହରି,
ବୃନ୍ଦା କାନନେ ଉପଗତ ହେଲେ
ମୋହନ ମୁରଲୀ ଧରି,
ମୁରଲୀରେ ସ୍ୱର ଯୋଡ଼ିଲେ ଈଶ୍ୱର
ଗଗନ ପବନ ମୋହି ।।୩।।
ଢ଼ୁଢା- ସେହି ମୁରଲୀର ସୁରେ ସୁରେ
ପୁଲକ ଆସିଲା ଗୋପୀ ହୃଦୟରେ
ଛନକା ପଶିଲା ପୁରେ ପୁରେ



## -୪-

## ସେଇ ମୁରଲୀ ମଧୁର ସୁରେ

(ସୁରେ) ସେଇ ମୁରଲୀ ମଧୁର ସୁରେ
ତରଳି ଯାଏ ପଥର - ନିଥର ଗଛେ ପତର
ଚପଳା ଯମୁନା ବହେ ଧୀରେ ।।୦।।
ସେ ସୁରେ ନୀରବ ରହେ ବନେ ମୟୁର ମୟୁରୀ,
କୃଷ୍ଣସାର ବଧୂ ଘାସ ମୁଖେ ରହେ କାନ ଡ଼େରି,

ସଂକେତେ ବା ପରିହାସେ - ହରିନାମ ମୁଖେ ଭାଷେ
ଗୀତ ଛନ୍ଦେ ଅବା ଯେହୁ ଗାଏ,
ହେଳାରେ ବି ଧରି ନାମ ଭେଳା ପାଏ ସେହି ଜନ
ହରିନାମ ମିଳେ ଯାକୁ ସେହୁ ତରିଯାଏ ।
କୀର୍ତ୍ତନେ ନ ପାର ଯଦି ଶରବଣ କରରେ ॥୧॥
ଲୀଳାରୂପେ ଅବତରି - ଦ୍ୱାପରେ ରାସ ବିହାରୀ
ରାସଲୀଳା ରସର ସାଗର
ସେ ମଧୁ ରସ ସାଗରେ - ଆସ ଅବଗାହ ଥରେ
ତରିଯିବ ଭବ ଅକୂପାର
ଶୁଣି ଗାଇମନ ତୋଷ କରରେ ॥୨॥
ଡୁହା- ହରିନାମେ ଗୀତ ଗାଅରେ ମନ ଗାଅ
ପ୍ରଭୁପାଦେ ଚିତ୍ତ ଲଗାଅ ଲଗାଅ
ଜପ ତପ ଧ୍ୟାନ କିଛି ଲାଗେ ନାହିଁ
ଗାଅରେ ବାରେ ଗାଅ ପରାଣ ଲଗାଇ
ଲାଗେ ନାହିଁ ଧନ - ଲାଗେନା ସାଧନ
ଚିତ୍ତ ଗୃହେ ତୋର ପୀରତି ଜଗାଅ ।

□ □ □

-୩-

## ରାସ ବିହାରୀଙ୍କ ଦରଶନ ପାଇଁ

ରାସ ବିହାରୀଙ୍କ ଦରଶନ ପାଇଁ
ଆସେ ଧାଇଁ ଆସେ ଧାଇଁ ॥୦॥
ବରଷା ବିୟୋଗେ ଶରତ ଆସିଲା
ବୃନ୍ଦା ବିପିନ ଦ୍ୱାରେ,
ଚନ୍ଦ୍ର ବଦନେ ବନ୍ଦନା ଗାଏ
ପାଦ ଧୁଏ ଜ୍ୟୋସ୍ନା ଜଳେ,

ଆସ ପ୍ରଭୁ ଥରେ ଏ ରାସ ମଣ୍ଡଳେ
ନାହିଁ କର ନାହିଁ ନାହିଁ ॥୧॥
ପାଣରେ ତାଙ୍କରି ରାସ ହେବ ବୋଲି
ପାଦ ତୋ ଗଲେ ଶିହରି,
ନିହାରୀକା ଛଳେ କୁସୁମେ ପତରେ
ଢ଼ଳେ ପ୍ରେମ ଅଶ୍ରୁବାରି,
ଗନ୍ଧବହ ଆସି ଗନ୍ଧ ପରଶେ
ଡ଼ାକେ ଆସ ରାସପାଇଁ ॥୨॥
ନିୟତିର ଏହି ଆବାହନ ଶୁଣି
ରହି ନ ପାରିଲେ ହରି,
ବୃନ୍ଦା କାନନେ ଉପଗତ ହେଲେ
ମୋହନ ମୁରଲୀ ଧରି,
ମୁରଲୀରେ ସ୍ୱର ଯୋଡ଼ିଲେ ଈଶ୍ୱର
ଗଗନ ପବନ ମୋହି ॥୩॥
ତୁହା- ସେହି ମୁରଲୀର ସୁରେ ସୁରେ
ପୁଲକ ଆସିଲା ଗୋପୀ ହୃଦୁଦରେ
ଛନକା ପଶିଲା ପୁରେ ପୁରେ



-୪-

## ସେଇ ମୁରଲୀ ମଧୁର ସୁରେ

(ସୁରେ) ସେଇ ମୁରଲୀ ମଧୁର ସୁରେ
ତରଳି ଯାଏ ପଥର - ନିଥର ଗଛେ ପତର
ଚପଳା ଯମୁନା ବହେ ଧୀରେ ॥୦॥
ସେ ସୁରେ ନୀରବ ରହେ ବନେ ମୟୁର ମୟୁରୀ,
କୃଷ୍ଣସାର ବଧୂ ଘାସ ମୁଖେ ରହେ କାନ ଡ଼େରି,

ମୃଗ ଶିଶୁ ସ୍ତନ ପାନ - ତେଜି ଶୁଣେ ସେଇ ସ୍ୱନ,
ସେ ସୁରେ ପୁଲକ ନଇ ବହେ ଗୋପପୁରେ ॥୧॥
ଶରତର ଚନ୍ଦ୍ରନିଶୀ ସେ ସୁରେ ଗଲା ତରଳି,
ମାୟାଧର ମାୟାକରି ଅନ୍ଧକାର ଦେଲେ ବୋଳି,
ସେଇ ଘନ ଅନ୍ଧକାରେ - ମୁରଲୀ ପଞ୍ଚମ ସ୍ୱରେ,
ଡ଼ାକେ ଗୋପୀନାଥ ଧରି ଆସ ବନଘୋରେ ॥୨॥
ତୁହା- ମୁରଲୀ ବାଜେ ଗୋ ସଜନୀ ଆଜ ଏ ରଜନୀ
ଶୁଣ ଗୋ ଶୁଣ
ନୀରବ ଏ ନିଶୀରେ ବଂଶୀ
ଡ଼ାକେ ଗୋପୀନାମ ଜଣକୁ ଜଣ ।



-୫-

## ବାଜେ ସଜନୀ ଏ ସଞ୍ଜେ

ବାଜେ ସଜନୀ ଏ ସଞ୍ଜେ ମୋହନ ମଧୁର ବେଣୁ
ବାଜେ ସଜନୀ,
ବେଣୁ ସ୍ୱନ ଶୁଣି ମନ ଚମକେ ପୁଲକେ ତନୁ ॥୦॥
ଅନ୍ଧକାର ନିଶୀଥିନୀ - କେମନ୍ତେ ଯିବି ସଜନୀ,
ଆଜନି କି ରଜନି କି କାଳ କଲା କଳାକାହ୍ନୁ ॥୧॥
ନଭେ ଚନ୍ଦ୍ର ନାହିଁ ଆଜ କୃଷ୍ଣଚନ୍ଦ୍ର ଜାଣି ସଜ,
ହେମଚନ୍ଦ୍ର ମାଗେ ଲାଜବତୀ ରାଧା ପଦରେଣୁ ॥୨॥
ତୁହା- ଦୂରକର ଦୂରକର ଏହି ମୋହ ଅନ୍ଧକାର
ମୁରାରୀ ନିରାକାର ନିରତେ ମୁଁ ତୁମରି
ଯାର ଇଚ୍ଛାରେ ଜଗତ - ହୋଇଥାଏ ଆତଯାତ
(ଜଗନ୍ନାଥ) ଛାରଜୀବ ରହିବି କି ଶୁଣି ଡ଼ାକ ତୁମରି ।



-୬-

## ମୁରଲୀ ନିନାଦେ

ମୁରଲୀ ନିନାଦେ ତରଳି ଗଲେ ଗୋପୀ ସମାଜ,
ମନୁ ଦୂରକଲେ ଆଶଙ୍କା ଆଉ ସମାଜ ଲାଜ ॥୦॥
କେଉଁ ଗୋପୀ ଧରି କାଖରେ ସୁତ ଶୁଆଉଥିଲା,
ବେଣୁ ସ୍ୱନ ଶୁଣି ଧାଇଁଲା ଖଟେ ରହିଲା ପିଲା ॥୧॥
ଆଉ କେଉଁ ଗୋପୀ ଧରିଣ କରେ ପତି ଚରଣ,
ସେବୁଥିଲା ତାର କାନରେ ପଡ଼େ ମୁରଲୀ ସ୍ୱନ ॥୨॥
ପତି ଛାଡ଼ି ଅତି ବେଗରେ ଧାଏଁ ସ୍ୱନ ସୁମରି,
ଆଉ କେଉଁ ଗୋପୀ ଧାଉଁଛି ଛାଡ଼ି ଗାଇ ବାଛୁରୀ ॥୩॥
ଆଉ କେଉଁ ଗୋପୀ ଚୁଲୀରେ ହାଣ୍ଡି ବସାଇଥିଲା,
ମୁରଲୀର ଅନୁଗମନେ ଚୁଲୀ ଛାଡ଼ି ଧାଇଁଲା ॥୪॥
ଆଉ ଏକ ଗୋପୀ ସେ ସୁରେ ହେଉ ଘରୁଁ ବାହାର,
ବାଟରୁ ଓଗାଳି ଫେରାଇ ଆଣେ ପତି ତାହାର ॥୫॥
ବନ୍ଦୀ ହୋଇଘରେ ରହିଣ କାନ୍ଦି କହଇ ଗୋପୀ,
ତ୍ରାଣ କର ପ୍ରଭୁ ପ୍ରାଣ ମୋ ଯାଉ ତୋ ନାମ ଜପି ॥୬॥
ତୁହା- ଯିବାକୁ ଦିଅ ଥରେ ମୂରଲୀ ବାଜେ ଯେଉଠାରେ
ରହିବାକୁ ଦେବନାହିଁ ତୁମରି ଘରେ
ରହିବିନି ପଛେ ଏହି ଗୋପ ନଗରେ
ଯାଇଦିଅ ସେହି ପଥରେ।

□ □ □

-୭-

## ତୁମେ ଜାଣି ଜାଣି

ତୁମେ ଜାଣି ଜାଣି, ବିଭୁ ବେଣୁ ପାଣି,
କିପାଁ ଡ଼ାକିଲ ମୋ ନାମେ ଏ ରାତି,

ଏହି ଅଭାଗିନୀର ଛାତି କରଡି,
ମୋର ତପ କାହିଁ - ଆହେ ଗୋପ ସାଇଁ
ପିଇବାକୁ ତୋ ପୀୟୂଷ ପୀରତି ॥୦॥
ବନ୍ଦିବି ବୋଲି ତବ ଚରଣ ପଙ୍କଜ
ଅମାନିଆଁ ମନ ମୋର ଧାଇଁଲା,
ବନ୍ଦିନୀ ହେଲି ଘରେ କାନ୍ଦି ଦୁଃଖ ନ ସରେ
ତୁମ ପାଶେ ଯିବାର ମୋ ନୋହିଲା,
ପାଣି ଖାଲି ମୋର ଆଖି ଲୁହ ଧାର
ଶୁଣେନି କେ ଆତୁର ମୋ ମିନତି ॥୧॥
ବାଧେନା ଏ ବନ୍ଧନ ମୁରଲୀର ଅପମାନ
ଦେହ ମନ ମୋର ଜଳି ଯାଏ
ତୁମେ ତ ରହିଲ ଦୂରେ ଗୁହାରି କରିବି କାରେ
ପରାଣ ମୋ ଛାଡ଼ି ଛାଡ଼ି ଯାଏ
ମରଣ ଦୁଆରେ ଡ଼ାକେ ଆସ ବାରେ
ଦେଖିବି ମୁଁ ମଧୁର ତୋ ମୁରତି ॥୨॥
ତୁହା- ଆସ ଆସ ପ୍ରଭୁ ବାରେ - ଡ଼ାକେ ମରଣ ଦୁଆରେ
ମୁଁ ଯିନା ହେଲି ବନ୍ଦିନୀ
ତୁମେ ଅଛ ତ ବାହାରେ

□ □ □

-୮-

## ପ୍ରେମ ଦୁଃଖ ଦୁଃଖିନୀର

ପ୍ରେମ ଦୁଃଖ ଦୁଃଖିନୀର ବିରହିଣୀ ଗୋପିନୀର
ଆକୁଳ ନୟନେ ନୀର ଯେତେ ବହିଲା,
ଭାବଗ୍ରାହୀ ଭାବି ନୀର ଅବଳା ସେ ସଜନୀର,
ଦୁଃଖ ମୁରଲୀ ପାଣିର ହୃଦ ଦହିଲା,
ଗୋପୀ ଭାବେ ଆସେ ଆବେଶ,
ଗୋପୀନାଥ ଗୋପୀ ମାନସରେ ପ୍ରବେଶ ॥୧॥

ପାଇ ସେ ମଧୁ ମୂରତି ନିକଟା ଜାଳି ଆରତି
ଦେଲା ଗୋପୀ କୃଷ୍ଣ ରତି ବଢ଼ିଲା ମନେ,
ନୟନେ ନୀର ଭରତି କରି ସେ ରତି ବରତି
ଗୁଣି କେଶବ କୀରତି ଡ଼ାକେ ଶମନେ,
ଆସନାଥ ଆସ ଏଥର
ଆଲିଙ୍ଗନେ ଚ଼ାହିଁ ବସେ ଛାଡି ପଥର।
ଚ଼ୂଡ଼ା- ଗୋପାଙ୍ଗନା ଗୋପୀନାଥ ସ୍ୱରୂପ ଜପିଲା
ମରଣ ଶିରେ ଚ଼ରଣ ନିରୋପି ଥାପିଲା



-୯-

## ମନ ମନ୍ଦିର

ମନ ମନ୍ଦିର ଗୋପୀ ସାଜିଲାରେ,
ବ୍ରଜ ସୁନ୍ଦର ରୂପ ପୂଜିଲାରେ ।।୦।।
ନୀରଜାକ୍ଷୀରୁ ନୀର - ଢ଼ାଳି ଧୁଏ ପୟର
ଧୋଇ ସେ ପଦେ ହୃଦ ମଜ୍ଜିଲାରେ ।।୧।।
ଆରତୀ ଦେଲା ଜାଳି - ଦିବ୍ୟ ଦେହ ଦିପାଳୀ
ନିରାଜନାରେ ବାଳା ମଜ୍ଜିଲାରେ ।।୨।।
ପ୍ରକୃତି ପୁଷ୍ପହାର ଦେହୁକଲା ବାହାର
ସେ ହାର ପ୍ରଭୁ ଗଳେ ରାଜିଲାରେ ।।୩।।
ନୈବେଦ୍ୟ କଲା ପ୍ରାଣ, ପ୍ରଭୁପାଦେ ଅର୍ପଣ
କରି ସେ ପାଦେ ନିଜେ ହଜିଲାରେ ।।୪।।
ଚ଼ୂଡ଼ା- ଗୋପୀନାଥ ଅଙ୍ଗେ
ଗୋପ ଅଙ୍ଗନା ମିଶିଲାରେ
ପରମାତ୍ମା ପାରାବାରେ ନିରାକାର ନିରାଧାରେ
ଜୀବ ଆତ୍ମା ପଶିଲାରେ



-୧୦-

## ପ୍ରଭୁ ପ୍ରେମ ପାରାବାରେ

ପ୍ରଭୁ ପ୍ରେମ ପାରାବାରେ ଉଠିଲା ଲହରି ବାରେ
ଉଠିଲା ଲହରିରେ ଉଠିଲା ଲହରି,
ବେଳା ଭୂମି ଭକତିର ଆରପାରି ପୀରତିର
ସେ ପାରିରୁ ଏ ପାରିକି ଗୋପୀ ଗଲା ପହଁରି ।।୦।।
ପ୍ରଭୁ ରୂପ ନାବକରି ବସିଥିଲା ଗୋପୀ,
ହାତରେ ଆହୁଲା ଧରେ ପ୍ରଭୁ ନାମ ଜପି,
ନାମରେ ଗିଆନ ପୁଣି ରୂପରେ ଧିଆନ
ପ୍ରଭୁ ପାଦ କୂଳଖାଲି ଥିଲା ଆଶ୍ରା କରି ।।୧।।
ତୁହା- ସେଇ ପ୍ରେମ ପାରାବାରେ ମନ ସାର ସ୍ନାହାନ
ଏହି ଭବତାପ ନ ପାରିବ କରି ଦହନ

□ □ □

-୧୧-

## ଚନ୍ଦ୍ରଖୋଜେ ବୃନ୍ଦାବନ

ଚନ୍ଦ୍ରଖୋଜେ ବୃନ୍ଦାବନଚନ୍ଦ୍ରେ ଆଜି
ପୀରତି ଆକର ଗୋପ କଳାକର
କରଲାଗି କରମାଜି ।।୦।।
ମୟୂର ଚନ୍ଦ୍ରିକା ଚୂଳ ଥିବେ ବା କଦମ୍ବ ମୂଳ
ଚନ୍ଦ୍ରିକା ପାତେ ବସେ ଖୋଜି,
ବୃନ୍ତ କୋଳର ମଲ୍ଲୀ ନାଚି ନାଚି ଡେକେ ବଲ୍ଲୀ
କୃଷ୍ଣ ଚରଣେ ଯିବ ହଜି ।।୧।।
ଚକୋର ଚାହିଁଛି ଦୂରେ ଗୋପିନୀ ସମାଜ ଝୁରେ
ବଂଶୀର ସ୍ୱନେ ଯାଇ ମଜ୍ଜି

କହିଗଲେ ବଂଶୀଧାରୀ ଖୋଜୁଛନ୍ତି ଗୋପନାରୀ
(କାହିଁ) ମୁରଲୀ ନ ଯାଏ ବାଜି ॥୨॥
ଡୁହା- ବୃନ୍ଦାବନେ ପଡ଼େ ଝୁରିଗୋ
କାହିଁ ଗୋପୀ ମନୋହାରୀ
ଚନ୍ଦ୍ର ଖୋଜୁଛି ଚନ୍ଦ୍ର ବଦନେ
ଚନ୍ଦ୍ରିକା ଚୂଳେ ମୟୁରୀ ଗୋ ।



-୧୨-

## ବୃନ୍ଦାବନେ ଛାଇ ସାଥେ

ବୃନ୍ଦାବନେ ଛାଇ ସାଥେ ଖେଳେ ଜହ୍ନ ଆଲୁଅ
ବଧୂଳୀ ବଧୂର ହସ ଚାପୁଛି କିଶଳୟ ॥୦॥
ସାରା ଆକାଶର ତାରା ଦୃଷ୍ଟିର ବୃଷ୍ଟିଧାରା
ଜୋଛନାରେ ଛାଣି ଛାଣି ଝରେ ରସ ଅମୀୟ ॥୧॥
ଜୀବନ ତଟିନୀ ତିରେ ପରମ ପରମ ସୁରେ
ଗାଏ ଯେ ଶାଶ୍ୱତି ଗୀତି ଶୁଣାଏ ଗନ୍ଧବହ ॥୨॥
ଗୋପୀ ମଧ୍ୟେ ଗୋପୀନାଥ ଧରି ପ୍ରତି ଗୋପୀ ହାତ
ରାସ ରସେ ରହି ରତ କରୁଛି ରସମୟ ॥୩॥
ଡୁହା- ରାସ ଲାଗିଛିରେ ହୃଦ ବୃନ୍ଦାବନେ
ଜୀବନ ଗୋପିନୀ ସାଥେ ପରମ ସେ ଗୋପୀନାଥ
ଖେଳେ ପ୍ରାଣେ ପ୍ରାଣେ ।



-୧୩-

## ନନ୍ଦନ କାନନ

ନନ୍ଦନ କାନନ ନନ୍ଦ ନନ୍ଦନର ଶ୍ରୀ ବୃନ୍ଦାକାନନ ଲୀଳା,
ଦେଖିବା ଆନନ୍ଦ ଅହମିକା ସହ ନିମିଷକେ ମଉଳିଲା, ॥୦॥

ଗୋପୀଯେତେ, ସେତେକୃଷ୍ଣ ଘେନରାସ,
ଅମରା ବରଜି ଅମର ସମାଜ ଦେଖନ୍ତି ରହି ଆକାଶ ॥୧॥
ମହିର ପୁଲକ ମହିରୁହ ପତ୍ରେ ହେଉଛି ପ୍ରତିଫଳିତ,
ଆଗ୍ରହରେ ଗ୍ରହରାଜି ସାଜିଛନ୍ତି ଚନ୍ଦ୍ର ନୟନ ଲଳିତ,
ଗନ୍ଧବହ, ଆନନ୍ଦ ନେଇ ପରଶେ
ସରଗରୁ ସୁଧା ଆଜିଏ ବସୁଧା ଉପରେ କିଏ ବରଷେ ॥୨॥
ଗୋପୀ ଗୋପୀନାଥ ମଧ୍ୟରେ ଆଜି ତ ନାହିଁ କିଛି ପରାଭେଦ,
ନାହିଁ ଦେହଜ୍ଞାନ - କାହିଁଦେହ ସୀନ ସରଜିବ ପରମାଦ,
ପରାପର, ଭାବମୋ ତୁଟୁ ଜୀବନେ,
ଦୀନ, ଦ୍ୱିଜ, ହୀନ ହେମ ମାଗୁଅଛି ଆତୁରେ ପ୍ରଭୁ ଚରଣେ ॥୩॥
ଡୁହା- ମାଗୁଛି ଚରଣେ ପ୍ରଭୁ ମାଗୁଛି ଚରଣେ
ପରାହର ହେ, ପରକେହି ନ ଦିଶୁ ମୋର ନୟନେ
ମାଗୁଛି ମାଗୁଛି
ତୁମ ଶ୍ରୀ ଚରଣ ତଳେ - ମାଗୁଛି ମାଗୁଛି
ଦରଶନ ଦିଅ ପ୍ରଭୁ - ମାଗୁଛି ମାଗୁଛି ।



-୧୪-

## ହସେ ରାକା ରଜନୀ

ହସେ ରାକା ରଜନୀ - ହସୁଛି ଶାରଦ ଶଶୀ,
ରାସ ପୀୟୂଷ ପାନରେ ମତ୍ତ ଗୋପ କାମିନୀ ॥୦॥
ଏକାନ୍ତରେ ଗୋପୀକାନ୍ତ ପାଇ ଗୋପୀ ହେଲେ ଭ୍ରାନ୍ତ
ମାନର ଆବିଳ ଜଳେ ବହେ ମନ ତଟିନୀ ॥୧॥
ଜାଣି କୃଷ୍ଣ ନାରାୟଣ ସେ ଯେ ଭକ୍ତ ପରାୟଣ
ଗୋପୀମାନ ନାଶେ ଶେଷ କଲେ ରାସ ରହଣି ॥୨॥
ଡୁହା- ରାସ ରଙ୍ଗ ହେଲା ଭଙ୍ଗ ରସରାଜ ନାହିଁ

ଗଲେ କାହିଁ କୃଷ୍ଣ କହ୍ନାଇ
ନିଶିଥରେ ଥରେ ଡ଼ାକି ଏକାନ୍ତରେ
କେଉଁ ଆଡ଼େ ଲୁଚିଗଲେ ପଳାଇ
କେ ବୋଇଲ ଆସି ଦେଖ ଗୋ ଆଳୀ
ଦେଖ ଗୋ ଆଳୀ ଦେଖ ଗୋ ଆଳୀ
କୃଷ୍ଣ ନାହିଁ ନାହିଁ ଚନ୍ଦ୍ରାବଳୀ - ଦେଖ ଗୋ ଆଳୀ ଦେଖ ଗୋ ଆଳୀ
କେଡ଼େ କପଟିଆ ସେ ବନମାଳୀ - ଦେଖ ଗୋ ଆଳୀ ଦେଖ ଗୋ ଆଳୀ

□ □ □

-୧୫-

## କୃଷ୍ଣଚନ୍ଦ୍ର ଗଲେ କାହିଁ

କୃଷ୍ଣଚନ୍ଦ୍ର ଗଲେ କାହିଁ, କହ କୃଷ୍ଣସାର ବଧୂ,
ଚପଳ ନୟନେ ଚୁଁ କି - ଅପଳକେ ଅବଲୋକି,
ରହିଥିଲୁ ବା ଅନାଇଁ ॥୦॥
ବୃନ୍ଦା ଅରଣ୍ୟ ଚାରିଣୀ ଆଗୋ ଏଣି ସୁନ୍ଦରୀ,
ମନ ବୃନ୍ଦାବନ ଶୂନ୍ୟ କରିଗଲେ ଶ୍ରୀହରି,
ଶ୍ୟାମ ରମ୍ୟ ଦ୍ରୁମପତ୍ରେ ଲୁଚାଇଲେ କିସେ ଗାତ୍ରେ,
କହ ସତେ ଫିଟାଇ ॥୧॥
ଯାଅ ସହି ଦିଅ କହି ଆମ ପାଇଁ ଏଥର
ସରଳ ତରଳ ମନ କଲେ କିପାଁ ପଥର
ଏ ବୃନ୍ଦା କାନନ ସଖି ଆଉ ନ ପାରିବ ରଖି
ଗୋପୀ ଜନେ ଭୁଲାଇ
ଦ୍ବୁହା- ଆଗୋ ହରିଣୀ ବନ ହରିଣୀ,
କହିଦେବ ଯାଇ ହରିଙ୍କି,
ହରି ବିନା ସତେ ବୃନ୍ଦାବନ ବାସ,
ହେବ ବନବାସ ସରିଙ୍କି।

□ □ □

-୧୬-

## ଆଉ କାହିଁକି ଏ ରାସ

ଆଉ କାହିଁକି ଏ ରାସ ?
ରାସେ ନାହାନ୍ତି ରାସ ବିହାରୀ ବନମାଳୀ,
ଆଉ ନାହାନ୍ତି ବି ଚନ୍ଦ୍ରାନନୀ ଚନ୍ଦ୍ରାବଳୀ। ତେବେ :-
ମନ ନିବେଶି କୃଷ୍ଣଦେହେ - ଗୋପୀ ପଡ଼ିଲେ ଶୋକମୋହେ,
ପୁଣି ଉଠିଲେ ଜ୍ଞାନପାଇ - କହନ୍ତି ବାଇ ପ୍ରାୟ ହୋଇ,
କେ ବୋଲେ ମୁହିଁ ନାରାୟଣ - ସେ ବୋଲେ ମୋହରି ଚରଣ।
ଆଗୋ ବନଜାକ୍ଷୀ, ଖୋଲ ଖୋଲ ଆଖି
ଦେଖ ମୁଁ ଯେ ବନମାଳୀଟି,
ନ ମଣ ବିଚିତ୍ର - ନୁହଁଇ ମୁଁ ଚିତ୍ର ରେଖା ତୁମ ପ୍ରିୟ ଆଳିଟି ॥୦॥
ଆଜି ଆଲିଙ୍ଗନ କରଗୋ ଆସି
ଅଙ୍ଗନା ଅଙ୍ଗ ନାବରେ ବସି
କାମନା ଜଳଧି ପାରି ହେବ ଯଦି ମାନ ବୋଲ ଧନମାଳୀଟି ॥୧॥
ନିଶି ନିଶିନାଥ ସୁଖୀ ଯାଏ ଚାଲି
ରମ ରମଣୀ ଗୋ ଆଜ ମନଭରି
ଭରିଯାଉ ମନ, ଭରୁ ବୃନ୍ଦାବନ, ଭରିଉଠୁ ରାସ ସ୍ଥଳିଟି ॥୨॥
ତୁହା- ସଜନୀ ଗୋ, ସଜ ନିଆଳୀର ହାର,
ଗଳାରୁ ବାହାର କରି ଉପହାର,
ଦେବି ମୋ ସଙ୍ଗେ ବିହର।

□ □ □

-୧୭-

## ଶ୍ୟାମ ସୁନ୍ଦର

ଶ୍ୟାମ ସୁନ୍ଦର ହେ ସୁନ୍ଦର ହେ ଶ୍ୟାମ ବନେଅଛ କାହି,
ପୂର୍ଣ୍ଣମୀରେ ପୂର୍ଣ୍ଣ ଶଶାଙ୍କ ବଦନ
ନ ଦେଖି ବଞ୍ଚିବୁ ନାହିଁ ॥୦॥

ବଂଶୀଧର ବଂଶୀସୁର କି ତୁମର
ଘେନିଛି ବଶୀକରଣ
ବାସର ନ ସରୁଁ ବାସର ମମତା
ଛଡ଼ାଇ ଆଣେ ଅରଣ୍ୟ ॥୧॥
ନବ ରଜ ଆଜ ହେ ବରଜ ରାଜ
ନୀରଜ ଚରଣ ରଜ
ଆଶାରେ ଆସିଛୁଁ ବରଜ ଅଙ୍ଗନା
ତେଜି କି ପୁଣ୍ୟ ଅରଜ ॥୨॥
ତୁହା- ଘନଶ୍ୟାମ (ତିନିଥର), ଦେଖାଦିଅବାରେ
ତୁମ ଦରଶନ ତୃଷା ଅବିରତ ଧାରେ
ଆଉ ପଛେ କିଛି ଦିଅନାହିଁ ଅଭାଗାରେ
ଯାଦବ ହେ, ମାଧବ ହେ
ଯାଦବ ମାଧବ, ହେ ଦୀନ ବାନ୍ଧବ, ଗୋବିନ୍ଦ ହରେ ମୁରାରେ
ଦେଖାଦିଅ ଦେଖାଦିଅ
ଏ ଦୀନ ହୀନରେ ବାରେ - ଦେଖାଦିଅ ଦେଖାଦିଅ
କେଶବ କୃଷ୍ଣ ମୁରାରେ - ଦେଖାଦିଅ ଦେଖାଦିଅ
ଗୋବିନ୍ଦ ଗୋପାଳ ହରେ - ଦେଖାଦିଅ ଦେଖାଦିଅ ।



-୧୮-

## ନିଠୁର କାହ୍ନୁ

ନିଠୁର କାହ୍ନୁ କାହିଁ ଅଛ ଆସ ଏଥର
ଏ ନିରିଜନ ପଥରେ - ଛାଡ଼ି ନିରିମମ ଥରେ
ପାଲଟିଲ (ତିନିଥର) ପଥର ॥୦॥
ଗୋପନାରୀ ମର୍ଯ୍ୟୁ ବାରି ଆଣି ବାରିଜ ବଦନ

ଯାନ କରିଦେଇ ମାନ ଅଜାଡ଼ି ଅକାରଣ
ପାଦକୁ କଲ ଅବଣ କହିଲ ଛାନ୍ଦକୁ ଆପ
ପରେ ହେଲ (ତିନିଥର) ଅନ୍ତର ॥୧॥
ଶ୍ୟାମ ବନାନୀରେ ଶ୍ୟାମ ଅବହେଳେ ଗଲ ହଜି
ଫୁଲ ମନ ନେଇ ଫୁଲବନେ ଅବା ଗଲ ମଜି
ମୁଁ କେତେ ମରିବି ଖୋଜି ମୁନି ନ ପାଆନ୍ତି ଭଜି
ରୂପରେଖ (ତିନିଥର) ଯାହାର ॥୨॥
ତୁହା- ହେ କୁଞ୍ଜ ବିହାରୀ
କେଉଁ କୁଞ୍ଜେ ଅଛ କହ କରୁଣା କରି
ବନ ହେଲାକି ଭବନ ବନ ବିହାରୀ
କୁଞ୍ଜ ବିହାରୀ ହେ କୁଞ୍ଜବିହାରୀ ।



-୧୯-

## ପାଶୋର, କପଟ ନଟ

ପାଶୋର, କପଟ ନଟ କିଶୋର ହେ
କ୍ଷମାଥାଏ କ୍ଷମାନିଧି ଦୋଷର ହେ ॥୦॥
ତୁମ କରୁଣା ନ ମାନି ତୁମ ପ୍ରେମେ ହେଲୁମାନୀ
ଆଣ୍ଡିଲୁଁ ସାରା ଯରଣୀ ବାସର ହେ ॥୧॥
ତୁମ ସାଥେ ପ୍ରୀତି କରିବାକୁ ରୀତି ଭୀତି କରି
ନ ଡ଼ରିଯା ତେଜିଥିଲୁଁ ବାସର ହେ ॥୨॥
କହୁଛୁଁ ହୃଦୟ ଖୋଲି ନ ବଞ୍ଚିବୁ ଗୋପବାଳୀ
ନ ଆସିଲେ ବନମାଳୀ ପାଶର ହେ ॥୩॥
ତୁହା- ହତଗୋଳ ନଟ କିଶୋର ହରି
କେଉଁ କୁଞ୍ଜେ ଅଛ ଆସ ବାହାରି ।



-୨୦-

## ଆଗୋ ଗୋପ ଯୁବତୀ

ଆଗୋ ଗୋପ ଯୁବତୀ ମୁଁ ତୁମ ପୋଷା ଜୀବଟି
ତୁମେ ନ ଥିଲେ ମୋ ହେବା କେବେହେଲେ ହେବଟି ।।୦।।
ତୁମେ ରସ ସାଗରୀକା (ଗୋପୀଗୋ)
ତହିଁ ମୁଁ ଟିକି ନଉକା
ତରଳ ତରଙ୍ଗ ଧକ୍କା ଦେଇ ନ ମାରିବଟି ।।୧।।
ତୁମରି ପୀରତି ରସ କରିଛି କେତେ ବିବଶ
ସେତିକି ମାତ୍ର ପରଶ ଯେତେ ମୋର ହେବଟି ।।୨।।
ତୁମ ତୀରେ ଏ ତରଣୀ ଲାଗିଥାଉ ଗୋ ତରୁଣୀ,
ଦୀନର ଏହି ମାଗୁଣୀ ଲବେ ଯେନା ହେବଟି ।।୩।।
ତୁହା- ଗୋ ଗୋପବାଳା - ଲୋପ କରିଦେଲ ବିବେକ
ଗୋଜି ନ ପାଇଲ ପରା ତୁମେ ଥାଇ ଅନେକ ।

□ □ □

-ସମାପ୍ତ-

# ଅର୍ଘ୍ୟଧାରା

-୧-

## ଭଜମନ ଗୋବିନ୍ଦ ଗୋପାଳ

ଭଜମନ ଗୋବିନ୍ଦ ଗୋପାଳ ମୁରାରି,
ଯଶୋଦା ହୃଦୁଧନ ଗୋପୀରତି ବରଧନ,
ଗୋବରଧନ ଗିରିଧାରୀ ।।୦।।

କଣ୍ଠେ ବିଲମ୍ବିତ କଉସ୍ତୁଭ ହାର
ଲାଞ୍ଛିତ ଶରୀରେ ଶ୍ରୀବତ୍ସ ପୟର
କଙ୍କଣ ଶୋଭିତ ବଂଶୀକର ହରି
ମୁନି ଜନ ମାନସ ଚାରୀ ।।୧।।
ତୁହା- ଭଜରେ ମନ, ମଧୁସୂଦନ, ଭଜରେ ମନ ଭଜ
ଭଜ ମୁରାରି
ଭବ ବାରିଧିରେ ନାବ ହରିନାମ
ସେହି ନାବଧରି ହୁଅପାରି ବିଷୟ ବାରି ।



-୨-

## ତୁମ ପାଖେ କେଉଁ ଭିକ୍ଷା ମାଗିବି ଶ୍ରୀହରି

ତୁମ ପାଖେ କେଉଁ ଭିକ୍ଷା ମାଗିବି ଶ୍ରୀହରି
ତୁମେ ଭିକାରୀ ଠୁ ବଡ଼ ଭିକାରୀ,
ଯେବେ ଯାହାକୁ ଯାହା - ଦେଲ ଜଗତ ନାହା
ତାଠୁ ନେଲ ଆଗୁଁ ସବୁ ନିଃସାରି ।।୦।।
ଜନମ କାଳରୁ ଗୋପକୁ ଗୋପନେ ଯିବାକୁ ତେଜିଲ ମଥୁରା
ବ୍ୟଗ୍ର ହେଉ ରାଜା ଉଗ୍ରସେନ ହାତେ ଧରାପଡି ହେଲ ଧରା
ଲୁଚାଛପା ନୁହେଁ ସ୍ୱରୂପ ଦେଖାଇ ମାଗିଲ ବାଟ ତୁମେ ବକାରି
ବାଳକାଳେ ଦୁଧ ସରେ ଗୋପୀ ଜନେ ମାଗୁଥିଲ ସର ପୀରତି ।।୧।।
କୁବୁଜା ବାଳାଠୁ ଚନ୍ଦନ ମାଗି ବି ଭିକ୍ଷାର ନୋହିଲା ବିରତି
ଦୁର୍ଯ୍ୟୋଧନ ପାଶେ ପଡ଼ା ମାଗୁଥିଲ ନ ଦେଲାରୁ କଲ ଉଗାରି ।।୨।।
ଭଙ୍ଗପତି ଯେବେ ଫଳ ଆସି ମାଗେ ଆଗୁ ତେଜିଥିଲ କୁଟୀର
ଦେବାକଥା ନାହିଁ ନେବାପାଇଁ ନେଲ ବାମନର ଅବତାର
ବଳିରାଜା ଦେଇ, ଦେଇଦେଲା ସବୁ ବିଚାର ନ ଥିଲା ଶଙ୍କାରି ।।୩।।
ତୁମଠାରେ ଯାହା ନାହିଁ ଦଇବାହା ମୋହଠାରେ ତାହା ପୁରିଛି
ମମତା ବନ୍ଧନ ସେଇ ମୋର ଧନ ତୁମନାମେ ଦେଲି ମୁରୁଛି
ତାକୁ ପାଇ ମୋତେ ମୋର ବୋଲି କହ, ନ କହି ବି ଆଉ ଧିକ୍କାରି ।।୪।।

ଘୋଷା- ସତ କହୁଛି ହେ ହରି ଭିଖାରୀ ତୁମେ
ତୁମେ ଭିଖାରୀ
ନୁହ ବୋଲି କହଥରେ
ଚକା ଆଖି ଛୁଇଁ କରି

□ □ □

-୩-

## ନଦେଲେ ନ ଦିଅପଛେ

ନଦେଲେ ନ ଦିଅପଛେ କିଛି ନାରାୟଣ
ଦୟାକର ତୁମନାମ ଥାଉ ମୋ ସ୍ମରଣ।
ଯେଉଁଠାରେ ତୁମନାମ - ହୁଏ ନାହିଁ କେବେ ଗାନ
ସେହିଠାକୁ ନେବନାହିଁ ଥାଉଁ ମୋ ପରାଣ ॥୦॥
ସରଗେ ମୋ ଲୋଭନାହିଁ, ଚାହେନା ଅମୃତ
ମରିବାକୁ ଭଲ ଲାଗେ ଗାଇ ତୁମ ଗୀତ
ନିଅସବୁ କମନୀୟ, ଦିଅଖାଲି ବନ୍ଦନୀୟ ଚରଣେ ଶରଣ ॥୧॥
ଯା ଆସିବ ଆସୁ ଦୁଃଖ ନାହିଁ ମୋ ଆପତ୍ତି
ତୁମେ ଥିଲେ ମନେଥିବ ସହିବା ଶକତି
ଦିଅପଛେ ସବୁଦୁଃଖ ତୁମନାମ ଜପସୁଖ ନ କର ବାରଣ ॥୨॥
ଧନମାନ ଚଉବର୍ଗ କିଛି ଖୋଜେ ନାହିଁ
ସେସବୁ ପାଇ କି ହେବ ତୁମକୁ ହଜାଇ
ହରି ତୁମରି କରୁଣା ନ ହୋଇଲେ କେବେ ଉଣା ଡ଼ରିବ ମରଣ ॥୩॥
ଘୋଷା- ଦୟାକର ଦୟାକରି
ହେ ପ୍ରଭୁ ଦୀନ ବାନ୍ଧବ - ଦୟାକର ଦୟାକର
ଆଉକିଛି ମାଗୁନାହିଁ - ଦୟାକର ଦୟାକର
ତୁମେ ଖାଲି ଥାଅମନେ - ଆଉକିଛି ମାଗୁନାହିଁ
ଚରଣେ ଶରଣ ବିନା - ଆଉକିଛି ମାଗୁନାହିଁ।

□ □ □

-୪-

## ତୁମେ ଆରତ ବାନ୍ଧବ

ତୁମେ ଆରତ ବାନ୍ଧବ ମୁହିଁ ଆରତ
ଦୁଃଖହାରି ସଦାତୁମେ ଦୁଃଖୀମୁଁ ନିରତ ॥୦॥
ଜଗନ୍ନାଥ ତୁମେ ମୁଁ ଯେ ଜଗତର ପରମାଣୁ ଠାରୁ ସାନ
ତୁମେମହା ସିନ୍ଧୁ ମୁଁ ହୋଇ ପାରେନା ବିନ୍ଦୁର ପରିମାଣ
ଏକାନ୍ତ ଶ୍ରୀହୀନ ମୁହିଁ ତୁମେ ହେ ଶ୍ରୀକାନ୍ତ ॥୧॥
ତୁମେ ମହାପ୍ରଭୁ ମହାପାପୀ ମୁହିଁ ଈଶ ତୁମେ ମୁହିଁ ଦାସ
ତୁମେ ଯେ ଅନନ୍ତ ସୀମିତ ଜୀବ ମୁଁ କ୍ଷଣେ କ୍ଷଣେ ଯାଏ ନାଶ
ଦୟାମୟ ତୁମେ ମୁହିଁ ନିର୍ଦ୍ଦୟ ନିତାନ୍ତ ॥୨॥
ତୁମେ ବୁଝିପାର ସବୁରି ଅନ୍ତର ମୁଁ ବୁଝେନା ମୋ ଅନ୍ତର
ତୁମେ ଥାଅ ମୋର ପାଶେ ପାଶେ ରହି ତୁମକୁ ଜରେ ଅନ୍ତର
ତୁମେ ବୁଝ ସବୁକଥା ଭୁଲେଁ ମୁଁ ସତତ ॥୩॥
ତୁହା- ଆରତ ନାଶନ ବାନା ଉଡ଼େ ନାହିଁ କି
ମୋହ ପାଇଁକି
ମୋହପାଇଁ କହପ୍ରଭୁ ଉଡ଼େ ନାହିଁକି
କହ କାହିଁକି ।

□ □ □

-୫-

## ତୁମେ ଯଦି ଅଛ

ତୁମେ ଯଦି ଅଛ ସବୁଠାରେ ପ୍ରଭୁ
ମୋର ଅନ୍ତର ଭରି ଆସ
ମଳିନତା ଯାଉ ଦୂରକୁ ପଳାଇ
ପାଇ ତୁମରି ଶୁଭ ପ୍ରକାଶ ॥୦॥
ମନମୋର ମରେ ତୁମ ପାଇଁ କେତେ
ତୁମକଥା ମନେ ନାହିଁ

କେତେ ନିରିଧନ ମଣଇ (ତୁମକୁ) ନିଜକୁ
ତୁମପରି ଧନ ପାଇ
ତୁମେ ଯଦି ଅଛ ଥିଲା ପରି ରହ ନ ହୋଇ ଏତେ ଉଦାସ ॥୧॥
ଚିନ୍ତାମଣିଠାରୁ ବଡ଼ ମଣି କାହିଁ
ଥିବାର କେହି କି ଜାଣେ
ପରମାତ୍ମାଠାରୁ ପରମ ଆତ୍ମୀୟ
କିଏ କାହିଁ ଅଛି ଜଣେ
ତୁମେଯଦି ଅଛ ନ ଥିଲାର ପରି କରୁଛ କିପାଁ ହତାଶ ॥୨॥
ଜଗତର ସବୁ ଗତରେ ପଡ଼ି ମୁଁ
ହରାଇଛି ନିଜ ଗତି
ହରିଥାଇ ମୋର ମନ ଗହ୍ୱୀରରେ
ଖୋଜିମରେ ଦୃଭକତି
ତୁମେଥାଇ ଏତେ ଅଥୟ କରନା କରିନିଅ ନିଜ ଦାସ ॥୩॥
ତୁହା- ଅନ୍ତର ମନ୍ଦିର ଦ୍ୱାରେ ଦ୍ୱାରେ - ଆସ ପ୍ରଭୁ ଆସ ବାରେ
ମୁକୁଳା ମନ ମନ୍ଦିରେ - ଆସ ପ୍ରଭୁ ଆସ ଧୀରେ
କେତେ ଦିନୁ ଅଛିଚାକି - ତୁମେ ଜାଣ ତୁମେ ସାକ୍ଷୀ

□ □ □

-୭-

## ମନ ଭଜରେ

ମନ ଭଜରେ, ମନ ଭଜରେ,
ମନ ଭଜ ଗୋବିନ୍ଦ, ସଚ୍ଚିଦାନନ୍ଦ ପଦ ଙ୍କଜରେ ॥୦॥
ସୁତା ସୁତ ଦାରା ସୋଦର ସୋଦରା
ମାୟାର ପଣରା ତେଜରେ
ସେ ଯେ ପିତାମାତା ସଖାସୁଖ ଦାତା
ପରିତ୍ରାଣ ତାଙ୍କୁ ହେଜରେ ॥୧॥

ଯେ ପରମାନନ୍ଦ ଶାଶ୍ୱତ ଆନନ୍ଦ
ତା ପଦାରବିନ୍ଦ ରଜରେ
ନ ହୋଇତୁ ଅନ୍ଧ ହୃଅରେ ମିଳିନ୍ଦ
ପଦ ମକରନ୍ଦେ ମତ୍ତରେ ॥୨॥
ଭୁହା- (ମନ) ଭଜରେ ଭଜ ଅନନ୍ତ ଅଜ
ବରଜ-ରାଜ ଶ୍ରୀ ହରିଙ୍କି,
ନନ୍ଦ ଦୁଲାଳ କୃଷ୍ଣ ଗୋପାଳ
ତମାଳ ମାଳ ବିହାରୀଙ୍କି,
ରାମ ଗୋବିନ୍ଦ ପରମାନନ୍ଦ
ବୃନ୍ଦା ବିପିନ ବିହାରୀଙ୍କି।



-୬-

## ମହାପ୍ରଭୁ ମହାପାପୀ ମୁହିଁ

ମହାପ୍ରଭୁ ମହାପାପୀ ମୁହିଁ - ଧରି ନ ପାରିଲି ତୁମରି ନାମ
ଡ଼ାକି ନ ପାରିଲି - ମାଧବ ମୁରାରି
ରାମକୃଷ୍ଣ ହରି ହେ ପ୍ରାଣାରାମ ॥୦॥
ବରଜିଲି ନାହିଁ ନାହିଁ ଅରଜିଲି ଯାହା
ଜୀବନକୁ ଏବେ ହେଲାଣି ଭାର
ବାନ୍ଧି ଦେଇଛି ତ କାନ୍ଦି କାନ୍ଦେଇଲି
ଯାହାକୁ ମଣି ମୁଁ ଶୁଭ ସମ୍ଭାର
ତୁମକୁ ଛାଡ଼ି ମୁଁ ପରିଜନଠାରୁ ପରିହାର ତଳ କଲି ପ୍ରଣାମ ॥୧॥
ଦେଇ ନରଦେହ ବିଦ୍ୟାବୁଦ୍ଧି ବୟ
କରିବି ବୋଲି ମୁଁ ତୁମରି କାମ
ସେ ସବୁକୁ ନାଥ କଲି ମୁଁ ବିଅର୍ଥ
ବାଦେ ବିତାଇଲି ଦିବସ ଯାମ

ଅନ୍ତରୁ ତୁମକୁ ଅନ୍ତର କରିଛି ପୂରାଇବାକୁ ମନ ମନସ୍କାମ ॥୨॥
ଘୋଷା- ତୁମ ନାମ ମଧୁ କେବେ ଦିନେ ପାରିନି ମାଖି
ହେ ଚକାଆଖି
ମୂଢ଼ ମୁଁ ଅଜ୍ଞାନ ତୁମ ନାମ ଗାନ
ଅମୀୟ ରସକୁ କେବେ ପାରିନି ମାଖି ।



-୮-

## ହେ ଅନ୍ତର୍ଯ୍ୟାମୀ

ହେ ଅନ୍ତର୍ଯ୍ୟାମୀ, ଚରାଚର ସ୍ୱାମୀବାରେ ଆସ
ମାନସ ଆସନେ - ହୁଅ ଶୁଭାସୀନ
ଚିତ୍ତହରା ତୁମେ ପୀତବାସ ॥୦॥
ଯା ଦେଇଛ ନେତ୍ରେ ନୀର ସେ ପୟେ ତୁମ ପୟର
ପଖାଳିବି ଆହେ ହୃଷିକେଶ
ସରାଗ ସଳିତା ଜାଳି ଦୀପଦେବି ବନମାଳୀ
ଘେନାକର ପ୍ରଭୁ ଜଗଦୀଶ ॥୧॥
ବାସନା ସୁମନ ଚୟ ଚଢ଼ାଇବି ବରାଭୟ
ତୁଟିଯିବ ଆଶା ପ୍ରତିଆଶ
ମୋ କର୍ମ କରମ ଫଳ ନଇବେଦ୍ୟ ଆଦିମୂଳ
ଦେବି ହେଉ ନ ହେଉ ସନ୍ତୋଷ ॥୨॥
ଘୋଷା- ଆସିଛ କି ପ୍ରଭୁ ତୁମେ ଆସିଛ
ଚରାଚର ସ୍ୱାମୀ ତୁମେ ଆସିଛ
ସତକହ ଅନ୍ତର୍ଯ୍ୟାମୀ ଆସିଛ ।



-୯-

## କେତେଦିନ ପ୍ରଭୁ

କେତେଦିନ ପ୍ରଭୁ କେତେଦିନ
ଦୁଃଖେ ପଡ଼ି ମରିବି ମୁହିଁ
ଏ ଦିନକି ସରିବ ନାହିଁ, କେତେ... ।।୦।।
ସପ୍ନେ ଦେଖିଲି ନିତି ସୁଖ ଅସରା
ସେ ସୁଖ ମୋ ଲାଗି ହେଲା ଦୁଃଖ ପସରା
ଦୁଃଖହାରୀ ତୁମ ନାମ ଧରି
ସେ ଦୁଃଖୁ କି ପାଇବି ତ୍ରାହି କେତେ... ।।୧।।
ଅନ୍ତର ଅନ୍ତରାଳେ ବସି ହେ ତୁମେ
ନିରନ୍ତର ଦେଖୁଛ ତ ଦିବସ ଯାମେ
କେଉଁ କଥା ପ୍ରଭୁ କେଉଁ ବ୍ୟଥା
ତୁମ ପାଶେ ଅଛି ଲୁଚାଇ କେତେ... ।।୨।।
ଦୁହା- ଯାହା ଦୁଃଖ ହେଉ ହେଉ କେଶବ
ତୁମକୁ ନ ଯାଏଁ ଭୁଲି
ସବୁ ହେଉ ଭୁଲି ତୁମେ ରୁହ ଖାଲି
ମାନସ ମନ୍ଦିରେ ମୋ ବନମାଳୀ ।

□ □ □

-୧୦-

## ମଥାପିଟି କେତେ ମନ୍ଦିର ଦ୍ୱାରେ

ମଥାପିଟି କେତେ ମନ୍ଦିର ଦ୍ୱାରେ ଖୋଜିଲି ପାହାଡ଼ ନଈ
କେଉଁଠାରେ ପ୍ରଭୁ ତୁମ ଦରଶନ କେବେ ତ ପାଇଲି ନାହିଁ ।।୦।।
ପାଦ ତଳେ ତବ ବାଢ଼ି ନିବେଦନ
ମନ ଭୁଲାଣିଆ ଗାଇଲି ଭଜନ

ପାଇବା ପାଇଁକି ଗାଇଲି ଯେ ଗୀତ ତୁମେ ବା ଶୁଣନ୍ତ କାହିଁ ॥୧॥
ମାଗିବାକୁ କିଛି ଖୋଜି ଚଇକଚି
ମାଗିବାକୁ ଉଭା ତୁମେ ହାତ ପାତି
ଦୁଃଖୀ ଗହଣେ ତୁମେ ଦୁଃଖହାରୀ ଦୁଃଖର ବୋଝ ବୋହି ॥୨॥
ଦୁଃଖେ ମୁଁ ମୋର ନିଗାଡ଼ିଲି ଲୁହ
ସେ ଲୁହେ ଦେଖିଲି ତୁମରି ଆଲୁଅ
ଆନନ୍ଦ ସ୍ୱରୂପ ମୋହଠାରେ ଅଚି ଦୁଃଖ ମଝିରେ ଥାଇ ॥୩॥
ତୁହା- ତୁମକୁ ଦେଖିଛି ମୁହିଁ, ଚଲାପଥ ଧାରେ ଧାରେ
ଚାହିଁଛ କେତେ କରୁଣା ମାଗିଛ କିଛି କାହାରେ



-୧୧-

## ସୁନ୍ଦର ତୁମେ ଚିର

ସୁନ୍ଦର ତୁମେ ଚିର ସୁନ୍ଦର ହେ
ତୁମେ ନିତ୍ୟ ତୁମେ ସତ୍ୟ ଶିବ ସୁନ୍ଦର ହେ ॥୦॥
ବିଶ୍ୱପତି ତୁମେ ଶିରୀପତି ତୁମେ
ତୁମେ ସକଳ ସୁଷମାର ଆଧାର ହେ,
ତୁମେ ରମଣୀୟ ତୁମେ କମନୀୟ
ତୁମେ ସବୁ ଶୋଭାର ପାରାବାର ହେ ॥୧॥
ଜ୍ୟୋତିଷ୍କରେ ତେଜ ତୁମେ ଦେବରାଜ
ତମସାରେ ତୁମେ ଘନ ତିମିର ହେ,
ପ୍ରାଣୀମୁଖେ ହାସ ତୁମେ ପୀତବାସ
ତୁମେ ଦୁଃଖରେ ସହନ ମଧୁର ହେ ॥୨॥
ତୁହା- ତୁମେ ଆନନ୍ଦ ସକଳ ପ୍ରାଣରେ ସୁନ୍ଦର ହେ
(ତୁମ) ସବୁ ଚେତନରେ ଚେତନା ଚିନ୍ମୟ
ତୁମେ କାରୁଣ୍ୟ ସବୁ କରୁଣରେ,

(ତୁମେ) ଜଗତର ଶକ୍ତି ଜଗତର ଭକ୍ତି
ତୁମେ ଦୁଃଖ ପାରାବାର ମନ୍ଦର ହେ ।



-୧୨-

## ଡ଼ାକିବି କିପରି ପ୍ରଭୁ

ଡ଼ାକିବି କିପରି ପ୍ରଭୁ ଜାଣେନାହିଁ ଆବାହନ,
ତୁମେ କେଉଁଠାରେ ନାହଁ ଜାଣେନା ମୁଁ ଦୟାମୟ,
ପାରିବି କେଉଠି କହ ତୁମରି ଲାଗି ଆସନ ।।୧।।
ଦେଖୁନାହିଁ କେଉଁ ନୀର ଛୁଇନି ତୁମ ପୟର
କେଉଁ ନୀରେ କରିବି ହେ ପଦ ତବ ପ୍ରକ୍ଷାଳନ ।।୨।।
ତୁମହାସ କେଉଁଫୁଲେ କାହିଁ ଜାଣେ ନାହିଁ ଭଳେ
କେଉଁଜଳେ ତୁମ ରଙ୍ଗ ନାହିଁ କରିବି ଅର୍ପଣ ।।୩।।
ତୁମରି ନିର୍ଯାସ କାହିଁ ନାହିଁ ତାହା ଦେଖେ ନାହିଁ
କେଉଁ ଦ୍ରବ୍ୟେ କରିବି ମୁଁ ତୁମରି ତୃଷ୍ଟି ସାଧନ ।।୪।।
କି କଥାରେ ତୁମ ଆଖି, ନାହିଁ କହ ଢ଼କାଆଖି
ଜଣାଇବି କିସ ଯାହା ତୁମରି ଅଛି ଅଜାଣ ।।୫।।
ଦୁହା- ଜାଣେ ନା ମୁଁ ଆବାହନ ଜାଣେନାହିଁ ଆରାଧନା
କାଣେନାହିଁ ଜପତପ ଜାଣେନା ଯୋଗସାଧନା



-୧୩-

## ପରମେଶ ! ହେ ପରମେଶ

ପରମେଶ ! ହେ ପରମେଶ
ଦୟାକରି ଏତିକି କର,
ଢ଼କା ପଡୁଅଛି ହେ ଢ଼କା ନୟନ
ତୁମେ ପରା କରୁଣା ସାଗର ।।୦।।

ବଞ୍ଚିତ କର ପଛେ ସବୁ ସମ୍ପଦରୁ
ଘୁଞ୍ଚାଅନି ମୋ ମନ ତୁମ ଶ୍ରୀପାଦରୁ
ଅନ୍ତରଯ୍ୟାମୀ ହେ ଅନ୍ତରୁ ମୋର
ନ ହୁଅ କେବେ ବାହାର ।।୧।।
ସଙ୍ଗୀତ ତୁମନାମେ ଉଠୁ କଣ୍ଠ ଭରି
ରୋମାଞ୍ଚ ତୁମ ପ୍ରେମେ ଆସୁ ଅଙ୍ଗଘେରି
ଅନ୍ତକରି ଦିଅ ଅନାଦି ଅନନ୍ତ
ଏ ମୋର ସବୁ ଅଳଙ୍କାର ।।୨।।
ତୁହା- ହେ ଦୀନବନ୍ଧୁ ଦୀନମୋର
ସରେସିନା ଦୀନତାରେ,
ଆଶାରଖି ଅଛି ତୁମନାମେ ପ୍ରଭୁ ତୁମନାମେ
ନିଜ ବଳେ ପରା ଦିନତାରେ,
ତୁମେ ଦୀନନାଥ ଥାଉଁ ମୁଁ ଅନାଥ
ବୋଲାଇବି କିପାଁ ଜଗତରେ ।



-୧୪-

## ହେ ଶ୍ୟାମ

ହେ ଶ୍ୟାମ, ହେ ଶ୍ୟାମ, ଜୀବନ ଭରି ରହିଛି ଚାହିଁ
ଜୀବନ ଦେବତା ମୋର - ଜାଣି ମୁଁ ପାରେନା
ତୁମେ ଆସିବ ଅବା ନାହିଁ ।।୦।।
ମନର ଯମୁନା ମୋର ହୋଇ ଉନ୍ମନା ଧାଏଁ
ଲଂଘିଯାଏ କୂଳ ଦୁଇ
କାମନା କଦମ୍ବ ତରୁ ପଲ୍ଲବ କାନପାତେ
କେବେ ବଇଁଶି ଦେବ ବାଇ ।।୧।।
ଦର୍ଶନ ତୃଷ୍ଣା ମୋର କଣ୍ଠ ଶୁଖାଇ ଦିଏ
ଜାଣକି ନାହିଁ କହ୍ନାଇ

କୃଷ୍ଣ ହେ ତୁମ ଆଶେ ତୃଷ୍ଣା କି ରହେ ପାଶେ
ମୁଁ ତ ତୁମ ରାଧା ସୁଧାପାୟୀ ॥୨॥
ଭୁହା- ଶ୍ୟାମ ପ୍ରେମନବର ଯାଏ ବହି ଦେଖ ଚାହିଁ
ଅବହେଳାରେ ବି ମନ ନ ପାରିଲୁ କେବେ ଅବଗାହି ଦେଖ ଚାହିଁ ।



-୧୫-

## ନିସଙ୍ଗ ମଣେ ନିଜକୁ

ନିସଙ୍ଗ ମଣେ ନିଜକୁ କାହିଁକି ହେ ହରି
ଅନ୍ତରଙ୍ଗ ଥାଉ ତୁମେ ହେ ସାରଙ୍ଗ ଧାରୀ ॥୦॥
ଭକତି ନ ଥାଇ କେତେ ଗାଇଲି ଭଜନ ଗୀତି,
ଶବ୍ଦର ଆଡ଼ମ୍ବର କଣ୍ଠର କରାମତି,
ସେ ସବୁ ହେବକି ସାଥୀ କେବେ ତୁମ ମନୋହାରୀ ॥୧॥
ଅରପିଲି କେତେହାର ଫୁଲର ସେ ସମାବେଶ,
ଶରଧା ନ ଥାଏ, ଥାଏ ରଙ୍ଗ ସଙ୍ଗରେ ସୁବାସ,
ସେ ସବୁ ବୋଝର ପ୍ରାୟ ସହି ନୁହେଁ କି ଶ୍ରୀହରି ॥୨॥
ଭୁହା- ହାରିଗଲି ହରିହେ ତବ ମାୟା ଭବ ହାଟରେ
ନଚାଇଲ ନଟବର ହଳଗୋଳ ନାଟରେ



-୧୬-

## ମନ ମୋର ଝୁରେ

ମନ ମୋର ଝୁରେ ମନ ଚୋର ଶ୍ୟାମକୁ,
ପ୍ରାଣଖୋଜି ହତପ୍ରାଣ ପ୍ରାଣା ରାମକୁ ॥୦॥
ମନର ମୁକୁରେ ବାରେ ଆସ ପ୍ରଭୁ ଝଲସି,
ହସା ଏ ହୃଦ ହରସରେ ଉଠୁ ଉଲସି,

ନିର୍ବେଦନା ହେଉ ନିର୍ବେଦ ଜୀବନ ମୋ
ନ ଚାହେଁ କେବେ ସରଗ ଧାମକୁ ॥୧॥
ଦୁହା- ଶ୍ୟାମ ତୁମେ ବଡ଼ଚୋର ଜାଣି ନ ଥିଲି
ଲବଣୀ ଚୋର ଗୋପାଳ ପୁରେ
ବସନ ଚୋର ତୁମେ ଯମୁନା ତୀରେ
କଂସ କେଶୀ ବକା ପରାଣ ଚୋର - ଭକତ ଜନର ମାନସ ଚୋର
ହେ ବନମାଳୀ ଜାଣି ନ ଥିଲି ।



-୧୭-

## ଜଗବନ୍ଧୁ ହେ

ଜଗବନ୍ଧୁ ହେ ମୋ ବନ୍ଧୁ କେବେ ନୋହିଲ
ମମତା ବନ୍ଧନ ହେ ଜଗବନ୍ଦନ କଲ ଶିଥିଳ ॥୦॥
ଦିନୁ ଦିନ ବଢ଼ ହୁଏ ଦୀନତାର ଗାତ ହେ
ଚାରିହାତ ଥାଉ ବଢ଼ାଅନି ଏକ ହାତ ହେ
ବିପଦରେ ଦେଖା ନ ଦେଇ କେ ସଖା ହେବ କହିଲ ॥୧॥
ବିପଦରେ ଡ଼ରନାହିଁ ବିପଦ ବାରଣ ହେ
ମୋ ଭିତରେ ଥାଇ କିପାଁ ସହୁଛ କଷଣ ହେ
ତୁମପାଇଁ ହେଲେ ଦୁଃଖଭାର ତିଳେ ଭଣା ନ କଲ ॥୨॥
ଦୁହା- ଦୀନବନ୍ଧୁ ନାମଛାଡ଼, ଛାଡ଼ ଛାଡ଼ ଏଣିକି
ମୋ ପରି ଦୀନର ଦିନ ସରୁ ନାହିଁ
ଚାହିଁ ରହିଅଛି କହ କେଣିକି ।



-୧୮-

## ପ୍ରଭୁ ମୋତେ ଧୂଳିଠାରୁ କର ସାନ

ପ୍ରଭୁ ମୋତେ ଧୂଳିଠାରୁ କର ସାନ

କୃପା କରିବାର ଅବକାଶ ଯଦି
ପାଅ କେବେ ଭଗବାନ ॥୦॥
ନାଶକର ଆଗେ ଆହେ ଅବିନାଶୀ
ଏ ସୁଖ ଲାଳସୀ ଦେହ
ମୋହଠାରେ ମୋହ ଜନ୍ମାଇଛି ଏହା
ଜନ୍ମେ ଜନ୍ମେ ଅହରହ
ଦେହ ସହ ଯାହା ଅଛି ଅହମିକା ହୋଇଯାଉ ଅବସାନ ॥୧॥
ଅବାଟର ବାଟେ ବାଟୋଇ କରୁଛି
ଅମନା ମନ ମୋ ମରୁ
ତୁମ ବିନା ମୋର କହିବାକୁ କିଛି
ନ ଥାଉ ଯା ଅଛି ସରୁ
ମରିଯାଉ ମନ ମରୁ ତା କାମନା ମରିଯାଉ ଅଭିମାନ ॥୨॥
ଚୂଡ଼ା- କରସାନ ଭଗବାନ ଧୂଳିଠାରୁ କରସାନ
ନିତ୍ୟ ବୁଲୁଛ ବିଶ୍ୱ ନିଖିଳ
ତୁମ୍ଭେ ଦେବି କେବେ ପଦ ମହାନ ।

□ □ □

-୧୯-

## ଦଧିଭାଣ୍ଡ ଭଞ୍ଜନ

ଦଧିଭାଣ୍ଡ ଭଞ୍ଜନ
ସରିଗଲା ସଂକୀର୍ତ୍ତନ୍ୟ ଝରିଗଲା ଆଖିଜଳ
ପ୍ରଭୁ ଗୌରଚନ୍ଦ୍ର ଡ଼ାକି ଠୁଳକଲେ ନିଜଦଳ ॥୦॥
ଚୌଷଠି ମହନ୍ତ ଆସି-ଦ୍ୱାଦଶ ଗୋପାଳ ମିଶି
ଷଡ଼ ଗୋସ୍ୱାମୀ ପ୍ରବେଶି ପ୍ରେମେ ହେଲେ ଢଳ ଢଳ ॥୧॥
ନରହରି ରଘୁନାଥ - ସଙ୍ଗେ ସକଳ ଭକତ
ହରିନାମ ଗାନେ ରତ ହୋଇ ହୋଇଲେ ବିହ୍ୱଳ ॥୨॥
ଜୟ ଗୋବିନ୍ଦ ଜୟ ଗୋପାଳ ଜୟ ଜୟ ହରି
ଯଦୁନନ୍ଦନ ଦୁଃଖଭଞ୍ଜନ ଗୋବର୍ଦ୍ଧନଧାରୀ

ହରିନାମ ଗାନକରି - ଶଚୀସୁତ ଗୌରହରି
ମାଟି ପାତ୍ରେ ଦଧି ଭରି ଧରିଲେ କର କମଳ ।।୩।।
ସେ ଭାଣ୍ଡ ଦଧି ପୂରିତ ହଳଦୀ ରଙ୍ଗେ ଚିତ୍ରିତ
ଉପରେ ନୂତନ ବସ୍ତ୍ର ଦିଶେ କେଡ଼େ ପରିମଳ ।।୪।।
ଗୋସାଇଁ ରଘୁ ନନ୍ଦନେ ବାନ୍ଧିପ୍ରଭୁ ଆଲିଙ୍ଗନେ
କପୋଳେ ଦେଇ ଚନ୍ଦନ ଗଳେ ଦେଲେ ଫୁଲମାଳ ।।୫।।
ବୋଇଲେ ଆହେ ଗୋସାଇଁ ଏ ଭାଣ୍ଡରେ ଭାଙ୍ଗନେଇ
ଦଧିସିକ୍ତ କରିକର ବ୍ରଜଭୂମି ଯଜ୍ଞସ୍ଥଳ ।।୬।।
ଡୁହା- ଏହି ଧୂଳି ହେଉ ବ୍ରଜଦାଣ୍ଡ ରେଣୁ
ବ୍ରଜରାଜ ପଦରଜ ହେଉ ଆଜ
ଏ ରେଣୁର ଅଣୁ ପରମାଣୁ



-୨୦-

## ପ୍ରଭୁଙ୍କ ନିର୍ଦ୍ଦେଶ ଶୁଣି

ପ୍ରଭୁଙ୍କ ନିର୍ଦ୍ଦେଶ ଶୁଣି ରଘୁ ନନ୍ଦନ ଗୋସ୍ୱାମୀ
ଭକତି ଭରେ ପ୍ରଣମି ଧୂଳି ନେଲେ ପାଦତଳେ ।।୭।।
ଦଧି ଭାଣ୍ଡ ଶିରେ ଧରି ମୁଖେ ବୋଲି ହରି ହରି
ଦଶ ଦିଗରେ କୁହାରି ପକାଇ ଦେଲେ ଭୂତଳ ।।୮।।
ଦଧି ଭାଣ୍ଡ ଗଲା ଫାଟି ଭକତେ ପଡ଼ିଲେ ଲୋଟି
ମଥାରେ କେ ହୁଏ ଲେପି କେହୁଦିଏ କଣ୍ଠତଳ ।।୯।।
ଡୁହା- ମାଖିନିଅ ଭାଇ ମାଖି ନିଅ ହେ
ଏ ତ ବ୍ରଜ ଦାଣ୍ଡ ରେଣୁ
ଏ ସେ ରାସସ୍ଥଳ - ଏ କଦମ୍ବମୂଳ
ମନକାନେ ଶୁଣ ବାଜଇ ବେଣୁ ।



କୃପା କରିବାର ଅବକାଶ ଯଦି
ପାଅ କେବେ ଭଗବାନ ॥୦॥
ନାଶକର ଆଗେ ଆହେ ଅବିନାଶୀ
ଏ ସୁଖ ଲାଳସୀ ଦେହ
ମୋହଠାରେ ମୋହ ଜନ୍ମାଉଛି ଏହା
ଜନ୍ମେ ଜନ୍ମେ ଅହରହ
ଦେହ ସହ ଯାହା ଅଛି ଅହମିକା ହୋଇଯାଉ ଅବସାନ ॥୧॥
ଅବାଟର ବାଟେ ବାଟୋଇ କରୁଛି
ଅମନା ମନ ମୋ ମରୁ
ତୁମ ବିନା ମୋର କହିବାକୁ କିଛି
ନ ଥାଉ ଯା ଅଛି ସବୁ
ମରିଯାଉ ମନ ମରୁ ତା କାମନା ମରିଯାଉ ଅଭିମାନ ॥୨॥
ତୁହା- କରଯାନ ଭଗବାନ ଧୂଳିଠାରୁ କରଯାନ
ନିତ୍ୟ ଵୃନ୍ଦ ବିଶ୍ୱ ନିଖିଳ
ଚୁମିଛେବି କେବେ ପଦ ମହାନ।

□ □ □

-୧୯-

## ଦଧିଭାଣ୍ଡ ଭଞ୍ଜନ

ଦଧିଭାଣ୍ଡ ଭଞ୍ଜନ
ସରିଗଲା ସଂକୀର୍ତ୍ତନ୍ୟ ଝରିଗଲା ଆଖିଜଳ
ପ୍ରଭୁ ଗୌରଚନ୍ଦ୍ର ଡ଼ାକି ଠୁଳକଲେ ନିଜଦଳ ॥୦॥
ଚୌଷଠି ମହନ୍ତ ଆସି-ଦ୍ୱାଦଶ ଗୋପାଳ ମିଶି
ଷଡ଼ ଗୋସ୍ୱାମୀ ପ୍ରବେଶି ପ୍ରେମେ ହେଲେ ଟଳ ଟଳ ॥୧॥
ନରହରି ରଘୁନାଥ - ସଙ୍ଗେ ସକଳ ଭକତ
ହରିନାମ ଗାନେ ରତ ହୋଇ ହୋଇଲେ ବିହ୍ୱଳ ॥୨॥
ଜୟ ଗୋବିନ୍ଦ ଜୟ ଗୋପାଳ ଜୟ ଜୟ ହରି
ଯଦୁନନ୍ଦନ ଦୁଃଖଭଞ୍ଜନ ଗୋବର୍ଦ୍ଧନଧାରୀ

ହରିନାମ ଗାନକରି - ଶଚୀସୁତ ଗୌରହରି
ମାଟି ପାତ୍ରେ ଦଧି ଭରି ଧରିଲେ କର କମଳ ॥୩॥
ସେ ଭାଣ୍ଡ ଦଧି ପୁରିତ ହଳଦୀ ରଙ୍ଗେ ଚିତ୍ରିତ
ଉପରେ ନୂତନ ବସ୍ତ୍ର ଦିଶେ କେଡ଼େ ପରିମଳ ॥୪॥
ଗୋସାଇଁ ରଘୁ ନନ୍ଦନେ ବାନ୍ଧିପ୍ରଭୁ ଆଲିଙ୍ଗନେ
କପୋଳେ ଦେଇ ଚନ୍ଦନ ଗଳେ ଦେଲେ ଫୁଲମାଳ ॥୫॥
ବୋଇଲେ ଆହେ ଗୋସାଇଁ ଏ ଭାଣ୍ଡରେ ଭାଙ୍ଗନେଇ
ଦଧିସିକ୍ତ କରିକର ବ୍ରଜଭୂମି ଯଜ୍ଞସ୍ଥଳ ॥୬॥
ଡ଼ୁହା- ଏହି ଧୂଳି ହେଉ ବ୍ରଜଦାଣ୍ଡ ରେଣୁ
ବ୍ରଜରାଜ ପଦରଜ ହେଉ ଆଜ
ଏ ରେଣୁର ଅଣୁ ପରମାଣୁ



-୨୦-

## ପ୍ରଭୁଙ୍କ ନିର୍ଦ୍ଦେଶ ଶୁଣି

ପ୍ରଭୁଙ୍କ ନିର୍ଦ୍ଦେଶ ଶୁଣି ରଘୁ ନନ୍ଦନ ଗୋସ୍ୱାମୀ
ଭକତି ଭରେ ପ୍ରଣମି ଧୂଳି ନେଲେ ପାଦତଳେ ॥୭॥
ଦଧି ଭାଣ୍ଡ ଶିରେ ଧରି ମୁଖେ ବୋଲି ହରି ହରି
ଦଶ ଦିଗରେ ଜୁହାରି ପକାଇ ଦେଲେ ଭୂତଳ ॥୮॥
ଦଧି ଭାଣ୍ଡ ଗଲା ଫାଟି ଭକତେ ପଡ଼ିଲେ ଲୋଟି
ମଥାରେ କେ ଦୁଏ ଲେପି କେହୁଦିଏ କଣ୍ଠତଳ ॥୯॥
ଡ଼ୁହା- ମାଗିନିଅ ଭାଇ ମାଗି ନିଅ ହେ
ଏ ତ ବ୍ରଜ ଦାଣ୍ଡ ରେଣୁ
ଏ ସେ ରାସସ୍ଥଳ - ଏ କଦମ୍ବମୂଳ
ମନକାନେ ଶୁଣ ବାଜଇ ବେଣୁ।



-୨୧-

## ଯଶ ଗାଇଛି ଯେ

ଯଶ ଗାଇଛି ଯେ ତାକୁ କରିଛ ଅମର
ମୋହଠାରୁ କିସ ଆଶା କରିଅଛ
ଜନମୁଁ କରି ପାମର ॥୦॥
ତୁମ ରଥ ଦାଣ୍ଡ ବଡ଼ ଦାଣ୍ଡ ତୁମ ଦେଉଳ ବଡ଼ ଦେଉଳ
ତୁମରି ପୂଜକ ବଡ଼ ପଣ୍ଡା ତୁମେ ଠାକୁର ବଡ଼ ଠାକୁର
ତୁମ ପୁଅ ହୋଇ ଛୋଟ ହେଲି ମୁହିଁ ଏହିକି ବଡ଼ ବିଚାର ॥୧॥
ସଂସାରି କରିଛ ନିସଂଶୟ ଭାବେ ସଂସାର ସୁଖ ଛଡ଼ାଇ
ନିରିଧନ କଲ ଜୀବଧନ ମୋର ଧନେ ମମତା ବଢ଼ାଇ
ସବୁ ବଡ଼ତି ତ ସରିଛି ଏତିକି ଯୋଡୁଛି ବଡ଼ ନିଠୁର ॥୨॥
ହେ ବଡ଼ ଠାକୁର ବଡ଼ ଭୋଗ ଭୋଗୀ ବଡ଼ ଦେଉଳରେ ରହ
ବଡ଼ ରୋଗଭୋଗୀ ଭୋକେ ଭିଖ ମାଗି ବାହାରେ ରହୁ ତୋ ପୁଅ
ବାଂଛିଣ ବିଭୂତି ସ୍ତୁତି ଗାଉଥାନ୍ତୁ ଏ ଦେଶର କବିକୁଳ ॥୩॥
ଦୁହା- ବଡ଼ ଠାକୁର ହେ ବଡ଼ ଠାକୁର
ମୋହପାଇଁ କିପା ଏତେ ନିଠୁର
ଦୀନ ପ୍ରତି ଦିନେ ସୁଦୟା କର

□ □ □

-୨୨-

## ତୁହିଁ ଜଗନ୍ମାତା

ତୁହିଁ ଜଗନ୍ମାତା ଦୁର୍ଗା ଜନମିଲୁ ନାରାୟଣୀ ହୋଇ
ଚରିତାର୍ଥ ହେଲା ପୃଥ୍ୱୀ କୃତାର୍ଥ ଯେ ମୁହିଁ
ଜନନୀ ଗୋ ଜନ ନିସ୍ତାରିଣୀ ମା ନାରାୟଣୀ,
ତୁହିଁ ଜଗତର ଗଢ଼ି ତୁହି ସକଳ ଶକତି
ହୋଇ ମୁଁ ତୋର ସନ୍ତତି ଲଭିବି ଯେବେ ଦୁର୍ଗତି,

ଦୁର୍ଗାନାମ (ତୋର) ହେଲାକି ଭବାନୀ ॥୧॥
ମାତ ପର୍ବତ ତନୟା ମୋ ଦୁଃଖ ପର୍ବତ କାୟା,
ବନ୍ଦେ ଗୋ ରଖ ଅଭୟା ତୁ ପରା ଅପରାଜେୟା,
କୃପାକର (ମାଗୋ) କୃପା ପରାୟଣୀ ॥୨॥
ତୁ ହିମାଳୟ ଦୁହିତା ହେମର ଦୁଃଖ ସରିତା
ବନ୍ଦେ ତୋର ନାହି ଚିନ୍ତା ତୁ ପରା ଅପରାଜିତା
ଦୁଃଖ ମୋର (ମାଗୋ) କାଟ କାତ୍ୟାୟନୀ ॥୩॥
ଡ଼ୁହା- ଜୟ ଶଙ୍କରୀ ମା ତୁ ଶୁଭଙ୍କରୀ
ତୁ ହି ମା ଭବାନୀ - ତୁହି ବୈଷ୍ଣବିନୀ - ଶିବାନୀ ପ୍ରଳୟଙ୍କରୀ
ତୁହି ଲକ୍ଷ୍ମୀ - ତୁହିଁ ସରସ୍ୱତୀ
ତୁହି ନାରାୟଣୀ - ତୁହି ଭଗବତୀ
ତୁହି ସାବିତ୍ରୀ, ତୁହି ଗାୟତ୍ରୀ, ମାହେଶ୍ୱରୀ.... ଜୟ....



-୨୩-

## ବିଜନ ବୃନ୍ଦା ବନାନୀ

ବିଜନ ବୃନ୍ଦା ବନାନୀ ଉଠେ ଥରି ଥରି ରେ,
ମୃଦୁ ମଧୁର ମୁରଲୀ ବାଜେ ଧିରି ଧିରି ରେ ॥୦॥
ଆସେ ନାହିଁ ତୁଙ୍ଗବିଦ୍ୟା, ନାହଁ ଚିତ୍ରରେଖା
ଲଳିତାର ଦେଖା ନାହିଁ ନ ଆସେ ବିଶାଖା
ଚନ୍ଦ୍ରା ତେଜି ଚନ୍ଦ୍ରାବଳୀ କାନ୍ଦଇ ଗୁମୁରି ॥୧॥
ସରିଯାଏ ଅଭିମାନ ସରିଯାଏ ରାତି
ଝୁରେ ଏ ମନର ଦେହ ସରେ ଦେହ ତାତି
ମନର ରାଧିକା ଖୋଜେ କାହିଁ ବଂଶୀଧାରୀ ॥୧॥
ଡ଼ୁହା- ଶୁଣ ବାଜେ ମୁରଲୀ ରହି ରହି
ଅଜଣା ଦିନର ଅକଳନା କଥା
ଅକୁହା ସୁରେ କହି କହି ।

ମୁରଲୀ ବାଜେ - ଭାଇ ମୁରଲୀ ବାଜେ
ମୃଦୁ ମନୋହର ମଧୁର ସୁରେ - ଭାଇ ମୁରଲୀ ବାଜେ
ପ୍ରତିଧ୍ୱନୀ ଉଠେ ହୃଦୟପୁରେ - ଭାଇ ମୁରଲୀ ବାଜେ
ଅମନା ମନ କି କେବେ ନ ବୁଝେ - ଭାଇ ମୁରଲୀ ବାଜେ
ଅଲାଜୁକ ମନ ନ ମରେ ଲାଜେ - ଭାଇ ମୁରଲୀ ବାଜେ ।

□ □ □

-୨୪-

## କଳା କଳେବର

କଳା କଳେବର କାହ୍ନୁ କଲା କୁହୁକ
କଳା କନା ବୁଲାଇଲା ଏ ସାରା ଶରୀର ଯାକ ॥୦॥
କୁଞ୍ଜକୁ ଡ଼ାକି ଏକାନ୍ତେ - କଲା ଟେକି ଟେକି କେତେ
ମୁଖ ଚୁମ୍ବି କଳାମୁଖ ପଇକରେ କଲା ମୂକ ॥୧॥
କମଳ କର ମୋ କରେ କଷି କଉତୁକ କଲେ
କଞ୍ଜ ଆଖି କଟାକ୍ଷରେ କରତି ଦେଲା ବିବେକ ॥୨॥
କହିକଥା କମନୀୟ କଲା ମୋତେ ଗତକାୟ
କହେ ହେମ କିଏ କେବେ ଅନୁଭବିବ ସେ ସୁଖ ॥୩॥
ତୁହା- ହୋ କଲାକାହ୍ନୁ କଳାମୁଖ ଦେଖାନା ଆଉ
ଗଲା ଯା ଥିଲା ମହତ
ପଳା ଯା ତୋ ପ୍ରୀତି ଥାଉ

□ □ □

-୨୫-

## ହେ ମୁରଲୀଧର ଶ୍ୟାମ

### (ରାଗ - କନୌଜ)

ହେ ମୁରଲୀଧର ଶ୍ୟାମ ଆସ ବାରେ ଆସ
ରସ ରାଜ ରାସ ପ୍ରିୟ
ନ କର ନିରାଶ ॥୦॥

ଶୂନ୍ୟ ଏ ହୃଦୟାସନ ବସ ହେ ପୀତ ବସନ
ଗୋପୀକା ମୋହନ ହରି ରାଧିକା ବିଳାସ ।।୧।।
ବାସନା କୁସୁମ ସବୁ ଅରପିଲୁଁ ପଦେ ପ୍ରଭୁ
ହାସ ପରକାଶ ପ୍ରିୟ ପଲ୍ଲଭ ପରଶ ।।୨।।
ଦୁହା- ମନ ମନ୍ଦିରେ ଧୀରେ ଆସ ସୁନ୍ଦର ହେ
ତୁମେ ସକଳ ଆନନ୍ଦର କନ୍ଦର ହେ
ଅନ୍ତର୍ଯ୍ୟାମୀ ନାଥ ହୁଅ ହେ ଅନ୍ତର୍ଗତ
ମନ୍ଦର ଧର ଘନ ସୁନ୍ଦର ହେ



-୨୬-

## ତୁମ ବିନା ବନ୍ଧୁ କାହିଁ

ତୁମ ବିନା ବନ୍ଧୁ କାହିଁ ଦୀନବନ୍ଧୁ
କାହାକୁ କହିବି କହ
ତୁମ ଆଗେ ଖାଲି ପାରିବି ମୁଁ ଢ଼ାଳି
ଦୁଃଖର ଦିଟୋପା ଲୁହ, ହେ ବନ୍ଧୁ ଦୁଃଖର.....।।୧।।
ଧନ ପାଇଁ କେବେ ମନ ଦେଇ ନାହିଁ
ତୁମେ ମୋର ମହାଧନ
ଜନ ସାଗରରେ ଜଣେ ବି ପାଏନା
ତୁମ ପରି ପରିଜନ, ହେ ବନ୍ଧୁ ତୁମ....।।୨।।
ଧନ ଅବା ଜନ କିଛି ନୋହୁ ମୋର
ତୁମେ ଏକା ମୋର ହୁଅ
ମନ ତୁମ ପଦେ ରଖି ମୁଁ ବିପଦେ
ଥିଲେ କି କହିବେ କୁହ, ହେ ବନ୍ଧୁ ଥିଲେ....।।୩।।
ଦୁହା- ହେ ବନ୍ଧୁ..... ବନ୍ଧୁ ହେ.... ହେ ବନ୍ଧୁ..... ।।
କରୁଣା କଣିକା ଦିଅ
ବିପଦ ବାରଣ ବନ୍ଧୁ

ପତିତ ତାରଣ ବନ୍ଧୁ
କରୁଣା ବରୁଣାଳୟ।

□ □ □

-୨୭-

## ଦେଖିଲେ କହିବି

ଦେଖିଲେ କହିବି ଢ଼ଙ୍କା ଆଖିଆକୁ
ଢ଼ଙ୍କା ଆଖିଆକୁ କଳା ମୁଖିଆକୁ ॥୦॥
କେଡ଼େ ବଡ଼ ବିଶ୍ୱ ରଖି ମୋର ଆଗେ
ଦେଲା କେଡ଼େ ଛୋଟ ଆଖି
ବିଷର ମୂରତି ଉଭା ମୋର ଆଗେ
ପିୟୁଷର ରଙ୍ଗ ମାଖି
କିପରି ଜାଣିବି ତାକୁ ସିନା ଜଣା
ପୁତନା ପ୍ରାଣଖିଆକୁ ॥୧॥
ଭକତି କରଇ ଦେଖିଲେ ମୁଁ ତାକୁ
ହାତେ ତାର ଜପା ମାଳା
ଜାଣିବି କିପରି ହୃଦେଣ ଭରିଛି
ଇର୍ଷା ବିଦ୍ୱେଷର ଜ୍ୱାଳା
ନିଜେ ଜଳି ତାର ଦୁନିଆଁ ଜାଳୁଛି
ନ ଜାଣେ ସର୍ବ ଭକ୍ଷିଆକୁ ॥୨॥
ଚିର ସୁନ୍ଦର ସେ ସୁନ୍ଦରତାର
ସରଜନା ନିରୁପମ
ମଣିଷ ହୃଦୁେ ଭରିଦେଲା କିଆଁ
ସ୍ୱାର୍ଥ ଭାବ ନିରିମମ
ନୋହିଥିଲେ ପରା ଡ଼ାକି ନ ଥାଆନ୍ତେ କେକି କେକୀପକ୍ଷିଆକୁ ॥୩॥
ଡୁହା- ଲୁହବିନା କୁହ ପ୍ରଭୁ କେବେ କିଛି ଦେଇଛ
ଯଦି ବା ଦେଇଛ କିଛି ସେ ସବୁକୁ ବାଛି ବାଛି

ଅବିରତେ ଅବିଚାରେ ଲୁହ ଧାରେ ଧୋଇଛ
ମୋ ଲୁହେ ମୋତେ ଭିଜାଇ ମୋ ଲୁହେ ମୋତେ ଭିଜାଇ
କାହିଁଗଲେ ମୋର ହାତେ ନିଜକୁ ଖୋଜାଇ
ଧନରେ ଗର୍ବିବ କଲେ କର ସଦା ମନ ତୁମ ପାଦେ ଥାଉ (୩) ଗୋବିନ୍ଦ
ଲୁହଧାରେ ବନ୍ଧୁ ଜୀବନ ସରିତା - ମନ .......
ଦୁନିଆଁରେ ସନ୍ତେ ନ ରହେ ଭିକାରୀ - ମନ ........
ମନ ଜପୁ ମୋର ମାଧବ ମୁରାରୀ - ମନ .....
ଦିଅ ଏହି ବୁଦ୍ଧି କହେଁ ନିରବଧି (ପ୍ରଭୁ ହେ)
ମହାଧନ ମୋର ମହାବାହୁ ॥୦॥



-୨୮-

## କହ କାହିଁ ଖୋଜିବି

କହ କାହିଁ ଖୋଜିବି ଘନଶ୍ୟାମ,
କଲୁ ଅଣକଟ ଅବିରାମ ॥୦॥
ଜନମ ପାଇଛି କେତେ କେତେ
ମନ ମଜାଇଛି ଇତସ୍ତତେ
ଶତଜଳ - ପଦ ତଳେ ସତେ
ରଖି ନ ପାରୁଛି ମନସ୍କାମ ॥୧॥
ପାଶୋରିଛି ତୋର ରୂପ ଅପାଶୋରା
ପସାରି ସଉକେ ଶୋକର ପସରା
ସାରି ସରାଇଛି ମୋ ଶରଧା ସାରା
ଦେଖି କି ପାରିବି ଅଭିରାମ ॥୨॥
ଢୁହା- ଘନଶ୍ୟାମ ମନ କାମନା ମୋର,
ହେ ଘନଶ୍ୟାମ କାମନା ମୋର,
ତୋ ନାମେ ତରିବି ଭବ ସାଗର,
ନାମ ଜପି ଯାଉ ଯାତନା ଘୋର।



-୨୯-

## ପ୍ରୀତି ନାହିଁରେ

ଶ୍ୟାମ(ତୁ) ଯାଆ ଯାଆ ତୋ ସାଥେ
ପ୍ରୀତି ନାହିଁରେ,
ଫଳ ମୁଁ ପାଇଲି ଖଳ ଲୋକେ ଭଲ ପାଇରେ ।।୦।।
ମନ୍ଦ ବାଳକ ତୁ ରେ ନନ୍ଦ ଦୁଲାଳ
କୁଳଟା କହିଲେ ମୋତେ ତୁ ହେଲୁ କାଳ,
କଳା କରିଦେଲୁ ମତେ କଳା କହ୍ନାଇ ।।୧।।
କୁଞ୍ଜକୁ ଡ଼ାକୁ ସଂଜେ ବଂଶୀ ବଜାଇ
ଜଂଜାଳ ତେଜି ଯାଉଁ ତୃଞ୍ଚଳ ଧାଇଁ
ଇଜ୍ଜାହୀନ ତୁହିଁ ବୋଲି ଲାଜ ଛଡ଼ାଇ ।।୨।।
ଛନ୍ଦ ଭରା ତୋର ସକଳ ଗତି
ଅନ୍ଧ କରିଦେଲା ଅବଳା ଜାତି
ମନ୍ଦ କପାଳକୁ ମୋର ଦ୍ୱନ୍ଦେ ପକାଇ ।।୩।।
ତୁହା- ହୋ କଳାକାହ୍ନୁ କଳା ମୁଖ ଦେଖାନା ଆଉ
ଗଲା ଯା ଥିଲା ମହତ
ପଳାଯା ତୋ ପ୍ରୀତି ଥାଉ ।

□ □ □

-୩୦-

## ହୃଦ ବୃନ୍ଦାବନେ କେବେ

(କେବେ) ବଂଶୀ ବାଜିବ, ହୃଦ ବୃନ୍ଦାବନେ କେବେ
ସେ ସୁରେ ବେସୁରା ମୋର ରାଗିଣୀ ରାଜି ରାଜିବ ।।୦।।
ମନମାରି ବସି ବସିଅଛି ମନ ରାଧିକା ମାନିନୀ
ମାନ ପରା ଧନ ତାର କା କଥା କେବେ ମାନିନି
ମନାଇ ଦିଅରେ ବଂଶୀ ତୋ ପାଦ ସିନା ଭଜିବ ।।୧।।
ଏ ପାରିରେ ଝୁରେ ରାଧା ସେ ପାରିରେ ବାଜେ ବଂଶୀ

ସେପାରେ କଳପେ ହଂସ ଏ ପାରେ ବିଳପେ ହଂସୀ
ମଝିରେ ମୋହ ଯମୁନା ସେତୁ କେବା ସରଜିବ ॥୨॥
ତୁହା- କେତେକାଳୁଁ ବାଜେ ବଂଶୀ
ଜୀବନ ଯମୁନା ତୀରେ,
ସୁରେ ସୁରେ ବାଜେଶୁଣ,
ଧୀରେ ଧୀରେ ଅତି ଧୀରେ,
ନ ଶୁଣି ପାରୁତୁ ବୃଥା,
ଭାସୁ ବ୍ୟଥା ଜଳଧିରେ ॥୦॥
ବାଜେ ବଂଶୀ ତୋର ନାମକୁ ରାଇ
ଶୁଣି ପାରିବୁକି ରହିଲେ ଶୋଇ
ଶୁଣିକରି ଶୁଣି ପାରିଲୁ ନାହିଁ ॥୧॥



-୩୧-

## ଅମନା ମନ ଶ୍ୟାମ ପାଦେ

ଅମନା ମନ ଶ୍ୟାମ ପାଦେ ରଖ ଲୟ
(ରାଧାଶ୍ୟାମ ପାଦେ ଘନଶ୍ୟାମ ପାଦେ)
ଯାପିଛୁ ତୁ ଯେତେ ଦିନ
ସେ ନୁହେଁ କେବେ ଜୀବନ
ଖାଲି ଜୀବନର ଅପଚୟ ॥୦॥
ଆତ୍ମା ତୁଁ ନ ଭ୍ରମି ଯିବୁ ପରା ଅତିକ୍ରମି
ଏହି ତୋର ପରିଚୟ
ମରଣ କଳା ନିପୁଣ ହୋଇ କରୁ ପୁନଃ ପୂର୍ଣ୍ଣ
ଜୀବନର ଅଭିନୟ
ଶ୍ୟାମ ଅପରାଜିତ ସାଥେ ନୋହି ପରିଚିତ
ପାଉପରା ପରାଜୟ
ଶ୍ୟାମ ପାଦେ ମନରଖ ଶ୍ୟାମ ନାମେ ମାଜ ମୁଖ
ବରିନେବ ବରାଭୟ ॥୨॥

ଜୁହା- ଶ୍ୟାମପଦ ଯାଇ ଦେଖ ହୋ
ଶ୍ୟାମ ପଦ ଗାଇ ଦେଖ
ଶ୍ୟାମ ପଦ ଅରବିନ୍ଦୁ ମକରନ୍ଦ
ନିରତେ ଝରେ ନିରେଖ
ଘନ ଶ୍ୟାମପଦ କେତେ ନିରାପଦ
ସବୁ ଅବସାଦ ସବୁ ପରମାଦ
ଦୂର କରିଦେବ ପରମ ସୁଖ ହୋ ।



-୩୨-
## ଜଗନ୍ନାଥ ହେ

ଜଗନ୍ନାଥ ହେ, ସବୁଠି ଅଛୁ ପରା ପୂରିକି
ତଥାପି ଅଗଣା ଗଣଙ୍କୁ କାହିଁକି
ଆଣୁଛୁ ଟାଣି ତୋ ପୁରୀକି ॥୦॥
ପାରାବାର କୂଳେ ପରମ ପୁରୁଷ ପକାଇ ଅଛୁ ଆସନ
ଏଆଡ଼େ ସଂସାର ସାଗର ତୋହର କରେ ଘୋର ଗରଜନ
କହୁତୁ ଶ୍ରୀମୁଖ ଯେ ଦେଖିବ ଦୁଃଖ
ସମୁଦ୍ର ହୋଇଛି ପାରିକି ॥୧॥
ତୋ ଆଗେ ରଖିଛୁ ସୁଖୀ ଭୋଗୀ କେତେ
ମିଛ ଆନନ୍ଦେ ମଜ୍ଜାଇ
ତା ସଙ୍ଗେ ରଖିଛୁ ଦୁଃଖୀ ରୋଗୀ କେତେ
ନିଜ ଇଚ୍ଛାରେ ସଜାଇ
ତାଙ୍କ ଦୁଃଖ ଦେଖି ତୋର ବଡ଼ା ଆଖି
ସମ୍ଭାଳେ କିପରିବାରିକି ॥୨॥
ମୋ ଦୁଃଖ ଦରିଆ ଜାଣୁ ତୁ କାଳିଆ
ଗୋଳିଆ କେତେ ଗଭୀର
ତହି ବିହ୍ବରନ୍ତି କେତେ ଯେ ମକର
କେତେ ଭୀଷଣ କୁମ୍ଭୀର

ନ ରଖିଲେ ନାହିଁ ହୀନକର୍ମା ମୁହିଁ
ନ ଛାଡ଼େଁ ତୋ ନାମ ଚରିକି ।।୩।।
ଢୁହା- ହେ ଚକାଆଖି ମୋ ଆଖିରେ ନାଚୁ ରୂପ ତୋର
ବାଞ୍ଛାନିଧି ବାଞ୍ଛା ମୋର ବାରେ ପୂରା କର ।

□ □ □

-୩୩-

## ନ ପାଇଲୁ ବନେ ବନେ

ନ ପାଇଲୁଁ ବନେ ବନେ ବୁଲିକି ବନମାଳୀକି
କଳାକାହ୍ନୁ ଗଳା କାଟି ଦେଇଗଲା
କଲୁଁ ବୋଲି ଗଳା ମାଳିକି ।।୦।।
ଘନଶ୍ୟାମ ଘନ ଘନ ବେଣୁବାଇ
ଅରଣ୍ୟେ ଆଣେ ଗୋଆଳିକି
ଦେଖାଇ ପାଇବା ଲାଳସା ଦେଖାହିଁ
ନ ଦେଇ ଗଲା ସେ ଚାଲିକି ।।୧।।
ସ୍ୱଜନ ପରାଏ ସବୁ ଗୋପୀଜନ
ଆଣି ନିରିଜନ ସ୍ଥଳିକି
ଚନ୍ଦ୍ରରାତେ ଗୋପଚନ୍ଦ୍ର ଘେନିଗଲା
ଚନ୍ଦ୍ରାନନୀ ଚନ୍ଦ୍ରାବଳୀକି ।।୨।।
କାମିନୀ ଜନାଙ୍କ ମହତ ନ ରଖେ
କାମର ଜନକ ବୋଲିକି
କହେ ହେମଚନ୍ଦ୍ର ଆହେ କୃଷ୍ଣଚନ୍ଦ୍ର
କାଟମୋ କାମନା କାଳିକି
ଢୁହା- (ମୋର) ବନମାଳୀ ଗଲା କେଣେ (ହୋ)
(ମୋତେ) କିଏ କହିଦେବ
(ତାର) ହାତରେ ମୁରଲୀ ପାଦରେ ନୂପର
ଚିତା ଘେନେ (ତାର) ଅପଘନେ (ହୋ) ।

□ □ □

-୩୪-

## କାମନା - ଯମୁନା ତୀରେ
### (ରାଗ - କଳାଶ୍ରୀ)

କାମନା - ଯମୁନା ତୀରେ
ଚନ୍ଦ୍ରାୟିତା ମୋର ଚିତ୍ର-ଚନ୍ଦ୍ରାବଳୀ
ଅଳପେ ବିଳପେ ଧୀରେ ॥୦॥
ଜଳଦ-ତନୁ କାହ୍ନୁର ଜଳଜ-ଆନନେ
ରହି ରହି ବାଜେ ବଂଶୀ ସେ ପାରି କାନନେ
କାନ ଦେଇ ମାନମୟୀ
ଏ କୂଳେ ଆକୁଳେ ଝୁରେ ॥୧॥
ନୟନ ଢ଼ାଳି ସେ ପାରି ଅୟନେ ସେ ଅଥୟ
କେତେ ଦୂର ପଥ କାହିଁ କିଛି ନାହିଁ ପାଥେୟ
ଗଲାଦିନ ଚ଼ଲାପଥ
ନୀରବେ ନିରତେ ସ୍ମରେ ॥୨॥
ଢୁହା- ମନର କାମିନୀ ମୋର ଖୋଜେ ଦିବା ନିଶି.
ମନର ମଣିଷ ମୋର କେଉଁଠାରେ ଅଛି ବସି ॥
ମୋ ମନ ଭିତରେ ଥାଇ ମନର ଦେବତା ସେହି
ମନେ ମନେ ଥାଏ ହସି ॥

□ □ □

-୩୫-

## ଶ୍ୟାମ ଆସିଲେ ନାହିଁ

ଶ୍ୟାମ ଆସିଲେ ନାହିଁ ଆସ ଯିବା ସଜନୀ
ଆମେ କେହି ଶ୍ୟାମ ହୋଇ ପୁହାଇ ଦେବା ରଜନୀ ॥୦॥
ଶ୍ୟାମ ହେଲେ ନାରୀବେଶ
ଗୋପୀ ହୋଇଲେ ଗୋପେଶ
ଯଦି କିଏ ଦିଏ ଦୋଷ
କେ କରୁଛି ଭାଳେଣି ॥୧॥
କେତେ ହେବା ଶ୍ୟାମ

ତୁମେ ଶ୍ୟାମ ମୁଁ ହିଁ ଶ୍ୟାମ
ଯାହା ଦେଖୁ ସବୁ ଶ୍ୟାମ
ଶ୍ୟାମ ସାରା ଧରଣୀ ॥୨॥
ତୁହା- ଅସଙ୍ଖ୍ୟ ସାଂଗତି ପସରା ମେଳିତୁ
ଶ୍ୟାମ ଭାବେ ମିଶି ଯାରେ
ଶ୍ୟାମ ଭାବେ ମିଶି ଯାରେ
ଶ୍ୟାମ ଭାବେ ମିଶି ଯାରେ
ଶ୍ୟାମର ଅଭାବ ନୋହୁ ଅନୁଭବ
ଶ୍ୟାମ ଦିବା ନିଶୀ ଗା ରେ

ଶ୍ୟାମ ଶ୍ୟାମ ବୋଲ ଭାଇ ରାମ ରାମ ବୋଲରେ
ଶ୍ୟାମ ଶ୍ୟାମ ରାଧେଶ୍ୟାମ ସୀତା ରାମ ସୀତାରାମ
ହରେ କୃଷ୍ଣ ହରେ ରାମ, ରାଧେଶ୍ୟାମ ରାଧେଶ୍ୟାମ
ନିତାଇ ଗୌର ରାଧେଶ୍ୟାମ, ହରେ ରାମ ହରେରାମ ॥



-୩୬-

## ନାଥପରା ଜଗନ୍ନାଥ

ନାଥପରା ଜଗନ୍ନାଥ ତୁହିଁ ଜଗତର
ଅନାଥରେ ଯାଉଦଣା ଏ ଅନାଥର ॥୦॥
ରତନ ଭଣ୍ଡାର ତୋର ଦେବି ଅବା ଖୋଲି
ଡ଼ରୁଛୁ କି କିଛି ଜଣ ମାଗିନେବି ବୋଲି
ଚଉପଟ ତୋର ହାତେ ଚଉଷଠି ସଂଧି
ସେଥିରୁ କିଛି ମାଗିବି ଦେଉନୁ ସେ ବୁଦ୍ଧି
ନେବାକୁ ଚତୁର ତୁହିଁ ଦେବାକୁ କାତର ॥୧॥
ଜନମି ମରିବାପାଇଁ ନାହିଁ ମୋର ଭୟ
ତା ନ ହେଲେ କେ କରିବ ତୋର ଜୟ ଜୟ
ଆତୁର ଆରତେ କେତେ କେତେ ଦେହଧାରୀ

ଯେଉଁ ଦୁଃଖେ ଡ଼ାକୁଛନ୍ତି ତୋର ନାମଧରି
ସେଇ ଅନୁଭୂତି ଦେବୁ ରଖି ସେ ଅନ୍ତର ॥୨॥
ଡ଼ୁହା- ଆଉ କିଛି ମାଗୁ ନାହିଁ ହେ ପ୍ରଭୁ
ଖାଲି ଏତିକି ଦିଅ
ଦୁଃଖୀର ସାଥିରେ ଦୁଃଖର ଭିତରେ
ପିଇବି ଦୁଃଖ ଅମିୟ

ଶ୍ୟାମ ଶ୍ୟାମ ବୋଲ ଭାଇ ରାମ ରାମ ବୋଲରେ
ଶ୍ୟାମ ଶ୍ୟାମ ରାଧେ ଶ୍ୟାମ ସୀତାରାମ ବୋଲରେ
ହରେ କୃଷ୍ଣ ହରେ ରାମ ରାଧେ ଶ୍ୟାମ ବୋଲରେ
ନିତାଇ ଗଉର୍ ରାଧେ ଶ୍ୟାମ ହରେ ରାମ ବୋଲରେ



-୩୭-

## ହେ ପ୍ରଭୁ, କେଉଁ ରୂପ କରିବି ମୁଁ ଧ୍ୟାନ

ହେ ପ୍ରଭୁ, କେଉଁ ରୂପ କରିବି ମୁଁ ଧ୍ୟାନ
ଦେଖିନାହିଁ କେବେ ଶୁଣିଅଛି ସିନା
ଅଶେଷ ତୋ ରୂପ ମାନ ॥୦॥
କିଏ କହେ ତୋର ଚାରିହାତ କେହୁ କହଇ ସହସ୍ର ଶତ
କିଏ କହେ ତୋର ହାତପାଦ ନାହିଁ କାହାକୁ ମଣିବି ସତ
କିଏ ଦେଖେ ଶିରେ ମୟୂରର ପୁଚ୍ଛ କିଏ କିରୀଟ ଅମ୍ଳାନ ॥୧॥
କିଏ ଦେଖେ ତୋର ହାତରେ ମୁରଲୀ
କିଏ ଅବା ଧନୁ ତୀର
କିଏ କହେ ଶଙ୍ଖ, ଚକ୍ର, ଗଦା, ପଦ୍ମ
ଶୋଭୁଥାଏ ତୋର କର
କେ କହେ ହିରଣ୍ୟାସୁର ଅନ୍ତମାନ
ତୋର ହାତେ ଲମ୍ବମାନ ॥୨॥

ମୋତେ ମୁଁ ଦେଖିନି ତୋତେ ଦେଖିବାକୁ
କାହିଁକି ଦେଉ କାମନା
ମୋ ଭିତରେ ତତେ ଦେଖିବାର ପାଇଁ
କରିନାହିଁ କେହି ମନା
ମୋ ଅନ୍ତରେ ଥାଇ ଆଉ ଲୁଚ ନାହିଁ
ହୁଅ ହୁଅ ଦୃଶ୍ୟମାନ ॥୩॥
ଭୂଢା- ଆସ ବସ ପ୍ରଭୁ ହୃଦୟାସନେ
ଦେଖୁଥିବି ମନଭରି
ଦିଅ ସେ ଶକତି ଆହେ ପ୍ରାଣପତି
ନି ଦିଶୁ ରୂପ କାହାରି ॥



-୩୮-

## ଡାକିଛି...ଯେତିକି ଜାଣେ

ଡାକିଛି.....ଯେତିକି ଜାଣେ (ହେ ପ୍ରଭୁ)
ଜାଣେ ନାହିଁ ଖାଲି ସେଇ ଡାକ ସବୁ
ପଡ଼େ କିନା ତୁମ କାନେ ॥୦॥
ଦେହଟାଏ ଦେଇ ଦେଲ କାହିଁ ପାଇଁ
ବାର ବୁଲା ମନ ଗୋଟାଏ
ଚଲାବାଟେ ଯେତେ ଛୋଟ ବଡ଼ ଭେଟେ
ଗୋଟି ଗୋଟି ସବୁ ଗୋଟାଏ
ତୁମ କଥା ଛାଡ଼ି ଆଉ କଥାରେ ସେ
ଲାଗେ ମୋ ମନା କି ମାନେ ॥୧॥
ତୁମ କରୁଣାରେ କି ହୁଏ ଜାଣେନା
ତଥାପି ତାହାରି ଆଶାରେ
ଯୁହାରିଛି କେତେ ଗୁହାରିଛି କେତେ
ଯେତେ ଜାଣେ ସେତେ ଭାଷାରେ

ତୁମ କରୁଣାର ଅନୁଭୂତି କେବେ
ପାଇଲି ନାହିଁ ତ ଦିନେ ॥୨॥
ନ ଶୁଣିଲେ ନାହିଁ ଡ଼ାକିବାର ପାଇଁ
ନ ସରୁ କେବେ ସରାଗ
ତୁମର ମୋହର ଡ଼ାକେବାଟ ଦୂର
ଏ ଭାବ ରହୁ ସଜାଗ
ମୋହ କରଣିରେ ତୁମରି କରୁଣା
ମିଶିଥାଉ ଅନୁକ୍ଷଣେ ॥୩॥
ଦୁହା- ଡ଼ାକରେ ଭାଇ ଜଗତର ଧବ ମାଧବଙ୍କୁ
ନିତ୍ୟ ନୂତନ ସଦା ସନାତନ ଅଭିରାମ ସେ ଅଭିନବଙ୍କୁ ॥
ନ ଶୁଣିଲେ ନାହିଁ ହେ ହରି ଡ଼ାକୁଥିବି ରାମକୃଷ୍ଣ ମୁରାରୀ
ଗୋପାଳ ଗୋବିନ୍ଦ ଶ୍ରୀପରମାନନ୍ଦ ହୃଦ ବୃନ୍ଦାବନ ମୁରଲୀ ଧାରୀ ॥



-୩୯-

## ଶ୍ୟାମଙ୍କୁ ପାଇବା ପାଇଁ

ଶ୍ୟାମକୁ ପାଇବା ପାଇଁ କେତେ କାହିଁ ଖୋଜିଲି
ଶ୍ୟାମ ପାଶେ ଉଭା ହେଲେ ନିଜେ ଆଖି ବୁଜିଲି ॥୦॥
ମନ ଆକାଶର ତଳେ ଉଇଁ ଉଇଁ ଆସେ ଚ଼ାନ୍ଦ
ରହି ରହି ଭାସି ଆସେ ଭାନୁ ନନ୍ଦିନୀର କାନ୍ଦ
ସୁରେଲି ମୁରଲୀ ସୁର ବରଷାରେ ଭିଜିଲି ॥୧॥
ତରଳ ଲହରୀ ପରି କାର ଏ କରୁଣ ଗୀତି
ଦେହ କାରାବାସେ ବସି ବାହୁନେ କେ ନିତି ନିତି
ଯମୁନା ଏ ପାରି ତାରେ ନିଜତାରେ ମଜ୍ଜିଲି ॥୨॥
ନିଜତା ନିଧିକୁ ନେଇ ଧନବାନ ଅଭିମାନ
ଅଭାଜୁକେ ମାଗିଚ଼ାଲେ ସୁମରି ନିଜତା ମାନ
ତାହା ପଛେ ଗଲିଖାଲି ରାଧାରେ ନ ହେଜିଲି ॥୩॥

ତୁହ୍ମା- ଶ୍ୟାମ ନାମ ଦିନେ ଜପିନାହିଁ କେବେ ଜପିନାହିଁ
ଶ୍ୟାମ ନାମେ ଯେତେ ଦୋଷ ଦୂର ହୁଏ
ସେତେ ଦୋଷ କିଏ କରେ କାହିଁ ।।୧।।
ବିନା ପ୍ରେମେ ଖାଲି ଶ୍ୟାମ ଶ୍ୟାମ ହେଲି
କି କଲି ମୁଁ ମୋର ଶ୍ୟାମ ପାଇଁ ।।୧।।



-୪୦-

## କାଳିଆରେ...ତୋତେ କହିବି ବୋଲିରେ

କାଳିଆରେ.... ତୋତେ କହିବି ବୋଲିରେ କାଳିଆ
ଭାବିଥିଲି ଯେତେ ତୋତେ ଦେଖିଲାରୁ
ହୋଇଗଲା ସବୁ ଗୋଳିଆ ।।୦।।
କଳା ପାଇଁ କେତେ ଲୋଭିଲା ଆଖିତୋ
ଯେ ଦେଖିଛି ସିଏ ଜାଣେ
ଷୋଳ କଳା ଭରା କଳାମୁଖ ତୋର
ତୋତେ ଏକା ଖାଲି ମାନେ
କଣ୍ଠା କନ୍ଦରର କଳାକାର ତୁହିଁ
କାଳିନ୍ଦୀର କାଳି ଦଳିଆ ।।୧।।
କଳାଟିକେ କେବେ ଦେଇଥିଲୁ ବୋଲି
ନ ପାରିଲୁ ମନୁ ପାଶୋରି
ଗଲାବେଳେ କଳା ଫେରାଇବା ପାଇଁ
ଅର୍ଜ୍ଜୁନକୁ ନେଲୁ ଘୋଷାରି
ଗୁଞ୍ଜମାଳିଆ ତୁ ନିଳାଚଳିଆରେ
ଭବ ସାଗରର କାଳିଆ ।।୨।।
କଳାଟିକେ ଯାକୁ ଦେଉ ତାହାଠାରେ
ବୁଲାଉ ତୁ କଳାକନା
କେଡ଼େ କଳା ଲୋଭୀ ତାକୁଁ ସବୁ କଳା

ତୋହଠାରେ ଥାଉ ଜମା
ଯଦି କଳା ତହିଁ ତୋତେ ଦେଖି ଦେଖି
ହେଉଥାଏଁ ମୁହିଁ ହ୍ୱାଲିଆ ॥୩॥
ଦୁହା- କଳାମୁଖା ଜଗନ୍ନାଥ କରୁଣା କର ଏଥର
କଳାପ ଚୁଳିଆ କଳାକାହ୍ନୁ ରୂପ ଖୋଜିବୁଲେଁ ଜଗତର ॥୧॥
କରୁଣା କର ହେ କରୁଣାକର
କରୁଣ ଅଧମ ଜନେ କରୁଣାକର
କରୁଣା ନିଧାନ ପ୍ରଭୁ କରୁଣା କର ॥



-୪୧-

## ମୋ ମନ କୁଞ୍ଜ କାନନ

ମୋ ମନ କୁଞ୍ଜ କାନନ ଏ ମନ କୁଞ୍ଜ କାନନ
ବାଟ ଚାହିଁ ବସିଅଛି ଆସିବ ସେ କେଉଁ ଦିନ ॥୦॥
(ଅ) ନିକାରଣ ନୀରାଜନା ସାଜଧରି ଆରାଧିକା
ବାସ ଯୋଡ଼ି ବସିଅଛି କୁଞ୍ଜକଣରେ ରାଧିକା
ଗୋ କଥାରେ ଆନମନା ଆଉ ସବୁ ଗୋପୀଗଣ ॥୧॥
କେଉଁଦିନ ଆସିବ ସେ ଶରତର ରାକାରାତି
ଶ୍ୟାମଥିବ ଥିବ ରାଧା ଆଉ ନ ଥିବ ସାହାନ୍ତି
ଜୋଛନା ପଖାଳୁଥିବ ତମିସ୍ର ତମାଳ ବନ ॥୨॥
ଦୁହା- ତୋର ପଞ୍ଜୁରୀ ଫିଟାଇ ଦେରେ(ତାକୁ)
ମନ ଇଛା, ଗାଇଦେ
ରାମ କୃଷ୍ଣ ହରି ଗାଉ ମନ ଭରି (ତାକୁ)
ପ୍ରଭୁ ପାଦ ଧ୍ୟାଇ ଦେ ॥୦॥



-୪୨-

## ମୁକୁଳାଇ ଅଛ

ମୁକୁଳାଇ ଅଛ ମଞ୍ଜୁ ମୁରଲୀରୁ
କେତେ ମୃଦୁ ମଧୁ ମୁରୁଛନା ।
ଆଭୀରୀ ଅନ୍ତରୁ ଆବେଗ ଆହରି
ଅଲଗାଇ ଅଛ ଶୋଚନା ॥୦॥
ତରଙ୍ଗ ତୋଳିଛ କାଳିନ୍ଦୀର କୋଳେ
ପୁଲକ ପେଶିଛ ତମାଳର ଡ଼ାଳେ
ମୂର୍ଚ୍ଛ କରିଛ ରାଧିକାର ଭାଳେ ଅମୃତ ଯେତେ ଜଳପନା ॥୧॥
ଖୋଜାଇଛ ତାରେ ଘରା ଅନ୍ତରର
ଲୁଚାଇଛ ବୀଜ ଜପା ମନ୍ତରର
ତା କାନେ ଶୁଣିଛ ନିଜ ମୁରଲୀର ସବୁ କାଳର (ସେ) ଆଳାପନା ॥୨॥
ଚୁହା- ମନ ବୃନ୍ଦାବନ ଯିବା ହୋ
ମନ ବୃନ୍ଦାବନ ଯିବା ଆସ
ସେଠାରେ ଶ୍ରୀକୃଷ୍ଣ ରାଧିକା ସହିତ ଏକାଠି କରନ୍ତି ବାସ ॥୦॥
ଦୁହେଁ ମିଶି ତହିଁ ହୋଇଛନ୍ତି ଏକ
ଜଣେ ପୂଜା ଯେନେ ଅପର ପୂଜକ
ଜଣେ ସେଠି ଶବ୍ଦ ଶବ୍ଦ ସହିତରେ ରଚେ ରସ ଭରା ରାସ ॥୦॥

□ □ □

-୪୩-

## ଚାଲ - ଚଇତନରେ

ଚାଲ - ଚଇତନରେ ଫେରିଚାଲ ନିଜ ନିକେତନ,
ଆମେ ଏହି ହାଟ ମଝିଟାରେ ବସି
କେତେ ହେବା ହଟହଟାରେ
କେତେ ମିଠାକରି କଥା କହୁଥିଲୁ
କେତେ ଲାଗୁଥିଲା ଖଟାରେ

ଛନ୍ଦାଛନ୍ଦି ହୋଇ ଯିବା ଆମେ ଦୁଇ
କି କରିବୁ କରୁ ମନରେ ॥୧॥
ଏହି ହାଟ ବେଳେ ଯେଉଁ ଟଙ୍କା ଚଳେ
ଆମ ପାଖେ ନାହିଁ ତାହାରେ
ଅତି ସୁଲଭରେ ଯେ ଜିନିଷ ମିଳେ
ତାକୁ ନେଲେ ନାହିଁ ରାହାରେ
ବହୁଦୂର ଆମ ଘର ଏହିଠାରୁ
ଜାଣି ଚଳାଅ ଚରଣରେ ॥୨॥
ଭୁହା- ବାଟ ଖରଚ୍ ତୋ ହାଟରେ ଗଲା
କି ନେଇ ଫେରିବୁ ତୋ ବାଟ ଚଳା



-୪୪-

## ରାଧା ବସିଛି

ରାଧା ବସିଛି ମୋ ମନ ବୃନ୍ଦାବନ
ବହି ଯାଏ କେତେ କାଳ-କାଳନ୍ଦୀରେ ଯେତେ ଜଳ
କରିଛି ପ୍ଲାବନ ॥୦॥
ରସଭରା ଫଗୁଣର କେତେ ଶେଷ ବାସର
ବାସ ଭରା ବସନ୍ତର କେତେ ଫଗୁ ଆସର
ଆସିଛି ଯାଇଛି ଚାଲି - ପୋଛିଛି ମୋ ରାଧାଖାଲି
ଲୁହ ଲିପା ଲପନ ॥୧॥
ପତି ତନୟର ତନୁ କୋଳୁ ନ ପାରେ ଉତାରି
ଦେହ ଗେହ ବୋଝ ଘାରେ ତାହାର ମରମେ ଭାରି
ଦିବସ ଯାମିନୀ ଯେତେ - ତାକୁ ଘାରୁ ଥାଏ ସେତେ
କାହିଁ ମୋର ଗୋଧନ ॥୨॥



-୪୫-

## ପ୍ରାଣ ପଞ୍ଜୁରୀରେ ବସି

ପ୍ରାଣ ପଞ୍ଜୁରୀରେ ବସି କୃଷ୍ଣ ନାମ ଶୁଏ ଘୋଷି
ଅବାରିତ ଦିବାନିଶି
ଅନାମୀ କେ ସାରିକା,
କେତେ ଯେ ପଞ୍ଜୁରୀ ଖାଲି କରି ଆସିଅଛି ଚାଲି
ସବୁ ଭୁଲି ଭୁଲି ନାହିଁ ଶ୍ୟାମ ନାମ ମାଳିକା ॥୦॥
ସମୟର ସାଗରରେ କେତେ ଉତଳା ଲହରୀ
ହାତପାଦ ଛାଟିପିଟି କାଟି ଆସିଛି ପହଁରି
କୂଳବତୀ କୂଳେ ଉଭା ସାଜି ଅଭିସାରିକା ॥୧॥
ମୋଜୀବନ ସାଥୀ କହ ଆସିବକି ଜୀବନରେ
ଏହିପରି ଦିନଟିଏ;
ତୁମ ସତ୍ତା ଖୋଜି ଖୋଜି ରାଧା ଯାଇଥିବ ହଜି
ହେଜିବାକୁ ନ ଥିବ ହେ କିଛି ହେଲେ ଚିହ୍ନଟିଏ ॥୦॥
ନୀର ହୋଇ ଥିବା ରହି ରୂପ-କଳସୀ ବୁକୁରେ
ଏକେ ଆନେ ନିରେଖିବା ଭାବନା ମନ ମୁକୁରେ
କେ କାହାକୁ ନ କହିବା ନିଜଠାରୁ ଭିନ୍ନଟିଏ ॥୧॥
ଦୁହା- ତୁମରି ବଡ଼ତି ଗାଇ ନ କରିବି ଅଭିମାନ
 ନିଜକୁ ମୁଁ ଛୋଟ କଲେ ହେବ ତୁମ ଅପମାନ
 ତୁମେ ବଡ଼ ହେବା ମିଛ, ମୁହିଁ ହେଲେ ଦୀନଟିଏ ॥୨॥

□ □ □

-୪୬-

## ହେ ରାଧାପତି

ହେ ରାଧାପତି
ମୋ ମନ ରାଧିକା ଝୁରେ ନିତି
ଜୀବନ ଯମୁନା କୂଳେ-ଆରତେ ନୀରବେ ବୁଲେ
ପିଇବାକୁ ତୋ ମୁରଲୀ ଗୀତି-ହେ ॥୦॥

ଘରେ ନ ରହଇ ମନ ଘୁରିବୁଲେ ବନବନ
ପାଇବାକୁ ତୋ ପରମ ପ୍ରୀତି ହେ ॥୧॥
ଆହେ ଗୋପ କଳାକର-ଥରେ ଏହି କୃପାକର
ତୁମ୍ଭେ ଦେହ ଗେହେ ଥିବା ଥିତି ॥୨॥
ଭୁହ୍ମା- ଆସ ଆସ ରାଧାଇଣ ହୃଦ ବୃନ୍ଦାବନେ
ଅପଲକେ ଚାହେଁ ଆସ ଚପଳ ଚରଣେ
ରାଧାରାଣୀ ଅଛି ମୋ ଅନ୍ତପୁରେ
ପାଶେ ଥାଇ ଜାଣି ଖୋଜଇ ଦୂରେ

□ □ □

(ସମାପ୍ତ)

(ସଂକୀର୍ତ୍ତନ୍ୟ ଗୀତର 'କୃଷ୍ଣ ଜନ୍ମ', 'ରାଧା ସନ୍ନ୍ୟାସ' ଓ 'ଶରତ୍ ରାସ'ର ଲେଖା ସମୟ ୧୯୪୪ ପରଠାରୁ ୧୯୭୦ ପର୍ଯ୍ୟନ୍ତ। ଅର୍ଘ୍ୟଧାରା ହେଲା ୧୯୮୦ ଦଶକର ଲେଖା।)

# ଶବରୀ ସନ୍ଦେଶ

-୧-

## ଶ୍ୟାମ ଦୂର୍ବାଦଳ

(ରାଗ-ମଙ୍ଗଳ କାମୋଦୀ)

ଶ୍ୟାମ ଦୂର୍ବାଦଳ ନବଜଳଧର ବରନ ନେଇ ବିଶ୍ୱେଶ ।
ଶ୍ରୀତନୁ କାନ୍ତିରେ ତୁଳି ବିଭ୍ରାନ୍ତିରେ ଅର୍ଜ୍ଜିବି ସିନା ଅଯଶ

ଶାନ୍ତାକାର ! ଶ୍ରୀରୂପ ନ ଦେଖି ଲେଶ,
ଶୁଣା କାହାଣୀରେ ବଣା ହୋଇ ପ୍ରଭୁ ! ଆପଣାଇବି କି କ୍ଳେଶ ? ।୧।

ଶର୍ବରୀଶ ଶୋଭା ଜଗନ୍ନୟନଲୋଭା ବୋଲି କି ମୁଁ ଜଗଦୀଶ
ଶ୍ରୀମୁଖ-ସୌମ୍ୟତା ସହିତ ସମତା ରଖି ନ ହେବି ହତାଶ ?

ଶଶଧର, ଶ୍ରୀପଦ-ନଖ ପ୍ରକାଶ
ଶିରେ ଘେନିବାକୁ ଶିର ପିଟି, ଶିର-ସର୍ବସ୍ୱେ ଲଭେ ବିନାଶ ।୨।

ଶ୍ରମ କରି କେତେ ଶ୍ରମଣ ସମାଜ ଭ୍ରମଣେ ରଖି ଆବେଶ
ଶାସ୍ତ୍ର ପୁରାଣକୁ ଶସ୍ତ କରି ବି ତ ନ ଦେଖନ୍ତି ତୁମ ବେଶ

ଶ୍ରୀବଲ୍ଲଭ ! ଶୁଦ୍ଧିତା, ସୁଚିନ୍ତ ପାଶ
ଶକତ କରି ଯେ ଭକତି ରଖଇ ତାହାକୁ ଦିଅ ଦରଶ ।୩।

ଶବରୀ ଲଳନା ଶ୍ରୀଗୁରୁ-କରୁଣା ପାଇ ପାଇଲା ନିର୍ଦ୍ଦେଶ
"ଶୁଦ୍ଧଥିଲେ ମନ ନିଜେ ଭଗବାନ ପୁରେ କରିବେ ପ୍ରବେଶ"

ଶ୍ରୀରାଘବ ! ଶୁଦ୍ରା ନାରୀ ସେ ବାଳୀଶ
ଶ୍ରୀମୁଖେ କ୍ଷେପିଲ ଶ୍ରମାହୃତ ଫଳ ଦେଲା ଯା ଚାଖି ଅବଶ୍ୟ ।୪।
ଶ୍ରୀରାମ ତନୁଜ ବିଦ୍ୟାଧର ଦ୍ୱିଜ ତାହାଙ୍କ ସୁତ ସୁଧୀଶ
ଶ୍ରୀଦୋଳାମଣିଙ୍କ ସୁତ ହେମଚନ୍ଦ୍ର ସଦା ଅଜ୍ଞତା-ବିବଶ

ଶ୍ରମକୁଣ୍ଠ ଶାସ୍ତ୍ରଜ୍ଞାନ ନାହିଁ ଲେଶ,
ଶୁଦ୍ଧ ହୃଦୟରେ ଭଜିନାହିଁ କେବେ ନେଉଛି ଲେଖିବା କ୍ଳେଶ ।୫।



-୨-

## ଶ୍ରୀରାମ ଆରାମ ସାରି

### (ରାଗ-ବସନ୍ତ)

ଶ୍ରୀରାମ ଆରାମ ସାରି ଚିତ୍ରକୁଟେ ପଞ୍ଚବଟୀ କଲେ ପ୍ରବେଶ
ଶିରୀଷ ଶରୀରା ସୀତାଙ୍କୁ ହରାଇ ବିଷର୍ଣ୍ଣ ମନ ଅହର୍ନିଶ
ଶ୍ରୀକାନ୍ତ, ଶ୍ରମିବ ବୋଲି ମନ-କ୍ଲେଶ
ଶ୍ରମ ଭ୍ରମଣରେ ନ ମଣି, ମଣନ୍ତି କାନନ ଭଆସ ସଦୃଶ ।୧।

ଶୋଇଥାନ୍ତି କାହିଁ ପଥର ଉପରେ ଅନୁଶୋଚନା ନାହିଁ ଲେଶ
ଶେଯାଇ କୋମଳ ପତ୍ର, ଉପାଧାନ କରିଥାନ୍ତି ଶ୍ରୀକର-କୃଶ
ଶ୍ୟାମଳ ଶାଦ୍ୱଳେ କରି ଉପବେଶ
ଶୁଣିବାକୁ ସଦା ଚାହିଁ ବସିଥାନ୍ତି କହିବ କେ ପ୍ରିୟା ସନ୍ଦେଶ ।୨।

ଶଇଳ କେବେ ବା ଛବିଳ ଛୁଅଇ କରିବାକୁ ଦୁଃଖ ବିନାଶ
ଶଶି କରି ମଥାମଣି କି ରଜନୀ ନାଚି ନାଚି, ନୁହେଁ ନିରାଶ
ଶ୍ୟାମଳ ଶୋଭାରେ କାନନ ସୁବେଶ
ଶ୍ରୀପତି ଆଗରେ ଶିରୀ ପରଶଇ ରଚି ନୂତନ ପରିବେଶ ।୩।

ଶାନ୍ତ ହେବ ବୋଲି କାନ୍ତ ମନୋଦୁଃଖ ପ୍ରକୃତି କରି କରି ଆଶା
ଶୋଭାରାଣି ଆସେ ସକାଡ଼ି ସଜାଗ ରହୁଥିଲା ଦିବସ ନିଶା
ଶାଶ୍ୱତ ଶୁଭର ଯା ପାଦେ ପ୍ରକାଶ
ଶିବ ସୁନ୍ଦର ସତ୍ୟର ଯେ ମୂରତି ଅଶୁଭର କାହିଁ ସ୍ପରଣ ? ।୪।

ଶୁଦ୍ଧଚେତା ଊର୍ଦ୍ଧ୍ୱରେତା ତପୋନିଷ୍ଠ ଦେଖିବେ ସାକାରେ ବିଶ୍ୱେଶ
ଶତଶତ ବରଷରୁ ବଞ୍ଚିଛନ୍ତି କରିବେ କିପରି ନିରାଶ
ଶ୍ରୀରାମ ଶମନାଧୀନ ନରବେଶେ
ସଂସାରେ ସଂସାରେ ଦିନ କାଟୁଛନ୍ତି ନରୋଚିତ ଚିତ୍ତ-ଆବେଶେ ।୫।

□ □ □

-୩-

## ଶରତ୍‌ରେ ସୁଉଚ

### (ରାଗ-ବଙ୍ଗଳାଶ୍ରୀ)

ଶରତ୍‌ରେ ସୁଉଚ ସଂଯମରେ ସ୍ୱଚ୍ଛ ମତଙ୍ଗ ତୁଙ୍ଗ ତପୀଶ
ଶାନ୍ତ କ୍ଳାନ୍ତ ମନେ ରମ୍ୟକାନ୍ତ ବନେ ରମନ୍ତି ଶ୍ରୀ ପରମେଶ ।୧।

ଶ୍ୟାମ ବନାନୀର ସାମାଦି ଧ୍ୱନିରେ ନାଦିତ କରି ବାଗୀଶ
ଶିଷ୍ୟଙ୍କୁ ଆଶିଷ ଦେଇ ତାପସୀଶ ଥାଆନ୍ତି ଯୋଗେ ଯୋଗୀଶ ।୨।

ଶ୍ୱାପଦେ ନିରତ ହିଂସାରୁ ବିରତ ଥା'ନ୍ତି ତପୀ ଆଶୀଷାଶୀ
ଶାକାହାରେ ନିରାହାରେ ଶୋକ ନାହିଁ ହେଲେହେଁ ସେ ଆମିଷାଶୀ ।୩।

ଶୁକ ସାରୀ ପୀକ ମୟୂର ଡ଼ାହୁକ ଆଶ୍ରମରେ ନିରଙ୍କୁଶ
ଶ୍ଳୋକ ପାଠେ କଣ୍ଠ ମିଳାଇ ଆକଣ୍ଠ ପଢ଼ି ଅଭ୍ୟସ୍ତ କ୍ରମଶଃ ।୪।

ଶାଳ ପିଆଶାଳ ଅସନ ତମାଳ ମଥାରେ ଛୁଇଁ ଆକାଶ
ଶୀତଳ ଛାୟାରେ ଆଶ୍ରମ-କାୟାରେ ଓଢ଼ାନ୍ତି ବସ୍ତ୍ର ସଦୃଶ ।୫।

ଶ୍ରୀଫଳ ରସାଳ ବରକୋଳି ତାଳ-ଗଛ ସବୁ ପାଶେ ପାଶେ
ଶିରେ ଘେନି ଫଳ-ଭାର ଉଭାଥାନ୍ତି ଫଳାହାରୀ ସେବା ଆସେ ।୬।
ଶେଫାଳି, ଅଶୋକ, କୂଟଜ, କଦମ୍ବ, ମଲ୍ଲୀ, ମାଳତୀ, ପଲାଶ
ଶ୍ରଦ୍ଧାରେ ଯୋଗାନ୍ତି ଶକ୍ତି ଭକ୍ତି ନେଇ ସୁମନ ମୁକ୍ତା ସଂକାଶ ।୭।

ଶୀତ ଗ୍ରୀଷ୍ମାଦି ଋତୁ ଅନୁଯାୟୀ ଦେହ-ଗ୍ରାହ୍ୟ ପରିବେଶ
ଶାନ୍ତ ତପୋବନ ସାଉଁଚୁ ଥାଏ କି ପାଇ କାହାର ନିର୍ଦ୍ଦେଶ ।୮।

ଶରତରେ କାଶ-ହାସେ ହସିଦିଏ ବରଷ ଯାକର କୁଶ
ଶ୍ୟାମ ଦୂର୍ବା ନିତି ପ୍ରାନ୍ତରେ ସାଇତି, ଦିଏ ଯା ଲାଗେ ଅବଶ୍ୟ ।୯।

ଶୁଦ୍ଧ ନୀରାଧାର ପଦ୍ମ ସରୋବର ଥାଇ ଆଶ୍ରମ ପାରୁଶେ
ଶୀତଳ ସଲିଳ-ସଂପଦ ସଂପାଦେ ପ୍ରୟୋଜନରେ ପରଶେ ।୧୦।



-୪-

## ଶର୍ବରୀ ସରିନାହିଁ

### (ରାଗ କଳହଂସ କେଦାର)

ଶର୍ବରୀ ସରିନାହିଁ, ପ୍ରାଚୀ ଆକାଶେ
ଶୁଭ୍ର ପ୍ରଭାତୀ ତାରା ଏବେ ବିକାଶେ,
ଶ୍ୱାପଦ ନ ଶୋଇଣ ସ୍ୱଭାବ ବଶେ
ଶତ ଆରବେ ନିଶା ମାପ ପ୍ରକାଶେ ଯେ ।୧।

ଶୁଦ୍ଧ କାକଳି ମଧ୍ୟେ ବିହଙ୍ଗ ବଂଶ
ଶ୍ରୀପତି ନାମ ଜପେ ନୋହି ଅବଶ
ଶର୍ବରୀ, ଯିବେ ବୋଲି ପତି ଶୀତାଂଶୁ
ଶ୍ୟାମଳ-ପତ୍ର ନେତ୍ରେ ମୁଞ୍ଚଇ ଅଶ୍ରୁ ଯେ ।୨।

ଶ୍ରୁତି-ମଧୁର ଶ୍ରୁତି ପାଠେ ମୁନୀଶ
ଶୁଦ୍ଧ ହୃଦୟେ ସ୍ମରି ଶ୍ରୀ ଅବନୀଶ
ଶିଷ୍ୟେ ଉଠାନ୍ତି 'ଉଠ', ସରୁଛି ନିଶା
ଶୋଣିତାଭ ଦିଶିଲା ପୂରୁବ ଦିଶା ଯେ ।୩।

ଶରତ୍ ସନ୍ଧ୍ୟା ସରୁ ଏ ଅବକାଶେ
ଶୀଘ୍ର ପଶିଲେ ମୁନି ବନ-ପ୍ରଦେଶେ ।
ଶିଶୁ-ପାଦପ-ପାଦୁକା ପାଦ-ଦେଶେ
ଶିଷ୍ୟ-ପ୍ରମୁଖ ଚାଲେ ମୁନି ପାରୁଶେ ଯେ ।୪।

ଶ୍ରୀପତି ସ୍ମରି ଦିଅନ୍ତି ଉପଦେଶ
"ଶୁଣି, କହୁଛି ଯାହା ଗୁରୁ ଆଦେଶ
ଶୀଘ୍ର ବ୍ରହ୍ମ ଲୋକେ ସେ କରେ ପ୍ରବେଶ
ଶୁଦ୍ଧ କରେ ଯେ ଆଗେ ହୃଦୟ-ଦେଶ ଯେ ।୫।

ଶୁଚି ଅନ୍ତରେ ଲେଖି ଶ୍ରୀ ପରମେଶ
ଶ୍ରମରେ ପାଦେ ଗଲେ ସେ ନିଖିଳେଶ
ଶତ ପାଦେ ଆସନ୍ତି ପ୍ରାଣୀର ପାଶେ
ଶାନ୍ତିରେ ଜୀବ ପରମାତ୍ମାରେ ପଶେ ଯେ" ।୬।

ଶ୍ରାନ୍ତ ରମଣୀ କେହି ଋଷି ଅଦୃଶ୍ୟେ
ଶୁଣି ଗୁଣିଲା ଏ ବ୍ରହ୍ମ-ଉପଦେଶେ
ଶାମୁକା ଗର୍ଭେ ସ୍ୱାତୀ-ଜଳ ସଦୃଶ
ଶାନ୍ତ ଚିତ୍ତକୁ ଦେଲା ଏ ଉପଦେଶ ଯେ ।୭।

ଶିଷ୍ୟ ସହିତ ଗୁରୁ ସର ଉଦ୍ଦେଶ୍ୟେ
ଶୀଘ୍ର ତା' କରି ଯାଇଁ, ପାଦୁକା ସ୍ପର୍ଶେ
ଶିଳାଏ ଉଠି ବାଜେ ପାଦ ପାରୁଶେ
ଶୋଣିତ ବହି କଷ୍ଟ ଦେଲା ତପଶେ ଯେ ।୮।

ଶରୀର-କଷ୍ଟେ କାହିଁ ଗଣନ୍ତେ କ୍ଳେଶ
ଶୀଘ୍ର ଚଳିଲେ ପମ୍ପା ସରର ପାଶ
ଶ୍ରୀପାଦ-ଚିହ୍ନ ବାଛି ନେଇ ବାଳୀଶ
ଶିରେ ଘେନିବ ବୋଲି; କଲା ପ୍ରବେଶ ଯେ ।୯।

ଶ୍ରାନ୍ତ ରମଣୀ ଏକେ ଥିଲା ଅବଶ
ଶୋଣିତ ଦେଖି ବ୍ୟସ୍ତେ ବୋଲେ ବାଳୀଶ
"ଶିଳା ନ ବୁଝେ ଶୀଳ, କର୍ମ ଉଦ୍ଦେଶ୍ୟ
ଶ୍ରୀହରି-ସେବକରେ କରେ ବିବଶ ଯେ" ।୧୦।



-୫-

## ଶିଳା କଥା ଭାଳି

### (ରାଗ-ରାମକେରୀ)

ଶିଳା କଥା ଭାଳି ସୁଣୀଳା ଥିଲା ଅତି ବିବଶା
ଶିଥିଳ କରିବ କିପରି, ଭାବେ ଏହି ଦୁର୍ଦ୍ଦଶା ।୧।

"ଶମନ-ତାତ ନ ପହଞ୍ଚୁ ପୂରା ପୂରୁବ ଦିଶେ
ଶଯ୍ୟା ତେଜି ନିକେ ଆସିବ ପରିଷ୍କାର ଉଦେଶ୍ୟେ ।୨।

ଶାଣ ଦେଲା ପରି କଣ୍ଟକ ଶିଳା ସଂଗତେ ମିଶି
ଶତ ଶତ ଛନ୍ତି ସତତ ପାଦେ ଯିବାକୁ ପଶି" ।୩।

ଶୋଚି ଏହିପରି ସୁନ୍ଦରୀ ନିତି ନ ପାହୁଁ ନିଶା
ଶିଳା-କଣ୍ଟ-ପରିଷ୍କରଣ କରି ଦେଇଛି ନିଶା ।୪।

ଶୁଖିଲା ସମିଧ ଆହରି ଆହୁରି ଯଜ୍ଞ-ପାଶେ
ଶରଧାରେ ଥୋଇ ଆସଇ ଆଶ୍ରମିକ ଅଦୃଶ୍ୟେ ।୫।

ଶ୍ରମ କରି ସ୍ୱାର୍ଥ-ବିହୀନ-କର୍ମ୍ମେ କର୍ତ୍ତୃତ୍ୱ, ଯଶ
ଶାସ୍ତ୍ର କହେ ଯେହୁ ନ ଖୋଜେ ତାହା ସିନା ଆଦର୍ଶ ।୬।

ଶୁଦ୍ଧ ହୃଦେ କରି ଏ କାମ କିଛି ପାଇବା ଆଶା
ଶୂନ୍ୟ କରି ମନେ, କାନନେ ଯାପେ ଦିବସ-ନିଶା ।୭।

ଶିଷ୍ୟ ସହ ଋଷି ଜାଣିଲେ କେହି ଆସି ଅଦୃଶ୍ୟେ
ଶିଳା-କଣ୍ଟ-ହୀନ କରଇ ପଥ କେଉଁ ଉଦେଶ୍ୟେ ? ।୮।

ଶିଷ୍ୟ ଯେ ସମିଧ ଆହରେ କହେ ନମି ଯୋଗୀଶେ
"ଶୁଖିଲା ସମିଧ ମୋ ଆଗୁ କେହି ନିତି ପରଶେ" ।୯।

ଶୁକ୍ଳ ଶିର ଅଳ୍ପ ହଲାଇ ଋଷି ଦେଲେ ଆଦେଶ
ଶିଷ୍ୟମାନେ କାଲି ଧରନ୍ତୁ ତାକୁ ନ ଦେଇ କ୍ଲେଶ ।୧୦।



-୬-

## ଶୁଭ ଆଶ୍ରମେ

(ରାଗ-କେଦାର-କାମୋଦୀ)

ଶୁଭ ଆଶ୍ରମେ ଏବେ ପ୍ରଭାତ ପଶେ
ଶାନ୍ତ-ଦର୍ଶନ-ଯୋଗୀ ଦର୍ଶନ ଆଶେ ।୧।

ଶୀତଳ ବାତେ ଉଡ଼େ ତା' ଘନ-କେଶ
ଶୁଭ୍ର-ବାସ ବିସ୍ତାରେ ମସ୍ତକ ଦେଶ ।୨।

ଶୋଣିତାଭ ପରାଗ୍ନୀ-ଓଠେ ସୁବେଶୀ
ଶ୍ଳୋକ-କାକଳି ଛଳେ ସ୍ତୋତ୍ର ପ୍ରକାଶି ।୩।

ଶାନ୍ତ ଆଶ୍ରମ କାନ୍ତ ପଲ୍ଲବ-ଦୃଶା
ଶେଫାଳି-ପୁଷ୍ପାଞ୍ଜଳି ଦିଏ ସୁଯଶା ।୪।

ଶ୍ରୁତି ପାଠେ ସ୍ୱାଗତ କରି ମୁନୀଶ
ଶୁଣାନ୍ତି ଆସ ଉଷା ! ଜ୍ୟୋତି ପ୍ରକାଶ ।୫।

ଶରତ୍-ସନ୍ଧ୍ୟା ସାରି ପୂଜି ଯଜ୍ଞେଶ
ଶୁଦ୍ଧ ହୃଦୟେ ବସିଛନ୍ତି ତପୀଶ ।୬।

ଶିଷ୍ୟେ ନାରୀଏ ନେଇ କଲେ ପ୍ରବେଶ
ଶଙ୍କିତ ମୃଗ-ନେତ୍ରୀ ଆରଣ୍ୟ ବେଶ ।୭।

ଶ୍ରୀପାଦେ ପ୍ରଣମିଲା ଦଣ୍ଡ ସଦୃଶ
ଶ୍ରୀବତ୍ସ ସ୍ମରି ଆଶିଷିଲେ ସୁଧୀଶ ।୮।

ଶିଷ୍ୟେ କହନ୍ତି "ଏହି ନାରୀ ଅଦୃଶ୍ୟେ
ଶଂସିତ କାର୍ଯ୍ୟ କରେ କିବା ଉଦ୍ଦେଶ୍ୟେ" ।୯।

ଶଙ୍କାକୁଳ-ନୟନେ ଭାବ ନିରାଶ
ଶରୀରେ ଶିହରଣ ଘେନି ଅବଶ ।୧୦।

ଶ୍ରାନ୍ତ କଣ୍ଠରେ କିଛି କହିବା ଆଶେ
ଶ୍ରମ କରି ନ ପାରି ନିରାଶେ କାଶେ ।୧୧।

ଶ୍ରୀହସ୍ତ ପ୍ରସାରିଣ ଅଭୟ ଆଶା
ଶୁଣିଲା ମୁନି ଭାଷା- 'ନୁହ ବିବଶା' ।୧୨।



-୭-

## ଶୁକଳ ଶିରେ କର ବୁଲାଇ
(ରାଗ-କୁମ୍ଭ କାମୋଦୀ)

ଶୁକଳ ଶିରେ କର ବୁଲାଇ ଋଷିବର କହନ୍ତି ଦୟା ପରବଶ
"ଶୁଣ ପ୍ରିୟଦର୍ଶିନୀ ! ହେବ ଶୁଭଦାୟିନୀ ତୁମରି ସକଳ ଉଦ୍ଦେଶ୍ୟ ଗୋ
ଶୋଭନାଙ୍ଗୀ ! ଶ୍ରମ ଅଦୃଶ୍ୟ ଆଦରଣ
ଶୁଦ୍ଧ ସର୍ବଦା ତୋ ଉଦ୍ଦେଶ୍ୟ
ଶ୍ରଦ୍ଧାରେ କହ ବିନା ଦ୍ୱିଧାରେ ଗୋ ନବୀନା ତୋ ମନକଥା ତେଜି କ୍ଳେଶଗୋ
ଶ୍ରାବଣୀ ଧାରା ପରି ନେତ୍ରୁ ଲୋତକ ଝାରି କହଇ ଭୀତ ଏଣୀ ଦୃଶା
"ଶଇଳ ଅଛି ଏକ ଏଥୁଁ ପଥ ଅନେକ ସେଠାରେ କାଟି ବାଲ୍ୟ ଦଶାହେ
ଶୁଭଙ୍କର ! ଶଇଳ ବନଚାରୀ ବଂଶ
ଶବର କୁଳେ କର୍ମ-ବଶ
ଶଇଶବ ସାରିଲି ପରିଜନେ ଦେଖିଲି ସକଳେ କ୍ରୂର କରକଶ ହେ ।୨।
ଶରାସନରେ ଶର ବସାଇ ଦୂର୍ନିବାର ନିରୀହ ଜୀବେ କରି ନାଶ
ଶ୍ରଦ୍ଧାରେ ତା'ର ମାଂସ ଖାଆନ୍ତି, ସେ ନୃଶଂସ କରମ ଦେଖି ମୁଁ ବିବଶ ହେ
ଶୁଦ୍ଧଚେତା ! ଶରୀରେ ଯୌବନ ପ୍ରକାଶ
ଶୋଚି ପିତାମାତା ଅବଶ୍ୟ
ଶର-ଲକ୍ଷ୍ୟେ ପ୍ରବର ଦେଖି ଯୁବକେ ବର ବରିଥିବା କଲେ ପ୍ରକାଶ ହେ ।୩।
ଶୁଣି ମୁଁ ଏଇ କଥା ମନେ ଆସିଲା ବ୍ୟଥା, ଅହରହ ଆହାର ଆଶେ
ଶୂକର କୃଷ୍ଣ ସାର ଅବା ପକ୍ଷୀ ନିକର ପଡ଼ିବେ ସିନା ମୃତ୍ୟୁ-ପାଶେ ହେ
ଶୁଦ୍ଧ ଚେତା ! ଶରୀର ସବୁରେ ଦେବେଶ
ଶାନ୍ତିରେ ଥା'ନ୍ତି ଅହର୍ନିଶ

ଶୁଣି ଜାଣି କିପରି ରହିବି ଜୀବ ଧରି ଦେଖି ସେ ଜୀବ-ଧାରୀ ନାଶ ହେ ।୪।
ଶୋଚନା କଲି କେତେ କେବେ ଅବା କେମନ୍ତେ ମୁକତି ଲଭିବି ଏ ପାଶୁ
ଶ୍ରାନ୍ତ ହେଲା ମୋ ମନ କ୍ଲାନ୍ତ ହେଲା ଜୀବନ ସାର ହେଲା ମୁଞ୍ଚିବା ଅଶ୍ରୁ ହେ
ଶୁଷ୍କ ଦେହ ତା । ଶୂନ୍ୟ କଲି ଜୀବନ ଆଶା
ଶେଷ ହୋଇ ନ ଥିଲା ନିଶା
ଶରୀର-ପୋତ ଧରି ମନେ ହେଲି ନାଉରୀ ଆସିଲି, ମାଗେ ପଦ ଆଶ୍ରା ହେ ।୫।



-୮-

## ଶାପଭ୍ରଷ୍ଟ ଆତ୍ମଭ୍ରଷ୍ଟ କିଏ
### (ରାଗ-ବଙ୍ଗଳାଶ୍ରୀ)

ଶାପଭ୍ରଷ୍ଟ ଆତ୍ମଦ୍ରଷ୍ଟ କିଏ ତୁମେ ଆସିଛ ଏ ବନ ଦେଶ ।୧।
ଶୁକର ବିହଗ ନିକରେ ଯେ ଦେଖେ ନିରାକାର ଜଗଦୀଶ
ଶ୍ରୀହରି ସାକାର ରୂପ ଦେଖିବାକୁ କାହିଁ ବିଳମ୍ବର ଲେଶ? ।୨।
ଶରଣ-ବତ୍ସଳ ଚରଣେ ଶରଣ ଯେଉଁ ଜନ ଥରେ ପଶେ
ଶକ୍ତି କାହିଁ ତାକୁ ଶରଣ ଦେବାକୁ ବରେଣ୍ୟ ସେ ମୋର ପାଶେ ।୩।
ଶୁଦ୍ଧ ହେବ ମୋର ଆଶ୍ରିତ ଆଶ୍ରମ ପାଇଲେ ତୁମ ପରଶ
ଶକତି ଅଛି ଯେ ଭକତିରେ ତବ ଆଣିବ ଦିନେ ଦୀନେଶ ।୪ ।
ଶୂଦ୍ରା ନାରୀ ଭାବି ନିଜକୁ ଗୋ ଭଦ୍ରେ । ନକର ମନ ନିରାଶ
ଶୂରତା, ବୀରତା, ଜାତି, ପିତା, ମାତା ନ ବାରନ୍ତି ହୃଷିକେଶ ।୫।
ଶ୍ରେୟ ମଣିବ ମୋ ଆଶ୍ରମ ତୁମର ଉପସ୍ଥାନେ ଉପଦେଶେ
ଶୁଚିତା, ସଂଯମ ହେବ ପରୀକ୍ଷଣ ବାସ୍ତବେ ଅଛି ନା ବେଶେ ।୬।
ଶିବକୋଳେ ଶିବା ଥାଇ ରାତ୍ର ଦିବା ଜପୁଥାନ୍ତି ପରମେଶ
ଶ୍ରୀରାମ ଶ୍ୱଶୁର ମଣି ରାଜପୁର ରାଜର୍ଷି, ନୋହି ରାଜେଶ ।୭।
ଶ୍ରୀଧରେ ଧରେ ଯେ ହୃଦରେ ସାଦରେ ସେ ଭଗବାନ ସଦୃଶ
ଶିଷ୍ୟ ସମାଜ ମୋ ମାଜିନେବେ ମନ-ମୁକୁର ଭକତି ବଶ ।୮।
ଶ୍ରୀହରିଙ୍କ ସ୍ତୁତି ପାରେ ଯେ ସାଇତି ନିରକ୍ଷର ବିଜ୍ଞାନୀଶ

ଶ୍ରୁତି ପଢ଼ି ନିତି କରିଲେ ଅନୀତି ସୁକୃତିର ହୁଏ ନାଶ ।୯।
ଶତହ୍ରଦା ଜଳେ ଜଳଦର କୋଳେ ଜଳେ ନ ଲଭେ ବିନାଶ
ଶ୍ରମ କରମରେ କରି ବି ଭ୍ରମରେ ନୋହିବ କରମ ବଶ ।୧୦।
ଶୁଭର ସବିତା ହୋଇଲ ଉଦିତା ମୋର ଆଶ୍ରମ ଆକାଶେ
ଶୂନ୍ୟ ହେବ ସିନା ତିମିର ଯା ଅଛି ତୁମର ଶୁଦ୍ଧ ପ୍ରକାଶେ ।୧୧।
ଶାଳା ହେଉ ଏକ ହୁଅ ଆଶ୍ରମିକ ସୁଣୀଳା ନୁହଁ ବିମର୍ଶ
ଶଙ୍କା ହେଲେ ମନେ ନିଜ ପ୍ରୟୋଜନେ ନେବ ଦେବ ପରାମର୍ଶ ।୧୨।



-୯-

## ଶତ ଶତ ଋଷି ତପୀ

(ରାଗ-ତୋଷି)

ଶତ ଶତ ଋଷି ତପୀ ଶୁଦ୍ଧେ ବିଭୁନାମ ଜପି
ଶତକଳ୍ପ ସଂକଳପି ପ୍ରଭୁ ଦରଶ
"ଶମନ କରେ ଯେ ମନ ଶମନ କରେ ଦମନ
ଶରୀର ତା' ଇଚ୍ଛାଧୀନ" ମାନି ଆଦର୍ଶ
ଶାନ୍ତିରେ ପମ୍ପାସର ପାଶେ
ଶ୍ରାନ୍ତି ନ ଜାଣନ୍ତି ଥାଇ ଆଶ୍ରମୀ ବେଶେ ।୧ ।
ଶୁଣି ପାରିଲେ ସେ ଜାଣି "ଶବରୁଣୀ କେ ତରୁଣୀ
ଶ୍ରୁତିଜ୍ଞ ମତଙ୍ଗ ମୁନି ସ୍ୱୟଂ ନିଦେଶେ
ଶୁଦ୍ଧ ଆଶ୍ରମବାସରେ ଶୋଭିବ ନିଶିବାସରେ
ଶାଳା ହେଲା ଏ ପାଶରେ ତା'ର ଉଦ୍ଦେଶ୍ୟେ"
ଶୁଦ୍ଧ ବ୍ରହ୍ମଚାରୀଣୀ ବେଶେ
ଶାନ୍ତିରେ ରହିବ ପରା ଏ ବନ ଦେଶେ ।୨।
ଶୁଚିତାରେ ମାଜିମାଜି ଶୁଭ୍ରଯା'ର ଚିତ୍ତ ରାଜି
ଶଂସା ଯାଇଥାଏ ଭାଜି ହୃଦୟ ଦେଶେ
ଶ୍ରବଣ ଇନ୍ଦ୍ରିୟ ତା'ର ଶୁଣାଏ ସୁ ସମାଚାର
ଶୁଦ୍ଧଭାବେ ଅଗୋଚର ମନ୍ଦ ସନ୍ଦେଶେ

ଶୁଦ୍ଧ ନୁହେଁ ଯା'ର ଉଦ୍ଦେଶ୍ୟ
ଶଂସାଧୀନ ଚିତ୍ତବୃତ୍ତି କରେ ପ୍ରକାଶ ।୩।
ଶୁଭି ନ ଶୁଭିଲା ପରି ଶବଦେ କେ ବ୍ରହ୍ମଚାରୀ
ଶୁଣାଏ "ଆଶ୍ରମେ ନାରୀ ରଖି ତପୀଶ
ଶଉଚ-ସଂଯମ-ଧନ ଶଙ୍କାହୁଏ କଲେ କ୍ଷୁର୍ଣ୍ଣ
ଶିରୀ ସିନା ତପୋଧନ କଲେ ବିନାଶ
ଶୁଦ୍ରା ଯଦି ଆଶ୍ରମେ ପଶେ
ଶୁଣ ମୁଁ ରହିବି ନାହିଁ ଏ ବନ ଦେଶେ"।୪।
"ଶର୍ବରୀ ପାହୁଁ ଦିଶିବ ଶବରୀ ମୁଖ ଅଶିବ
ଶୁଭ କେବେ ପ୍ରକାଶିବ ଅଛି କି ଆଶା ?
ଶକତି ନାହିଁ କାହାର ଶରୀରଛାୟା ତାହାର
ଶୁଦ୍ଧବୋଲି କହିବାର, ସେ ଯେ ଅସ୍ପୃଶ୍ୟା
ଶରଣେ ରଖି ସେ ବାର୍ଷୀଶ
ଶାନ୍ତି-ସଉଧେ ମତଙ୍ଗ ଦେଲେ କୁଳିଶ ।୫।
ଶୁଣି ଏଡ ତପଚାରୀ ଶାନ୍ତହୃଦ ସୁବିଚାରୀ
ଶୁଣାଏ ହେ "ବ୍ରହ୍ମଚାରୀ ଅସ୍ପୃଶ୍ୟ ନାଶେ
ସ୍ଥାନଠୁ ବ୍ରହ୍ମ ପର୍ଯ୍ୟନ୍ତ ଶରୀରେ ଥାନ୍ତି ଅନନ୍ତ
ଶ୍ରୁତି ପୁରାଣ ସମସ୍ତ ଯାହା ପ୍ରକାଶେ;
ଶବରୀ ଶରୀର ବିଶ୍ଵେଶ,
ଶଙ୍କାକର, ତେଜିଛନ୍ତି ତେଣୁ ଅସ୍ପୃଶ୍ୟ ।୬।
ଶୁଦ୍ଧ-ହୃଦ ସମର୍ଥନ ଶଂସାଗ୍ରସ୍ତ କୁବଚନ
ଶୁଣି ନୁହେଁ ମୁନି ମନ ହୃଷ୍ଟ ବିମର୍ଷ
ଶଇଳେ ଅବା ସାଗରେ ଶରଧା ବା ହିଂସା କଲେ
ଶୋକ ସୁଖ କିଛି କରେ ନାହିଁ ପ୍ରକାଶ
ଶବରୀ ରହିବା ଉଦ୍ଦେଶ୍ୟ
ଶଂସାହୀନ ଥିଲେ ମୁନି ନିଜ ନିର୍ଦ୍ଦେଶେ ।୭।



-୧୦-

## ଶବରୀ ରହିଲା ଆଶ୍ରମେ

(ରାଗ-ରାମକେରୀ)

ଶବରୀ ରହିଲା ଆଶ୍ରମେ ବ୍ରହ୍ମଚାରିଣୀ ବେଶେ
ଶର୍ବରୀ ଦିବସ ଅନାଇଥାଏ ଗୁରୁ ନିଦେଶେ ।୧।
ଶ୍ରେୟ ମଣି ଗୁରୁ ବଚନେ କରେ ମନ ନିବେଶ
ଶୁଣିଲେ କାମକୁ ଆଣଇ ଯାହା ଗୁରୁ ଆଦେଶ ।୨।
ଶରୀର-ତୃଷ୍ଣା ତା' ଅଲକ୍ଷ୍ୟେ ଯାଏ ସଂଯମେ ନାଶ
ଶାରଦ-ନୀହାର ରହେ କି ଦେଖି ରବି ପ୍ରକାଶ ।୩।
ଶୁଦ୍ଧ ଯା ଆତ୍ମିକ ପିପାସା ପରମାତ୍ମାର ପାଶେ
ଶ୍ରଦ୍ଧାରେ ସମର୍ପି, ଶରଣ ଗୁରୁ ଚରଣେ ପଶେ ।୪।
ଶତ-କାଳ-ସିନ୍ଧୁ-ଲହରୀ ଯାଏ ତାକୁ ପରଶି
ଶିରନତେ ଥାଏ ନିଶ୍ଚଳ ହୁଏ କାଳ ଦରଶୀ ।୫।
ଶୁଭ୍ରଫେଣ ସିନା ରହଇ ଲାଗି ମସ୍ତକ ଦେଶେ
ଶୁକ୍ଳଶିର ତେଣୁ ଇତର ଜନ ନେତ୍ରରେ ଦିଶେ ।୬।
ଶର୍ବରୀ ଆଗମେ ମତଙ୍ଗ ଦିନେ ବସାଇ ପାଶେ
ଶ୍ରଦ୍ଧାରେ କହନ୍ତି, ଶୁଣ ମା ! ଯାହା ଏବେ ପ୍ରକାଶେ ।୭।
ଶୁଣାଇଛି ତୋତେ ଆଗରୁ ବିଭୁ ଦେବେ ଦରଶ
ଶକ୍ତ ପ୍ରତିବନ୍ଧେ ନ ହେବୁ କେବେ ଚ୍ୟୁତ-ଆଦର୍ଶ ।୮।
ଶ୍ରୀରାମ ଶରୀର ନେବେ ଗୋ ଆସି ସରଗ ଦେଶୁ
ଶୂନ୍ୟ କରି ନିଜ ଭବନ, ବୁଲିଯିବେ ତୋ ପାଶୁ ।୯।
ଶରୀର ସେଦିନ ତକ ମୋ ଥିବ ନାହିଁ ଏ ଆଶା
ଶାପ ଦେଇ ତପ ନାଶିଛି କ୍ରୋଧ ଦେଲା ଏ ଦଶା ।୧୦।
ଶକ୍ତ ଅନୁତାପ-ଅନଳ ଦହେ ହୃଦୟ-ଦେଶ
ଶରୀର ତେଜିବି ହେଜି ମୁଁ ମୋର ଅନ୍ତର୍ନିର୍ଦ୍ଦେଶ" ।୧୧।



-୧୧-

## ଶୁଣି ମୁନି ବାଣୀ

### (ରାଗ-ଶଙ୍କରାଭରଣ)

ଶୁଣି ମୁନି ବାଣୀ ବୋଲେ ବିନୟେ ବାଙ୍କୀଶ
ଶୁଦ୍ଧ ହୃଦେ କେବେ କ୍ରୋଧ କରିଲା ପ୍ରବେଶ ହେ
ଶାପ କେଉଁ ପରିବେଶେ,
ଶ୍ରୀମୁଖୁ ବାହାର ହେଲା କାହାର ଉଦ୍ଦେଶ୍ୟେ ହେ ।୧।
ଶୁଣିବାକୁ ଯୋଗ୍ୟା ଯଦି ମୁହିଁ ହେ ଯୋଗୀଶ
ଶାନ୍ତ ହେବ ଏ ଅଜ୍ଞାର ଆଗ୍ରହ ଅବଶ୍ୟ ହେ
ଶରଧାରେ ରଖି ଆଶା,
ଶ୍ରୀଚରଣେ ନିବେଦନ କଲି ତପୋଯଶା ହେ ।୨।
ଶବରୀର ନିବେଦନ ଶୁଣି ତାପସୀଶ
"ଶୁଣ" ବୋଲି ଗତକଥା କରିଲେ ପ୍ରକାଶ ଯେ
ଶିରେ ଥିଲେ ବି ଅଙ୍କୁଶ,
ଶିଥିଳ ଦେଖି ମାହୁନ୍ତେ କରୀ କରେ ନାଶ ଯେ ।୩।
ଶିଥିଳ ଥିଲି ମୁଁ ଦିନେ କ୍ରୋଧ କଲା ବଶ
ଶାପ ଦିଆଇ ସାଇଲା ମୋର ତପ-ଯଶ ଯେ
ଶ୍ରୀହରିଙ୍କ ସ୍ମୃତି-ଦେଶ
ଶୂନ୍ୟ କଲି ବୋଲି ତିଳେ ହୋଇଲି ବିବଶ ଯେ ।୪।
ଶଇଳ ଋଷ୍ୟମୂକରେ ମୂକ ତପ ଆଶେ
ଶର୍ବରୀ ଦିବସ ଯାପେ ସିଦ୍ଧିର ପକାଶେ ଯେ
ଶ୍ୱାପଦ ସେ ବନ ଦେଶେ
ଶାନ୍ତ କରି ପଡ଼ିଲି ମୁଁ ମନ-ପଶୁ-ପାଶେ ଯେ ।୫।
ଶକ୍ର-ସୁତ ବଳୀ ବାଳି ଋକ୍ଷ-କପି-ଈଶ
ଶର୍ବରୀଚର ଦୁନ୍ଦୁଭି ରଣେ କରି ନାଶ ଯେ
ଶରୀରର ଏକ ଅଂଶ
ଶୂନ୍ୟେ ନିକ୍ଷେପୁ ପଡ଼ିଲା ମୋ ଆଶ୍ରମ ଦେଶ ଯେ ।୬।

ଶୌଚ-ସ୍ନାନ-ସନ୍ଧ୍ୟା ସାରି ଫେରୁଁ କୁଟୀ ପାଶେ
ଶୋଣିତେ ପ୍ଲାବ କୁଟୀର ଦେଖି ମୁଁ ବିବଶ ଯେ
ଶୀଘ୍ରେ କ୍ରୋଧ କଲା ବଶ
ଶିଥିଳ ଖଳିକାରକୁ ସର୍ପର ସଦୃଶ ଯେ"।୭।
ଶାପ ଦେଲି "ଯେ ଏଠାକୁ ପିଙ୍ଗିଲା ଶବାଂଶ
ଶତଧା ବିଦୀର୍ଣ୍ଣ ହେବ କଲେ ସେ ପ୍ରବେଶ ଯେ
ଶ୍ୟାମ ଏ ଶଇଳ ଦେଶେ,
ଶମନ ସଜାଗ ରହୁ ତାହାରି ବିନାଶେ ଯେ।୮।
"ଶୁଣିଲ ତ ତପ କ୍ଷୟ କଲି କ୍ରୋଧ ବଶ
ଶରୀର ତେଜିବି ଏବେ ଭାବୁଛି ଅବଶ୍ୟ ଯେ
ଶୁଣ ମୋର ଉପଦେଶ
ଶୁଦ୍ଧ ଥିଲେ ହୃଦ, କ୍ରୋଧ ନ କରେ ପ୍ରବେଶ ଯେ।୯।
ଶାନ୍ତ ଶୁଦ୍ଧ ରହିଥିବ ସଦା ହୃଦ-ଦେଶ
ଶ୍ରୀହରି ମୂରତି ତହିଁ ଦେଖ ଅହର୍ନିଶ ଯେ
ଶାନ୍ତ ମୂର୍ତ୍ତି ସେ ବିଶ୍ୱେଶ
ଶରୀର ଧରି ହୋଇବେ ସମ୍ମୁଖେ ପ୍ରକାଶ ଯେ।୧୦।



-୧୨-

## ଶିରୀ ଥିଲା ପରି ନ ଲାଗେ

(ରାଗ-ବଙ୍ଗଳାଶ୍ରୀ)

ଶିରୀ ଥିଲା ପରି ନ ଲାଗେ ଆଶ୍ରମେ ତନୁତେଜୁ ସେ ତପୀଶ
ଶୂନ୍ୟ ଲାଗେ ପରା ମତଙ୍ଗ ଗଲାରୁ ସାରା ସେ କାନନ ଦେଶ।୧।
ଶୀବକହୀନ କେ ଜନନୀ ସମାନ ଆଶ୍ରମ ଝରାଏ ଅଶ୍ରୁ
ଶୀର୍ଣ୍ଣ ଦିଶୁଛନ୍ତି ଫଳ-ଫୁଲ-ଗଛ ବିଷର୍ଣ୍ଣ ବିହଗ-ପଶୁ।୨।

ଶାଳୀନତା ତଡ଼ି ମଳିନତାମାଡ଼ି ରହିଛି ଆଶ୍ରମ-ଦେଶ
ଶ୍ୱାପଦତା ଯାଇ ଶ୍ୱାପଦଙ୍କୁ ବଳି ପଶିଛି ମନୁଷ୍ୟ ପାଶ ।୩।
ଶିଷ୍ୟଙ୍କ ଶିଷ୍ଟତା ସିନା ବିଶିଷ୍ଟତା ଋଷି ସ୍ଥାପିତ ଆଦର୍ଶ
ଶିଥିଳ ହେବାରୁ ବିନୟଭାବରୁ କ୍ରୋଧ କରେ ନିଜ ବଶ ।୪।
ଶବରୀ ମାତର ସରଳ ଅନ୍ତର ସ୍ୱଚ୍ଛ କରି ଅହର୍ନିଶ
ଶ୍ରୀଗୁରୁ ମୂରତି ଥାପି ରଖି ରତି ପୂଜେ ଭଜେ ପ୍ରେମବଶ ।୫।
ଶ୍ରବଣାଦି ସବୁ ଇନ୍ଦ୍ରିୟ-ତୁରଗେ ଲଗାଇ ସଂଯମ-ରଶି
ଶରୀର-ଶକଟେ ଯୋଡ଼ିଣ ଆକଟେ ପରମାର୍ଥ ପଥେ ପଶି ।୬।
ଶକଟ ରକ୍ଷକ ରୂପରେ ବିବେକ ଜାଗ୍ରତ ଦିବସ ନିଶି
ଶିରୀପତି-ସ୍ତୋତ୍ର-ତୋତ୍ର ବେଳେ ବେଳେ ତୁରଗେ ଦିଏ ପରଶି ।୭।
ଶ୍ରାନ୍ତ ହେଲେ ବି ସେ ଭ୍ରାନ୍ତ ହୋଇ ଅଭିମାନ-ଅବାଟେ ନ ପଶେ
ଶ୍ରୀହରି ସ୍ମରଣେ ମାଜିନେଇ ମନେ ଲକ୍ଷ୍ୟରେ ପୁଣି ନିବେଶେ ।୮।
ଶ୍ୱାପଦ ସେ ପଥେ କାମ କ୍ରୋଧ ଆଦି ପ୍ରବେଶିଲେ ତାର ପାଶେ
ଶଙ୍କିତ ନ ହୋଇ ଶକ୍ତ କରି ବାନ୍ଧେ ଶଙ୍ଖଧାରୀ ନାମ ପାଶେ ।୯।
ଶତକାୟେ ଆସେ ମାୟା-ଡ଼କାୟତ କରିବାକୁ ନିଜ ବଶ
ଶ୍ରୀଗୁରୁ-କରୁଣା କବଚକୁ ଭେଦି ନ ପାରି ଫେରେ ବିମର୍ଶ ।୧୦ ।
ଶରୀର, ବୟସେ ପ୍ରବୃଦ୍ଧ ହେଲେହେଁ ମାନସ ଶିଶୁ ସଦୃଶ
ଶିଶୁ ସମ ଭାବେ ଧନ ଧୂଳିପରି ଧୂଳିକୁ ଧନ ସଂକାଶ ।୧୧।
ଶବ କରେ ଦେହ ଦୈହିକ ବିଷୟ ମାନସେ କଲେ ପ୍ରବେଶ
ଶ୍ୟାମ-ରାମ ମୂର୍ତ୍ତି ସ୍ମୃତିକି ଆସିଲେ ସ୍ଫୁର୍ତ୍ତିର ହୁଏ ପ୍ରକାଶ ।୧୨।
ଶ୍ରୀରାମ ମୂରତି କେବଳ ସଂପତ୍ତି କରି ରଖେ ହୃଦ ଦେଶେ
ଶଇଳ-ସରସୀ-ବନେ ଗଲେ ପଶି ନ ଛାଡ଼ଇ କେବେ ଲେଶେ ।୧୩।
ଶଫରୀ-ନୟନ ଯୁଗଳକୁ ସଦା ଶ୍ରୀରାମ-ରୂପ-ବଡ଼ଶୀ
ଶିଥିଳ ନ ହୁଏ ଅସ୍ଥିର ହେଲେ ବି ଶରୀର ତା’ ଦିବା ନିଶି ।୧୪।



-୧୩-

## ଶର୍ବରୀ ପଶୁଥିଲା

### (ରାଗ-କଳହଂସ କେଦାର)

ଶର୍ବରୀ ପଶୁଥିଲା ମହା ଆକାଶେ,
ଶୁଭ୍ର-ତାରକା-ରତ୍ନ ନେବାର ଆଶେ
ଶବଦେ ଜଣାଇଲେ ବିହଗ ବଂଶ
ଶୁଣି ଆକାଶ-ପତି କଲେ ପ୍ରବେଶ ଯେ ।୧।
ଶୀଘ୍ର ତାରକା-ରତ୍ନେ ଢ଼ାଙ୍କିଲେ ଅଂଶୁ
ଶୋଣିତାଭ ତପନ କ୍ରୋଧର ବଶୁ
ଶାସନ କଲେ ବୋଲି ଦେବ ଖରାଂଶୁ
ଶର୍ବରୀ ନେତ୍ରୁ ଝରେ ନୀହାର ଅଶ୍ରୁ ଯେ ।୨।
ଶିବାଦି ଜନ୍ତୁ ଦେଖି ବାନ୍ଧବ ଦଶା
ଶିହରି ଭୟେ ପରା ହେଲେ ବିବଶା
ଶଙ୍କିତ ରାବେ କଂପେ ଦିଶା ବିଦିଶା
ଶାନ୍ତ ନୋହିଛି ସିନା ଭୋଜନ ନିଶା ଯେ ।୩।
ଶେଫାଳି ପ୍ରତିବାଦ କରେ ଦିନେଶେ,
ଶରୀର ତେଜେ ଶେଷେ ଅତି ନିରାଶେ
ଶସ୍ତ୍ରରେ ବର୍ଣ୍ଣୀ ଯହିଁ ବଳ ପ୍ରକାଶେ
ଶ୍ଳାଘ୍ୟ ମଣେ ଦୁର୍ବଳ ଆତ୍ମ ବିନାଶେ ଯେ ।୪।
ଶଯ୍ୟା ତେଜି ତାପସୀ ସରସୀ ପାଶେ
ଶାନ୍ତନୁ-ପ୍ରିୟା ସ୍ମରି ସଲିଳେ ପଶେ;
ଶରୀର ଧୋଇ ଧୁଏ ଶୁକଳ କେଶ,
ଶୁଦ୍ଧ ସ୍ନାନ-ରସରେ କର୍ମ୍ମ ସଦୃଶ ଯେ ।୫।
ଶବଦ ବାରି ଦେଖେ ତଟ ପ୍ରଦେଶେ,
ଶ୍ମଶ୍ରୁବଦନ କିଏ ଆସି ପ୍ରବେଶେ
ଶିରରେ ଗୁଡ଼ା ହୋଇ ରହିଛି କେଶ,
ଶରୀରେ ରହିଅଛି ତାପସ ବେଶ ଯେ ।୬।
ଶୁଣିଥିଲା ସେ ଗୁରୁଙ୍କ ଉପଦେଶେ,

ଶ୍ରୀରାମ ଦେଖାଦେବେ ତାପସ ବେଶେ,
ଶୁଭ ଏ ପ୍ରାତେ ଅନାଥିନୀର ପାଶେ
ଶ୍ରୀନାଥ ଆସିଲେ କି ମନେ ପ୍ରକାଶେ ଯେ ।୭।
ଶୀଘ୍ର ଚଳିଲୁ ଉଠେ ତଟ ପ୍ରଦେଶେ,
ଶରୀର, ଆଗନ୍ତୁକ ଚରଣ ପାଶେ
ଶୁଆଇ ପ୍ରଣମିଲା ଦଣ୍ଡ ସଦୃଶ,
"ଶରଣ ରଖ" ପ୍ରଭୁ ! ହେ ଜଗଦୀଶ ଯେ ।୮।
ଶୂଦ୍ରା ସହଜେ ଜାତ ଶବର ଅଂଶୁ
ଶ୍ରବଣେ ପଡ଼ିନାହିଁ ଜ୍ଞାନାର୍କ-ଅଂଶୁ
ଶରଧା-ସାଧନାର ସଶି ନି ପାଶ;
"ଶରଣ ରଖ ପ୍ରଭୁ ! ହେ ଜଗଦୀଶ ଯେ" ।୯।
ଶ୍ରୁତି ଯା ନିଃଶ୍ୱାସରୁ ଲଭେ ପ୍ରକାଶ,
ଶିବାଦି ଦେବ ସ୍ତୁତି ନ କରେ ବଶ;
ଶୁଣାଇବି କି ସ୍ତୁତି ମୁଁ ଯେ ବାକ୍ହୀଣ,
"ଶରଣ ରଖ ପ୍ରଭୁ ! ହେ ଜଗଦୀଶ ଯେ ।୧୦।
ଶ୍ରେଷ୍ଠ ମୁଁ ଦୀନ ଜନ ମଧ୍ୟେ ଦୀନେଶ !
ଶୁଣିଛି ତୁମେ ଦୟାଳୁଙ୍କ ଅଧୀଶ;
ଶକତି ହୀନା ମୁଁ ତୁମେ ପରମେଶ,
"ଶରଣ ରଖ ପ୍ରଭୁ ! ହେ ଜଗଦୀଶ ଯେ" ।୧୧।
ଶାଶ୍ୱତ ସୁଖ-ଦାୟି ପଦ-ପରଶ,
ଶକ୍ରାଦି ସୁରେ ନ ଲଭିଣ, ନିରାଶ;
ଶବରୀ ଦ୍ୱାରେ ଯେବେ ଦେଲ ଦରଶ
"ଶରଣ ରଖ ପ୍ରଭୁ ହେ ଜଗଦୀଶ ଯେ" ।୧୨।
ଶିଥିଳ କଣ୍ଠ କ୍ରମେ ଆବେଗ ବଶୁ
ଶ୍ରାବଣୀ ଧାରା ସମ ଝରଇ ଅଶ୍ରୁ;
ଶୁଣିଲା ଆଗନ୍ତୁକ ବାଣୀ କର୍କଶ,
ଶରଣାଗତକୁ ମରଣ ସଦୃଶ ଯେ ।୧୩।



-୧୪-

## ନ ଜାଣୁ କି ନିଜେ

### (ରାଗ-ବଙ୍ଗଳାଶ୍ରୀ)

"ଶବରୀ ବର୍ବରୀ ନ ଜାଣୁ କି ନିଜେ ଆଜନ୍ମ ସଦା ଅସ୍ପୃଶ୍ୟା
ଶ୍ୱାନ ହୋଇ ହବି ପାନେ ଆଶାଦିଏ କେଉଁ ଅଭିମାନ-ନିଶା ।୧।
ଶ୍ୱଶୁରାଳୟ ଏ ନୁହଁଇ ତୋହର ଏଠିଥାନ୍ତି ତପୋଯଶା
ଶ୍ରୁତି-ପ୍ରତିକୂଳ କର୍ମ ଆଚରିଲେ ଲଭିବୁ ଅଶ୍ରୁତ ଦଶା ।୨।
ଶୁଦ୍ଧ ପୂତ ସବୁ ଅଶୁଦ୍ଧ ହୁଅଇ ଯାହାର ଛାୟା ପରଶେ
ଶଙ୍କା-ହୀନ-ଭାବେ ନିର୍ଜନେ ନୀରବେ ପୂତ ପମ୍ପାସରେ ପଶେ ।୩।
ଶରବ୍ୟ ହୋଇ ଏ ବାଣୀ-ବାଣ-ଗଣେ ତାପସୀ ନୁହେଁ ହତାଶ
ଶାନ୍ତ ତପସ୍ୱୀର ଯଜ୍ଞାହୁତି କାଳେ ପୀଡ଼ାପାଏ କି ହୁତାଶ ?।୪।
ଶୁଣିଥିଲା ଧ୍ରୁବ ତପସ୍ୟା ସମୟେ ପରିକ୍ଷିଲେ ପରମେଶ
ଶ୍ୱାପଦ ଭୁଜଙ୍ଗେ ଉଭାକରି, ପରେ ନିଜକୁ କଲେ ପ୍ରକାଶ ।୫।
"ଶ୍ରୀପତି ! ମୋ ପ୍ରତି ପରୀକ୍ଷା ଆଗରୁ ନିରୀକ୍ଷା କର ମୋ ଦଶା
ଶକ୍ତି ଦେଇ ନାହଁ, ଆସକ୍ତିରେ କାହିଁ ଉତ୍ତୀର୍ଣ୍ଣ ହେବାର ଆଶା ?।୬।
ଶିକାର କରୁଛି କାମନା-କିରାତ ହୋଇଗଲିଣି ଅବଶ
ଶରଣ ବତ୍ସଳ ! ଜାଣି, ମୁଁ ଶରଣ ପଶୁଛି ରଖ ଜୀବେଶ ।୭।
ଶବରୀର ମୁଖୁ ଭାଷା ନ ସରୁଣୁ ପଡ଼େ ବଚନ-କୁଳିଶ
"ଶୁଦ୍ଧ ବ୍ରହ୍ମଚାରୀ ମୁହିଁ, ଲୋ ଦୋଚାରୀ ! ହେବି କିମ୍ପା ତୋ ଜୀବେଶ ।୮।
ଶୀଘ୍ର ପଳା ଏଠୁ ଚେତାଇ କହୁଛି, ଚେତାହୀନ ତୁହିଁ ପଶୁ
ଶେଷ ସାବଧାନୀ ଏ ମୋର ଏ ସରେ ଆଉ ଯେପରି ନ ପଶୁ"।୯।
ଶୁଣି ଏହି ବାଣୀ ଭାବିଲା ରମଣୀ, ନୁହଁନ୍ତି ଏ ପରମେଶ;
ଶରୀରେ ସବୁରି ବିହରି କିପରି କହିବେ ନୁହେଁ ଜୀବେଶ ।୧୦।
ଶତ ଜଗତର କରତା ସର୍ଜନ୍ତି ଜୀବସଙ୍ଗେ ଜଳରାଶି
ଶ୍ରୁତି-ପ୍ରତିକୂଳ କର୍ମହେବ କିମ୍ପା ସେ ଜଳ ଦେଲେ ସ୍ପର୍ଶି ।୧୧।
ଶୁଦ୍ଧକରେ ପରା ଅଶୁଦ୍ଧକୁ ଜଳ ସେ କିମ୍ପା ହେବ ଅସ୍ପୃଶ୍ୟ
ଶିରୀଶ ହେ ! ଦେଖୁଥିବ ସବୁ ତମେ ହେଲେହେଁ ମୋର ଅଦୃଶ୍ୟ ।୧୨।

ଶୁଣାଉଛ ଯାହା ମୁଖୁ କଟୁବାଣୀ ତା'ଠି ଥିବ ଜଗଦୀଶ !
ଶକତି କାହିଁ ମୋ ବୁଝିବି କିପରି ? ତୁମରି ଯାହା ଉଦ୍ଦେଶ୍ୟ ।୧୩।
ଶକ୍ତ ପ୍ରତିବନ୍ଧେ କହିଥିଲେ ଗୁରୁ ନ ହେବୁ ଚ୍ୟୁତ-ଆଦର୍ଶ
ଶୁଣିଲି ମୁଁ ଯାହା ପ୍ରତିବାଦ କଲେ ଲଙ୍ଘିବି ଗୁରୁ ଆଦେଶ ।୧୪।
ଶବରୀ କରମ ଆଦରି ଚାଲିଲା ନୟନରୁ ଝରେ ଅଶ୍ରୁ
ଶୁଭୁ ନ ଥିଲା କି କହେ ଆଗନ୍ତୁକ ହଲାଇ ଅଳପ ଶ୍ମଶ୍ରୁ ।୧୫।
ଶକତିମୟ ହେ ! ଅଶକତ ମୁହିଁ ନ ପକାଅ ମାୟା-ପାଶେ
ଶବରୀକୁ ଆଉ ନ ଦେଖିବେ କେହି ଏହି ପମ୍ପାସର ପାଶେ ।୧୬।



-୧୫-

## ଶବରୀ ନୁହଇ ବିଷର୍ଣ୍ଣ

(ରାଗ-ରାମକେରୀ)

ଶବରୀ ନୁହଇ ବିଷର୍ଣ୍ଣ ଯା ହେଲା ସର ପାଶେ;
ଶୁଦ୍ଧ ସୁବର୍ଣ୍ଣ କି ମଳିନ ହୁଏ କେବେ ହୁତାଶେ ।୧।
ଶ୍ଳାଘିତା-ସୂରଯ ଉଜଳେ ଯାର ଚିତ୍ତ-ଆକାଶ
ଶତ୍ରୁ-ମିତ୍ର-ଭାବ ତିମିର ପାଏ ନାହିଁ ପ୍ରକାଶ ।୨।
ଶାନ୍ତାକାର-ଧ୍ୟାନେ ଅଶାନ୍ତ ରହେ କି ଅନ୍ତର୍ଦ୍ଦେଶ ?
ଶାନ୍ତି ସହଚରୀ ଥିଲେ କି ଦୁଃଖ କରେ ପ୍ରବେଶ ? ।୩।
ଶ୍ରଦ୍ଧାରେ ସମର୍ପି ପାରେ ଯେ କିଛି ନ ରଖି ଲେଶ
ଶେଷଶାୟୀ ଶେଷ କରନ୍ତି ତା'ର ଅଶେଷ କ୍ଳେଶ ।୪।
ଶଇଳେ ବୁଲଇ ତାପସୀ ହୋଇ ଭକ୍ତି-ବିବଶା
ଶ୍ଳଥକାୟେ ଶକ୍ତି ପରଶେ ବିଭୁ-ଦର୍ଶନ-ଆଶା ।୫।
ଶ୍ରୀରାମ କାନନେ ଥିବେ କି ? ତାଙ୍କ ଅଙ୍ଗ ପରଶି
ଶ୍ୟାମଳିମା ଲାଗି ରହିଛି ଗଛ ପତରେ ମିଶି ? ।୬।
ଶିରଜଟା ଦେଖି ଶଇଳେ ସାଜିଛନ୍ତି କି ବେଶେ ?

ଶୃଙ୍ଗରେ ଶୃଙ୍ଗାର ରଚନ୍ତି ଅନୁକୃତି ଆବେଶେ ।୬।
ଶରାସନ-ପ୍ରିୟ ଶ୍ରୀରାମ ଜାଣି ବିହଗ-ବଂଶ
ଶର ଭାବି ସରେ ଆସୀନ ବା'ରି ନ ପାରି 'ସ' 'ଶ' ।୮।
ଶ୍ରୁତି-ସୁଖକର-କାକଳି ଶୁଣି ଭାବେ ନାରୀଶ
ଶୁଭ ସ୍ୱାଗତିକା ଶୁଭେ କି ଜାଣି ପ୍ରଭୁ-ପ୍ରବେଶ ? ।୯।
ଶୁକ, ଶ୍ୟାମା ଆଉ ହରଜ ସଙ୍ଗେ ଠିଣ୍ଠିଣୀ ମିଶି
ଶ୍ୟାମ ରଙ୍ଗ ମାଖି, ଦେବେ କି ରାମ-ଲୀଳା ପରଶି ? ।୧୦।
ଶାଗୁଣାଦି ବଡ଼ ବିହଗେ ନିରେଖନ୍ତି ଆକାଶେ
ଶୁଣାଇବେ ପରା ମୋ ପ୍ରଭୁ ଯେବେ ଆସିବେ ପାଶେ ।୧୧।
ଶୂକରାଦି ମୃଗେ ଆଗରେ ଧାଇଁ ପଛେ ମୃଗେଶ
ଶୀଘ୍ରେ ଯାଆନ୍ତି କି ଦେଖିବେ ପ୍ରଭୁ କଲେ ପ୍ରବେଶ ? ।୧୨।
ଶଇଳ-ଝରଣା ନାଚଇ ନିଜ ଅରଣା-ବେଶେ
ଶୁଣାଏ କି କଥା ? ଶିଳାରେ ବାନ୍ଧି ପୀରତି ପଶେ ।୧୩।
ଶୁଭୁ ସେ ଶବଦ ତାପସୀ ଦିଏ ମନ ନିବେଶି
ଶ୍ରୀରାମ ଆସନ୍ତି ଅନୁଜେ ଅବା ସ୍ନେହ ପ୍ରକାଶି ।୧୪।
ଶ୍ୟାମଳ-ଗହଳ-କାନନ-ରନ୍ଧ୍ରେ, ଦୃଷ୍ଟି ନିବେଶି
ଶଂସା କରି କାହିଁ ଶ୍ରୀରାମ ଅଛନ୍ତି ଉପବେଶି; ।୧୫।
ଶ୍ରଦ୍ଧାରେ ଖୋଜନ୍ତି ସ୍ୱକୁଳ-ଗଉରବେ ଦିନେଶ,
ଶବରୀ ଭାବଇ ଦେଖିଣ ବନେ ରବି ପ୍ରକାଶ ।୧୬।
ଶିହରି ଯାଏ ସେ, ଭାବଇ ଯେବେ ଏ ଅବକାଶେ
ଶ୍ରୀହରି ପ୍ରବେଶି ଥିବେ ବା ଯଦି କୁଟୀର ପାଶେ ।୧୭।
ଶାପି ନିଜକୁ ମନେ ମନେ ସୁମରି ଅବଧେଶ
ଶୀଘ୍ର ଶୀଘ୍ର ପାଦ ଫେରାଏ ନିଜ କୁଟୀର ପାଶ ।୧୮।



-୧୬-

## ଶବରୀ ନ ଆସେ

### (ରାଗ-ବଙ୍ଗଳାଶ୍ରୀ)

ଶବରୀ ନ ଆସେ ପମ୍ପାସର ପାଶେ ବୁଲୁଥାଏ ବନ ଦେଶ
ଶାଣିତ ସେ ତିରସ୍କାର-ରୂପୀ ତୀର ବାରଇ ତା'ର ପ୍ରବେଶ ।୧।
ଶଶକ କେଶରୀ ଏକ ଘାଟେ ବାରି ପିଅନ୍ତି ତା' ପ୍ରୀତି ବଶ
ଶଙ୍କିତ ଯେ ପ୍ରାଣୀ ନ ପିଇଲେ ପାଣି ତେଜୁ ନ ଥାଏ ତା' ପାଶ ।୨।
ଶୁଦ୍ଧ ସୁନିର୍ମଳ ଥିଲା ସର-ଜଳ ତପସ୍ୱିନୀ କର-ସ୍ପର୍ଶେ
ଶଉଚ ଆଗରୁ ଅଶଉଚ ସବୁ ସଫାକରେ ଚତୁଃପାର୍ଶ୍ୱେ ।୩।
ଶତ ଶତ ଆଶ୍ରମିକ ପମ୍ପାସରେ ନିତି କଲେ ବି ପ୍ରବେଶ
ଶୋଚନା ନ ଥାଏ ଶୁଦ୍ଧ ରଖିବାକୁ ସରୋବର ପରିବେଶ ।୪।
ଶ୍ରମ ନ କଲେ କି ଅଭିମାନେ କା'ର ନିବାରିତ ହୁଏ କ୍ଲେଶ ?
ଶ୍ରମିକ ନ ହେଲେ ନୁହେଁ କି ବିଫଳ ଆଶ୍ରମିକର ଉଦ୍ଦେଶ୍ୟ ? ।୫।
ଶୁଦ୍ଧ ଜଳାଧାର ହେଲା ମଳାଧାର ଜନ୍ମିଲେ କୃମି କ୍ରମଶଃ
ଶୁଭିଲା ତାପସ ସମାଜ କହିବା ସଲିଳ ହେଲା ଅସ୍ପୃଶ୍ୟ ।୬।
ଶୁଦ୍ଧାଚାର ଅଭିମାନୀ ବ୍ରହ୍ମଚାରୀ ସଂଖ୍ୟାରେ ନ ଥିଲେ ବେଶି
ଶିଷ୍ଟାଚାରୀ ବହୁ ଯୋଗୀ ଜନ ଥିଲେ ପ୍ରକୃତ ତତ୍ତ୍ୱ-ଦରଶୀ ।୭।
ଶିର୍ଷାସନେ କେତେ ସହସ୍ର-ଶୀର୍ଷଙ୍କୁ ଧ୍ୟାୟିଲେଣି ବର୍ଷ ଦଶ
ଶତ ଶତ ଛନ୍ତି ଶତବର୍ଷ ହେବ ନ କରି ଜଳ ସ୍ପର୍ଶ ।୮।
ଶରୀରକୁ ପଞ୍ଚ ଦାହେ ଦାହି କେତେ ତାପସୀ ଆତ୍ମ ଦରଶୀ
ଶାନ୍ତ ଇନ୍ଦ୍ରିୟ ସେ ଶାନ୍ତକାମ ଯୋଗୀ ଥିଲେ ବିଭୁ ଦର୍ଶନାଶୀ ।୧୦।
ଶୁଣିଲେ ସମସ୍ତ ପମ୍ପା-ପୁଷ୍କରିଣୀ-ଜଳ ହେଲାଣି ଅସ୍ପୃଶ୍ୟ
ଶୁଣାଇଲେ ଏହା ଇଚ୍ଛା କରନ୍ତି ବା ଇଚ୍ଛାମୟ ସେ ଅଦୃଶ୍ୟ ।୧୧।
ଶୁଣି ସର-ନୀର ଅଯୋଗ୍ୟ ହେବାର ତପସ୍ୱିନୀ ଝାରେ ଅଶ୍ରୁ
ଶଙ୍କିତ-ତର୍କିତ-ଖଞ୍ଜନ-ଲାଞ୍ଛିତ-ନୟନ-ପଦ୍ମ ପଲାଶୁ ।୧୨।
ଶଇଳ-କାନନ ବୁଲେ ତପସ୍ୱିନୀ ଆଖି ଥାଏ ଦଶ ଦିଶେ
ଶ୍ୱାପଦ ବିହଗ ଯେ ଆଖିରେ ପଡ଼େ ରାମ ପରି ତାକୁ ଦିଶେ ।୧୩।
ଶାଖା ମୃଗ କାହିଁ ଶାଖାରୁ ଶାଖାକୁ ଡେଇଁଲେ ପ୍ରକୃତି ବଶ

"ଶ୍ରୀରାମଙ୍କ ଚର ଆସିଲେଣି" ବୋଲେ "ପ୍ରଭୁ କଲେଣି ପ୍ରବେଶ।୧୪।
ଶିଖରୀ-ଶିଖରେ ଶିଖି ଡ଼ାକ ଦେଲେ ଦେଖି ଜଳଦ ପ୍ରକାଶ
ଶାଖୀପରେ ଚଢ଼ି ଲୋଚକ ଆଖିରେ ନିରେଖି ଖୋଜେ ଆକାଶ।୧୫।
"ଶ୍ୟାମ ଜଳଧରେ ପ୍ରଭୁ ଅଙ୍ଗରଙ୍ଗ ମାଗିଲେଣି କରି ସ୍ପର୍ଶ।
ଶମ୍ପାଲୋକେ ପୁଣି ଖୋଜୁଛନ୍ତି ଅବା କାହିଁ ବୋଲି ଅବଧେଶ"।୧୬।
ଶ୍ରବଣେ ପଡ଼ିଲେ ପ୍ରସ୍ରବଣ-ଧ୍ୱନୀ ସଂଗୀତ-ସୁଧା ସଦୃଶ
"ଶୁଭେକି ଏ ପ୍ରଭୁ ସ୍ୱାଗତିକା-ଗୀତ ପ୍ରଭୁ ନୋହୁଁ ମୋର ଦୃଶ୍ୟ।୧୭।
ଶାଖାରୁ ଉତୁରି ଯାଉଣୁ ଦଉଡ଼ି ବନ୍ୟ-କଣ୍ଟାବୁଦା ସ୍ପର୍ଶେ
ଶରୀରରେ ଘେରା ବକଳ-ଦୁକୂଳ ଚିରି ଚିରେ କାୟ-କୃଶେ।୧୮।
ଶିଳାରେ ଝୁଣ୍ଟିଲେ "ଶିଳା ! ତୁ ସୁଶୀଳା ! ପ୍ରଭୁ ପାଦ-ପଦ୍ମ ସ୍ପର୍ଶ
ଶୁଣିଛି, ପାଇଛୁ ଭାଗ୍ୟବତୀ ବୋଲି ଆଲିଙ୍ଗଇ ପ୍ରେମ-ବଶ।୧୯।
ଶୁଭ୍ର-ସୁବାସିତ-ସୁମନ ସୁମନା-ନୟନରେ ହେଲେ ଦୃଶ୍ୟ
ଶାଳ-ପତ୍ରେ, ଫୁଲ ତୋଳି ସାଇତଇ ପ୍ରଭୁଙ୍କୁ କରିବ ବେଶ।୨୦।
ଶୁଦ୍ଧ-ସ୍ୱାଦୁକର-ଫଳ ଯହିଁ ଦେଖେ ତୋଳି ରଖେ ନିଜ ପାଶ
ଶ୍ରୀରାମ ଆସିବେ, ଖାଇବାକୁ କିଛି ଦେବ ତ ପୁଣି ଅବଶ୍ୟ।୨୧।
ଶାନ୍ତ ହୋଇଅଛି କ୍ଷୁଧା, କେତେ ଦିନୁ ପିପାସା ଯାଇଛି ନାଶ
ଶୟନ କଲେ ବି ନିଦ, ନିଦକରେ ପଶି ପାରେନାହିଁ ପାଶ।୨୨।
ଶ୍ୱାପଦେ ଶର୍ବରୀ ଆଗମନ-ବାର୍ତ୍ତା ଜଣାଉଁ, କୁଟୀର-ପାଶେ
ଶରୀରକୁ ଆଣି ଶଯ୍ୟାରେ ପକାଏ ରାମ ରଖି ହୃଦ-ଦେଶେ।୨୩।



-୧୭-

## ଶରୀର ଶଯ୍ୟାରେ

### (ରାଗ-ନଳିନୀ ଗୌଡ଼ା)

ଶରୀର ଶଯ୍ୟାରେ ଥୋଇ, ଭାବନା-ଆକାଶେ
ଶୀଘ୍ର ତପସ୍ୱିନୀ ମନ-ବିମାନେ ପ୍ରବେଶେ।୧।
ଶୁଚିତା ସ୍ୱଚ୍ଛତା ସଙ୍ଗେ ସରଳତା ମିଶି
ଶକ୍ତିଶାଳୀ କରେ ସେ ବିମାନେ ଦିବାନିଶି।୨।

ଶ୍ରୀରାମ-ରସରେ ରସାଣିତ ଚତୁଃପାର୍ଶ୍ୱ
ଶଙ୍କାହୀନେ ଚାଲେ ଯୋଦ୍ଧା ଲାଗେ ନାହିଁ ଅଶ୍ୱ ।୩।
ଶାନ୍ତିଦେବୀ ଥା'ନ୍ତି ବୋଲି ତା'ର ପାଶେ ପାଶେ
ଶ୍ରାନ୍ତି ଆସିଲେ ବି ଫେରିଯାଏ ସେ ହତାଶେ ।୪।
ଶଇଳ-କାନନ ଲଂଘି ବିମାନ ପ୍ରବେଶେ
ଶଇଶବ ପାରିଥିଲା ଯେଉଁ ବନଦେଶେ ।୫।
ଶିଶୁକାଳେ ଦେଖିଥିଲା ଯେଉଁ ସବୁ ଦୃଶ୍ୟ
ଶହ ଶହ ବର୍ଷପରେ ସେହିପରି ଦିଶେ ।୬।
ଶ୍ୱେତ କୃଷ୍ଣ ଆଦି ବର୍ଣ୍ଣ ଯାଇଛି ଅବଶ୍ୟ
ଶ୍ୟାମ ରଙ୍ଗେ ସେହିସବୁ ହେଉଛି ସୁଦୃଶ୍ୟ ।୭।
ଶବର-ପଲ୍ଲୀ ରହିଛି ସେ କାଳ ସଦୃଶ
ଶରୀରରେ କଳାକାଇ ହୁଏ ଯଥା ଦୃଶ୍ୟ ।୮।
ଶରାସନ ହସ୍ତେ ଯୁବାଜନ ସମାବେଶ
ଶର-ଲକ୍ଷ୍ୟ ପ୍ରବୀଣତା ପରୀକ୍ଷା ସକାଶ ।୯।
ଶର-ଲକ୍ଷ୍ୟ-ପ୍ରବର "ଏ ଯୁବା ବୀର-ବେଣୀ"
ଶବରୀ ବାଳା ଦେଖାନ୍ତି ଜଣକୁ ନିର୍ଦ୍ଦେଶି ।୧୦।
ଶୂରତା ଭରିଛି ଅଙ୍ଗେ ଶକ୍ତ ମାଂସପେଶୀ
ଶ୍ୟାମ-ସମୁଜ୍ଜ୍ୱଳ-ତନୁ ସୌନ୍ଦର୍ଯ୍ୟ ପ୍ରକାଶି ।୧୧।
ଶରାସନ କରେ ତୂଣୀର ତା' ପୃଷ୍ଠଦେଶେ
ଶାନ୍ତ ହେଲେ ବି ଗତିରେ ଜିଣଇ ମୃଗେଶେ ।୧୨।
"ଶର ସିଦ୍ଧିରେ ସଭିଙ୍କି କରିଛି ଅବଶ
ଶବର-ରାଜ-ତନୟା ଲଭିବ ଅବଶ୍ୟ"।୧୩।
ଶବରୀ ସୁନ୍ଦରୀ କରୁ ସଭାରେ ପ୍ରବେଶ
ଶୁଭିଲା, "ଧନ୍ୟ ବିଧାତା ଗଢ଼ିଛି ଏ ବେଶ"।୧୪।
"ଶିରୀଥିବା ସବୁ ଦ୍ରବ୍ୟ କରି ସମାବେଶ,
ଶୋଭନୀୟ ବାଛି ଅଙ୍ଗେ କଲା କି ନିବେଶ ?।୧୫।
ଶାରଦ ଚନ୍ଦ୍ର ରଖିଛି ଅବା ମୁଖ-ଦେଶେ
ଶ୍ରାବଣୀ ମେଘ ଆପଣା ମନେ ରହେ କେଶେ ।୧୬।

ଶକ୍ରଧନୁ ଭ୍ରୂଲତାରେ ରହିଲା ବିବଶେ
ଶଙ୍କା କରେ ମୃଗନେତ୍ର ରହିବାରୁ ପାଶେ ।୧୬।
ଶୁଭ୍ର-ମୋତି-ଦନ୍ତ ପନ୍ତି ମଧ୍ୟେ ଅଛି ପଶି
ଶବ୍ଦହୀନେ ଝରେ ମୁକ୍ତା ହସିଲେ ସୁକେଶୀ ।୧୮।
ଶରୀରରେ ତେଣୁ ରତ୍ନେ ଥାଇ ବି ନ ଦିଶେ
ଶୋଭା ବଢ଼ାଏ କି ଶଣା ରହି ଶଶି ପାଶେ ।୧୯।
ଶାଶ୍ୱତ ସୁଷମା ଅବା ଧରି ନାରୀ ବେଶ
ଶୁଭଯୋଗ ଜାଣି ଆଜି କଲା କି ପ୍ରବେଶ ?" ।୨୦।
ଶୋଭନାଙ୍ଗୀ ମାଙ୍କା ଦେଇ ଯୁବା-ଗଳା-ଦେଶେ
ଶ୍ରୀହସ୍ତ ଯୋଡ଼ି ପ୍ରଣାମ କରେ ଭକ୍ତି ବଶେ ।୨୧।
ଶୁଭଦୃଷ୍ଟି ପକାଉଣୁ ଜନ-ସମାବେଶେ
ଶଂପାରେ ବିସ୍ମିତ ନିଜେ ନିଜନେତ୍ରେ ଦିଶେ ।୨୨।
ଶର-ପ୍ରବର-ଯୁବକେ ଚିହ୍ନିଲା ନାରୀଶ
ଶୁଭକାମୀ ବାଛିଥିଲେ ହେବ ତା' ଜୀବେଶ ।୨୩।
ଶମ୍ପାସମ ଅନ୍ତର୍ହିତ ହେଉଁ ସମାବେଶ
ଶାନ୍ତ ଜନଶୂନ୍ୟ ହେଲା କ୍ରମେ ପରିବେଶ ।୨୪।
ଶୁଭମନେ ତପସ୍ୱିନୀ ଯୁବା ସଙ୍ଗେ ମିଶି
ଶ୍ୟାମଳ କାନନେ ନିକାଞ୍ଚନେ ଗଲେ ପଶି ।୨୫।
ଶବରୀ ଜୀବନ୍ତ ଦେଖେ ବନେ ପଶୁ ପଶୁ
ଶରାଘାତେ ମରିଥିଲେ ଯେ ବିହଗ-ପଶୁ ।୨୬।
ଶଙ୍କାହୀନେ ବୁଲୁଥିଲେ ତାଙ୍କ ପାଶେ ପାଶେ
ଶୁଦ୍ଧ ମାତୃସ୍ନେହ ଅବା ପାଇବାର ଆଶେ ।୨୭।
ଶୁଭେ ଏହିପରି ଗଲା କେତେ ଦିବାନିଶି
ଶରୀରେ ତା' ଦେଖେ ଗର୍ଭ ଲକ୍ଷଣ ପ୍ରକାଶି ।୨୮।
ଶୁଭଲଗ୍ନେ ଜାତ ହେଲା ରମ୍ୟ ଦିବ୍ୟଶିଶୁ
ଶୁଣା ରାମ-ରୂପ ଦେଖି ବହେ ଆନନ୍ଦାଶ୍ରୁ ।୨୯।
ଶ୍ଳଥ-ସ୍ତନୁ ଝରେ କ୍ଷୀର ବସ୍ତ୍ରଳତା ବଶୁ
ଶଯ୍ୟା ଚିହ୍ନୁ, ପଡ଼ିଗଲା ଭାବନା-ଆକାଶୁ ।୩୦।

□ □ □

-୧୮-

## ଶରୀରର ଅନୁଭୂତି କାହିଁ?

### (ରାଗ-ବଙ୍ଗଳାଶ୍ରୀ)

"ଶରୀରର ଅନୁଭୂତି କାହିଁ ? ଆଉ କାହିଁ ଭାବନା-ଆକାଶ ?
ଶ୍ଳଥ-ସ୍ତନ-କ୍ଷୀର ନୟନର ନୀର ବ୍ୟବଧାନ କଲା ନାଶ ।୧।
ଶାନ୍ତି ପାଇ ମଧ୍ୟ ଏ ମନ-ବାରଣ ବାରଣ ମାନେ ନା ଲେଶ
ଶରୀରେ ବିକାର ଜନ୍ମାଇ, ମୁଁ କାର ଦୃଢ଼ ରଖି ଦିଏ କ୍ଲେଶ ।୨।
ଶ୍ରୀରାମଙ୍କୁ ପର ନ ଭାବି ସେ ପର-ମାତ୍ମା-ଶ୍ୟାମ-ଅଙ୍ଗାକାଶେ
ଶୁଣିଛି ଯେମାନେ ମିଶନ୍ତି ଯେ ମନେ ମମତା ମୂଳୁ ବିନାଶେ ।୩।
ଶଇଶବୁ କାମନାର ଆବର୍ଜନା ସବୁ କରି ସମାବେଶ
ଶତ୍ରୁତା ସାଧୁଛି ଏ ମନ କି ଥୋଇ ନ ମିଳିବା ଫଳ ଆଶ ।୪।
ଶୁଦ୍ଧ ନୁହେଁ ମୋର ମନ, ତେଣୁ କାହିଁ କାହିଁ କରାଏ ପ୍ରବେଶ
ଶ୍ରୀରାମୁ ପ୍ରଭେଦ ରଖଇ ସେ କରି ମାୟା-ଜାୟା-ମାଆ ବେଶ ।୫।
ଶୂଦ୍ରା ନାରୀ ମୁହିଁ କିଛି ଜାଣି ନାହିଁ ଶୁଣିଛି ଯା ଉପଦେଶ
ଶ୍ରୁତି କହେ ଆତ୍ମା ପରମାତ୍ମା ମଧ୍ୟେ ପରଭେଦ ନାହିଁ ଲେଶ ।୬।
ଶଯ୍ୟାରେ ଏପରି ଭାବୁଛି ତାପସୀ ଉଠିଲେ ହୁଏ ଅବଶ
ଶର୍ବରୀ ବି ସରି ନାହିଁ ଦେଇଅଛି ଏବେ ଅରୁଣ ପ୍ରକାଶ ।୭।
ଶଶି ନାହିଁ ନଭେ ତମସା-ଗରଭେ ଅଛି ଧରଣୀ ଆକାଶ
ଶର୍ବରୀଚରଙ୍କ ଶବ୍ଦ ମଧ୍ୟେ ମଧ୍ୟେ ନୀରବତା କରେ ନାଶ ।୮।
ଶ୍ରୀରାମଙ୍କ ମାୟା ଏହିପରି ଜୀବ ଜଗତେ ଥାଏ ପ୍ରକାଶ
ଶର୍ବରୀଚରଙ୍କ ଶବ୍ଦ ପରି ଅହଙ୍କାର ଶାନ୍ତି କରେ ନାଶ ।୯।
ଶୁକ୍ର ଧ୍ରୁବ-ତାରା ପରି ଜ୍ଞାନ ଥାଏ ନିଜର ଦ୍ୟୁତି ପ୍ରକାଶି
ଶର୍ବରୀ ମାୟାର ଅନ୍ଧକାର ତାକୁ ପାରେ ନାହିଁ କେବେ ନାଶି ।୧୦।
"ଶବରୀ ମୁଁ କାହୁଁ ଅରଜିବି ଜ୍ଞାନ ଜାଣ ତୁମେ ଜଗଦୀଶ ।
ଶୁଣି ଜାଣିଛି ମୁଁ ତୁମେ ବା'ର ନାହିଁ କେ ଜ୍ଞାନୀ କିଏ ବାଳୀଶ ।୧୧।
ଶରୀର ମୋହର ଭାବନା ତୁମର ଆସ ଯିବା ଥରେ ମିଶି
ଶାଣିତ କୃପାଣ-ଧାର ଏ ସଂସାରେ ତୁମ ବଳେ ଯିବି ପଶି ।୧୨।

ଶତ ଅଜ୍ଞାନତା କି କରିପାରିବ ? ଚାଲିଲେ ତୁମ ଆଦେଶେ
ଶମନ-ଜନକ ଆଗମେ ତମସା ରହଇ କି କେଉଁ ଦେଶେ ?।୧୩।
ଶୀର୍ଣ୍ଣ-ତନୁ ଆଉ ଜୀର୍ଣ୍ଣ-ମନ ଦିନୁ ଦିନ କରୁଛି ନିରାଶ
ଶିରୀଶ ହେ କିସ ଲୁଚାଇବି ତୁମେ ସବୁ ଜାଣ ଜଗଦୀଶ।୧୪।
ଶିଥିଳ ନ ହେଉଁ ତୁମେ ଦେଇଥିବା ତୁମ ପ୍ରତି ମୋ ଆବେଶ
ଶ୍ରୀରାମ ଶରୀରେ ଅଭିରାମ ! ଥରେ ସତେ କରିବ ପ୍ରବେଶ ?।୧୫।
ଶୁଦ୍ଧ ଥିଲେ ମନ ଆସିବେ ଆପଣ ଥିଲା ଗୁରୁ-ଉପଦେଶ
ଶ୍ରୀଗୁରୁଙ୍କ କଥା ହେବାର ଅନ୍ୟଥା ଆଶଙ୍କା ନାହିଁ ମୋ ଲେଶ।୧୬।
ଶୋଧନ କିପରି ପାରିବି ମୁଁ କରି ମଳିନ ମୋ ମନ ଦେଶ
ଶୁଚି ନ ହେଲେ କି ରୁଚି ହେବ ପ୍ରଭୁ ! କରିବାକୁ ପରବେଶ।୧୭।
ଶୁଣିଛି ମୁଁ ତୁମେ ବିନା କାରଣରେ କର କରୁଣା ପ୍ରକାଶ
ଶୁଦ୍ଧ ଏହି ବାଣୀ ଯଦି ଚିନ୍ତାମଣି ! ମୁଁ କିମ୍ପା ହେବି ନିରାଶ ?"।୧୮।
ଶୁଭୁଁ ଏ ସମୟେ ବନ କୁକ୍କୁଟର ରାବ, ସରିବାର ନିଶା
ଶବରୀ ଜାଣିଣ ଶଯ୍ୟା ଛାଡ଼ି ଘାରେ ରାମ-ଦରଶନ ନିଶା।୧୯।
ଶିଖରୀ ଶିଖରେ ଖରା ପଡ଼ିଲାଣି କାକ ଡ଼ାକେ କରକଶ
"ଶୁଭ ଭାଇ ପରା ପରଶେ ଆଗରୁ ଆଗନ୍ତୁକର ସନ୍ଦେଶ"।୨୦।
ଶୁଷ୍କପତ୍ର ସଙ୍ଗେ ଆବର୍ଜନା ଯାହା କୁଟୀର ଆଗରେ ଦିଶେ
ଶ୍ରୀରାମ ଆସିଲେ କି ବୋଲିବେ ବୋଲି ପକାଇଦିଏ ଦୁତାଶେ।୨୧।
ଶୀଳ-କର୍ମ୍ମ ରଣେ ଥିଲା ଯା ସ୍ମରଣେ ଆବର୍ଜନାର ସାଦୃଶ୍ୟ
ଶବରୀ କି ନିଜ ଅଜାଣତେ ହେଲା ବିରାଗ-ବହ୍ନିରେ ପ୍ରାଣ ?।୨୨।
ଶୀଘ୍ର ଶୀଘ୍ର ଭିଜା ମାଟିରେ ପାରିଲା ପୀଠ ଆସନ ସଦୃଶ
ଶୁଦ୍ଧ ସୁନିର୍ମ୍ମଳେ କଲା ଲିପାପୋଛା ଦେଇ ଦେଇ କର ସ୍ପର୍ଶ।୨୩।
ଶାନ୍ତ ହୃଦେ ସେହିପରି ହେଲା ସରି ଆବେଗ ପୀଠ-ସଙ୍କାଶ
ଶକ୍ତିମୟୀ ଭକ୍ତିଦେବୀ ଲିପାପୋଛା-କାମେ ନିଯୁକ୍ତ ଅବଶ୍ୟ।୨୪।
ଶ୍ରୀଚରଣ ଧୋଇବାକୁ ଜଳ ଆଣି ରଖୁଁ କୁଟୀରର ପାଶେ
ଶବରୀର ନେତ୍ର-ପାତ୍ରେ ଜମେ ଜଳ ଶ୍ରୀପାଦ ଧୋଇବା ଆଶେ।୨୫।
ଶଇଳେ ପ୍ରାନ୍ତରେ ବୁଲେ ତରତରେ ଖୋଜି ସୁମନ ସୁଦୃଶ୍ୟ

ଶ୍ରୀରାମ ଆସିଲେ ରମଣୀୟ କରି କରିବ ପରା ସୁବେଶ ।୨୬।
ଶ୍ୟାମଳିମା-କୋଳେ ସୁଷମାର ଖେଳ ଦେଖି ଫୁଲ ସମାବେଶ;
"ଶ୍ୟାମ ରାମ-ଅଙ୍ଗେ" ଭାବେ "କେ ଆଗରୁ କରେ ଫୁଲ ବିନିବେଶ"
ଶାଖା ଚ୍ୟୁତ କରିବାକୁ କୁସୁମରେ ଛୁଏ ତା' କର ଅବଶ
ଶିଳ୍ପୀ ଖଚିଥିବା ଜିନିଷ ଖସାଇ ଖୋସି ଲାଭନାହିଁ ଲେଶ ।୨୮।
ଶ୍ୟାମତରୁ ଶାଖେ ପତ୍ର-ନେତ୍ରେ ଦେଖେ ପ୍ରକୃତି କୁସୁମ-ବେଣୀ
"ଶବରୀ ସଜନି" କହେ "ମୋ ଜବରୀ-ଫୁଲେ ଲୋଭାଅନା ବେଶି" ।୨୯।
"ଶ୍ରୀକାନ୍ତ ଏକାନ୍ତ ପ୍ରୀତିରେ ମୋ ପ୍ରତି ଆଦେଶିଛନ୍ତି ଏ ବେଶ
ଶୁଭକାମିନୀ ଗୋ ! ସୁମନ-କାମନା ତେଜି କମାଅ ମୋ କ୍ଲେଶ" ।୩୦।
"ଶଇଶବୁ ଅଛି ବାସନାର ଭସ୍ମ ଚିନ୍ତା ଯା ଫୁଲ ସଦୃଶ
ଶ୍ରୀରାମ ଚରଣେ ଅରପଣ କଲେ ଦୃଶ୍ୟ ହେବ ସେ ଅଦୃଶ୍ୟ" ।୩୧।
ଶୁଣି ବୁଝିଲା କି ତପସ୍ୱିନୀ ଏହି ପ୍ରକୃତି ଦିଆ ସନ୍ଦେଶ
ଶପଥ କରଇ ନ ତୋଳିବ ଫୁଲ ମାନି ତା' ଅର୍ଥନିର୍ଦ୍ଦେଶ ।୩୨।
ଶୁକ-ମୁଖ-ଚ୍ୟୁତ ଫଳେକ ପତିତ ହେଉଁ ଏବେ ତା'ର ପାଶେ
ଶବରୀ ଭାବଇ "ଭାବେ ଭାବଗ୍ରାହୀ ଆସିଲେ କି ଫଳ ଆଶେ" ।୩୩।
"ଶୁକ୍ଳ ଦ୍ୱିଜ ଦେହ ଧରନ୍ତି ବିଦେହ ରାଜ ଜେମା ଜୀବ ଈଶ
ଶରୀର ବଦଳି କଲେ ବି ଶ୍ରୀହରି, ରହିଛି ରଙ୍ଗରୁ ଲେଶ" ।୩୪।
ଶୋଣିତାଭ ଥିବ ଅଧର ତାଙ୍କର ଏଣୁ ସେ ରଙ୍ଗର ଅଂଶ
ଶୁକ୍ଳ ଚଞ୍ଚୁ ପାଇ ଏବେ ବି ରଖିଛି ସେ ରଙ୍ଗର ଅପଭ୍ରଂଶ ।୩୫।
ଶାଖେ ଶାଖେ ଫଳ ଲକ୍ଷ ଲକ୍ଷ ରଖି ନିରେଖନ୍ତି ନିଖିଳେଶ
ଶତ ଶତ ଜୀବ କେତେ ହରଷରେ ନିବାରନ୍ତି କ୍ଷୁଧା-କ୍ଲେଶ ।୩୬।
ଶ୍ୟାମାୟମାନ ସେ ଫଳରାଜି ଥାନ୍ତି ଝୁଲିଝୁଲି ତରୁ ଦେଶେ
ଶୁଦ୍ଧ-ଖାଦ୍ୟ ଯୋଗ୍ୟ ହେଲେ ଆପେ ଆପେ ଖସିଥାନ୍ତି କା' ନିଦେଶେ ।୩୭।
ଶିଶୁକାଳେ ସ୍ଥାନ ମାତୃକୋଳେ, ପରେ ଉଚିତ ଚରଣ-ଦେଶ
ଶିଷ୍ଟ ଜନେ ବାକ୍ୟ-ସମ୍ଭାର ନ ବାଢ଼ି ଦେଖାନ୍ତି କାମେ ଆଦର୍ଶ ।୩୮।
ଶରୀର ପରୋପକାରେ ଲଗାଇବେ ବୋଲି ପ୍ରଭୁ ପରମେଶ
ଶିରେ ପଦଧୂଳି ଘେନି ସୁମରନ୍ତି ଫଳ ରାମ-ଗୁଣ-ଯଶ ।୩୯।

ଶିଶୁ ମାତୃ-ସ୍ତନ ନ ଛାଡ଼ିଲା ପରି ଯେଉଁ ଫଳ ଡ଼ାଳେ ଦିଶେ
ଶକ୍ତ ରକ୍ଷୁ ତଳୁ ଟଣା ହୋଇଅଛି ହିଙ୍ଗିଡ଼ିଏ କେ ଅଦୃଶ୍ୟେ ।୪୦।
ଶାଖାଚ୍ୟୁତ ହେବା ଆଗୁ ବା ଅଚ୍ୟୁତ ଫଳ ପରୀକ୍ଷା ସକାଶେ
ଶୁକ ଆଦି ରୂପ ନେଇ ବୁଲନ୍ତି କି ? ଫଳଗଛ ପାଶେ ପାଶେ ।୪୧।
"ଶ୍ରୀରାମ ମୋ ଫଳ-ପ୍ରିୟ ଜାଣି କିମ୍ପା ନ ରଖିବି ଫଳ ପାଶେ"
ଶବରୀ ଏପରି ଭାବି ବୁଲି ବୁଲେ ଫଳ ସଂଗ୍ରହ ସକାଶେ ।୪୨।



-୧୯-

## ପମ୍ପାସର ପାଶେ

### (ରାଗ-କଲ୍ୟାଣ ଆହାରୀ)

ଶୁଣିଲା ଶ୍ରୀରାମ ପମ୍ପାସର ପାଶେ କରିବେ ଏବେ ପରବେଶ
ଶୀତରତୁ-ଚିତ୍ତ ହେଲା ପ୍ରଫୁଲ୍ଲିତ ଶୁଣୁ ଏ ଶୁଭ-ସନ୍ଦେଶ,
ଶୀଘ୍ର ବାହାର ହେଲା, ଯିବ ଦେଶ ବିଦେଶ
ଶୁଭ ଏ ବାରତା ପରଶି, ହରଷେ ହରିବ ଜନମନ-କ୍ଲେଶ ।୧।
ଶିହରଣ ନେଇ ତରୁଲତା ପାଇଁ ବସନ୍ତ କରୁଛି ପ୍ରବେଶ
ଶିରୀ ସବୁ ଜମା ହେଲେ ଅନୁପମା ପ୍ରକୃତି ହେବେ ବୋଲି ବେଶ
ଶ୍ୟାମ ରଙ୍ଗର ଅଙ୍ଗେ ଅଙ୍ଗେ ହେଲା ବିକାଶ
ଶ୍ରୀରାମ ଆସିବା ଆଗୁ ଅଙ୍ଗ-ରଙ୍ଗ ଆସିଲା କି ନେଇ ସନ୍ଦେଶ ? ।୨।
ଶ୍ରୀରାମ ସ୍ଥାବର ଜଙ୍ଗମେ, ଶରୀର ନ ଥାଇ ଅଛନ୍ତି ପ୍ରକାଶି
ଶୁଦ୍ଧ ଏହି ସତ୍ୟ କହିବା ନିମିତ୍ତ ଅଙ୍ଗ-ରଙ୍ଗ ଦେଲେ ବିକାଶି
ଶାଖୀ ସକଳେ ସାକ୍ଷୀ କଲେ କି ? ପରମେଶ
ଶ୍ୟାମ କିଶଳୟ-ରସନା ପ୍ରସାରି ତରୁ କଲେ ସତ୍ୟ ପ୍ରକାଶ ।୩।
ଶିରରେ ବଉଳ-କିରୀଟ, ମହୁଲ-ରସାଳ ଧରି ନବବେଶେ
ଶ୍ରୀରାମ ତ ରାଜ-ମୁକୁଟୁ ବଞ୍ଚିତ, ଏ ମୁକୁଟ ଦେବା ଉଦ୍ଦେଶ୍ୟେ
ଶୁଭ ସ୍ୱାଗତ ପିକ-ସ୍ୱରେ ପରା ପ୍ରକାଶେ

ଶ୍ୟାମା ପ୍ରକୃତିର ସ୍ମିତ ଉକୁଟ୍‌ଛି ଅଧର-ଅଶୋକ ପଲାଶେ।୪।
ଶୁଣାଇବ ରାମ-ବାରତା ମରୁତ ବୁଲିବେ କି ଅବଧ ଦେଶେ ?
ଶୀଘ୍ର ତେଣୁ ଗତି ବଦଳି ଦକ୍ଷିଣୁ ବହିଲାଣି ଉତ୍ତର ଦିଶେ
ଶୁଦ୍ଧ ସୁବାସ କାନନେ କାନନେ ପରଶେ
ଶଇଳେ ଶଇଳେ ଖୋଜେ କି ? ଆତ୍ମକେ ଆସେ କି ପରମାତ୍ମା ପାଶେ ।।୫।।
ଶ୍ରୁତ ହେଲା ଦ୍ରୁତ ଗତିରେ ତାପସ ସମାଜକୁ ଶୁଭ ସନ୍ଦେଶ
ଶୁଦ୍ଧ ଚେତା ଭରଦ୍ୱାଜ ଯାଜ୍ଞବଲ୍‌କ୍ୟ ଆଶ୍ରମେ କରି ପରବେଶ
ଶୁଭ ଆଶିଷ ମାଗି ଆସିଲେ ଅବଧେଶ
ଶାନ୍ତାକାର ଶାନ୍ତ ମନଙ୍କୁ ସମ୍ମାନ ଦେଖାଇ, ଦେଖାନ୍ତି ଆଦର୍ଶ।୬।
ଶୁଣି ଏହି ସମାଚାର କେଉଁ ତପୀ, ଅଭିମାନ ଚୂଳ ପ୍ରବେଶି
ଶୁଣାନ୍ତି ପାଶରେ ଥିବା ତାପସଙ୍କୁ "ମୋ ଠାରୁ ସାଧକ କେ ବେଶି ??"
ଶୁକ୍ଳ ମସ୍ତକେ ବନ୍ଧା ଜଟାଭାର ନିର୍ଦ୍ଦେଶି
ଶୁଣାନ୍ତି "ଯେତିକି କେଶ ଅଛି ସେତେ ବର୍ଷ ଯୋଗେ ଅଛି ମୁଁ ପଶି" ।୭।
ଶୁଭ୍ର ଭୂଲତାର କେଶେ ଦୃଙ୍ଗା ନେତ୍ର ବିସ୍ଫାରି କହେ କେ ଯୋଗୀଶ
"ଶତ ସମ୍ବତ୍ସର ନିରାହାରେ ଟାକି ରହିଛି ଆସିବେ ବିଶ୍ୱେଶ
ଶ୍ରୀପତି ଯେବେ ଆସନ୍ତି, ଆସିବେ ମୋ ପାଶ
ଶ୍ରୀରାମ ସତତ ଧ୍ୟାନଗମ୍ୟ ଜାଣି ପାତିଛି ପରା ଧ୍ୟାନ-ପାଶ"।୮।
ଶିଳାପରେ ବସି ସାଧକ କେ ଋଷିଭାବେ ତାପି ପଞ୍ଚ ହୁତାଶ
ଶତବର୍ଷ ମୋର ଗତ ହୋଇଅଛି ନ ବୁଝିବେ କି ପରମେଶ ?
ଶୁଭାଗମନ କରିବେ ଯେବେ ଜଗଦୀଶ,
ଶୁଦ୍ଧ ଆତ୍ମା ଜାଣି ସିନା ପରମାତ୍ମା ପ୍ରବେଶିବେ ଯାଇ ତା' ପାଶ।୯।
ଶଇଳ କନ୍ଦରେ ସଚ୍ଚିଦାନନ୍ଦରେ ଧ୍ୟାୟୀ ଯେ ରମନ୍ତି ରମେଶେ
ଶିର ଚକ୍ରେ ପ୍ରାଣ ନିରୋପି ଆପ୍ରାଣ ପ୍ରତୀକ୍ଷା କରନ୍ତି ପ୍ରାଣେଶେ
ଶ୍ରବଣେନ୍ଦ୍ରିୟ ରାମାଗମ-ବାର୍ତ୍ତା ପରଶୁ
ଶୁଷ୍କ ତନୁ-ତରୁ ରୋମାଞ୍ଚ ପଲ୍ଲବ ଧରେ ମାତ୍ର ହରଷ ବଶୁ।୧୦।
"ଶ୍ରୀରାମ ନ ଥିବା ସ୍ଥାନ କାହିଁ ? ରାମମୟ ପରା ଏ ସାରା ବିଶ୍ୱ"
ଶାନ୍ତ କେଉଁ ତପୀ କହେ "ଯେ ଅଶାନ୍ତ-ଇନ୍ଦ୍ରିୟ ତାକୁ ନୁହେଁ ଦୃଶ୍ୟ

ଶରୀର ନେଇ ଆସିବେ ଯେବେ ନିଖିଳେଶ
ଶଙ୍କାନାହିଁ ସେହିପରି ଦିଶୁଥିବେ ଧ୍ୟାନେ ଯେପରି ଥାନ୍ତି ଦୃଶ୍ୟ"।୧୧।
ଶାନ୍ତ ସମୁଦାର ବହୁ ମୁନି ଥିଲେ ରାମପଦେ ମନ ନିବେଶି
ଶରୀର ଶୋଭାରେ ଧାରଣା ତାଙ୍କରି କଦାପି ନ ଥିଲା ପ୍ରବେଶି
ଶତବରଷୁ ନିମୀଳିତ ନେତ୍ର, ବିବଶୁ
ଶ୍ରୀରାମ-ରୂପ-ରଚନ ଧରିବାକୁ ମାଜିହୁଏ ଘେନି ପ୍ରେମାଶ୍ରୁ।୧୨।
ଶବରୀ ଶ୍ରୁତିକି ଆସି ନ ଥିଲେ ବି ଶ୍ରୀରାମ ଆସିବା ସନ୍ଦେଶ
ଶର୍ବରୀ ଦିବସ ଦେଖେ ତପସ୍ୱିନୀ ଶ୍ରୀରାମ କଲେ କି ପ୍ରବେଶ ?
ଶୁଣଇ ଯାହା ଶୁଭେ ରାମବାଣୀ ସଦୃଶ
ଶୋଭାର ଆଧାର ଉଭା ହେଲେ ଭାବି ଭାବରେ ହୁଅଇ ବିବଶ।୧୩।
ଶ୍ରୀରାମଙ୍କ ଉପସ୍ଥାନ ଉପଲବ୍ଧି କରି ନ ବା'ରି ଦିବାନିଶି
ଶ୍ରମେ ସଂଗୃହୀତ ଫଳ ତ୍ୱରେ ଆଣି ପତର-ବାସନେ ପରଶି
ଶ୍ରୁତି ପାତଇ ପ୍ରଭୁ-ଭାଷାରେ କରି ଆଶା
ଶୂନ୍ୟ ! ଦେଖି ତା'ର ଦେଖିଥିବା ସ୍ଥାନ କହି ନୋହିବ ମନ-ଦଶା।୧୪।
ଶିଥିଳ ନ ହୁଏ ଭକତି ତାହାର ମାନସ ନ ହୁଏ ନିରାଶ
ଶ୍ରୀରାମ ଦର୍ଶନ ଭ୍ରମ ହେବ କାହିଁ ? ଭ୍ରମ ଯା ନାମେ ଯାଏ ନାଶ
ଶୁଣି ଜାଣିଛି "ଭକତି ପ୍ରୀତିରେ ସେ ବଶ
"ଶକତି ମୟ ହେ ! ପାଇବି ମୁଁ କାହିଁ ? ନ ଦେଲେ ଭକତିରୁ ଲେଶ।୧୫।
ଶୁଣାଇ ଏପରି ନିଜକୁ ଶବରୀ ମନୁ ପୋଛି ଦିଏ ନୈରାଶ୍ୟ
ଶୁଖି ଯାଉଥିବା ଦିଆ ଫଳ ଯାକ ଆଖିକି ହେଉଁ ତା'ର ଦୃଶ୍ୟ
ଶୀର୍ଣ୍ଣ ଅଞ୍ଚଳେ ସାଉଁଟିଲା ସେ ଫଳରାଶି
"ଶାନ୍ତିରେ କୀଟାଣୁ ଖାଆନ୍ତି ଦେଖଇ ସେଇ ଫଳ ମଧ୍ୟରେ ପଶି।୧୬।
ଶୋଚେ ତପସ୍ୱିନୀ "ମୋ ପ୍ରଭୁ ମୋ ପରେ ହୋଇ କରୁଣା-ପରବଶ
ଶ୍ରୀରୂପ ଲୁଚାଇ ବାଡ଼ିଥିବା ଫଳେ ଲୁଚି ଖାଉଛନ୍ତି ଅବଶ୍ୟ
ଶ୍ରୀରାମଠାରେ ଅଛୁ ପରଭେଦ ପ୍ରକାଶି
ଶ୍ରୀପତି ମୋଠାରେ ଥାଇ ନ ଦେଖିଲି ଖୋଜିଥିଲି ବୁଦ୍ଧି ବିନାଶି।୧୭।
ଶୋଇ ପଡ଼ିଛି ମୋ ବିବେକ-ବିହଗ ବା'ରି ନ ପାରେ ଦିବା ନିଶା

ଶୀର୍ଣ୍ଣ ନୟନେ ମୋ ପଲକ ପଡ଼ିଛି ଘାରିଛି ଅହଙ୍କାର ନିଶା
ଶିଳା ସମାନ ମ୍ଳାନ ମୋର ହୃଦୟ-ଦେଶ
ଶ୍ରୀରାମ-ପଦ ବି ବାଜି ନିରବଧି ନିଏ ନାହିଁ ଅହଲ୍ୟା-ବେଶ ।୧୮।
ଶୋଇ ରହିଥିଲା ଶହ ଶହ ଦିନୁ ଜଠରେ ଜଠର-ହୁତାଶ
ଶ୍ରୀରାମ-ସେବିତ ଫଳ ଭାବି ଆଜି ତେଣୁ ଉଠି କରେ ବିବଶ
ଶାନ୍ତି ଆଶାରେ ଫଳ ନେଇ ବଦନ ପାଶ
ଶ୍ୟାମ-କଳେବର-ରାମ ନିର୍ନିମେଷେ ଦେଖିଲା ପରି ହେଲା ଦୃଶ୍ୟ ।୧୯।
ଶବରୀର ହାତୁ ଖସିଗଲା ଫଳ ନିଜେ ଖସେ ସ୍ୱପ୍ନ-ଆକାଶୁ
"ଶ୍ରୀରାମ ଖାଇବା ନ ଦେଖି ଖାଇଲେ ଖାଇବା ହେବ କ୍ଷୁଧାବଶୁ"
ଶୋଚି ଏପରି କ୍ଷୁଧାସୁରକୁ କଲା ବଶ
"ଶରୀରେ ମୁଁ ତାଙ୍କୁ ଦେଖି ଦେଖୁନାହିଁ ତାଙ୍କଠି ହେବିକି ମୁଁ ଦୃଶ୍ୟ ?



-୨୦-

## ଶର୍ବରୀ ଯାଉଛି

### (ରାଗ-ବଙ୍ଗଳାଶ୍ରୀ)

ଶର୍ବରୀ ଯାଉଛି ସର୍ବହରା ହୋଇ ଅପ୍ରସନ୍ନ ଶର୍ବରୀଶ
ଶୁଭ୍ର ଅଭ୍ର-କୋଣେ ବସନ୍ତି ଶୁଭ୍ରାଂଶୁ ଦିଶନ୍ତି ବଡ଼ ବିମର୍ଷ ।୧।
ଶୋଭାର ସଦନ ସୀତାଙ୍କ ବଦନେ ଥିଲେ କି ସତେ ଶୀତାଂଶୁ
ଶୀର୍ଣ୍ଣ ଜିର୍ଣ୍ଣ ଯେଣୁ ସୀତାଙ୍କ ଲପନେ ପ୍ଲାବିଛି ଅସରା ଅଶ୍ରୁ ।୨।
ଶଶିପ୍ରିୟା କୁମୁଦିନୀ ମୁଦି ହୁଏ ଦେଖି ଶଶଧର ଦଶା
ଶଙ୍କାଗ୍ରସ୍ତ ଥିବେ ଲଙ୍କାପୁରେ ଅବା ସୀତା ଇନ୍ଦୀବର-ଦୃଶା ।୩।
ଶିଖରୀ ଶିଖରେ ନିସାରି ଜାଳରେ ପ୍ରସାରି ଜାନକୀ ଅଂଶୁ
ଶପଥ ନେଲେ କି ଦେବ ଦିବାକର ଲିଭିବ ଜାନକୀ-ଅଶ୍ରୁ ।୪।
ଶୁକାଦି ବିହଗେ ଦ୍ୱିଜଭାବ ଯେନି ଡ଼ାକିଲେ ଦ୍ୱିଜ ରାକେଶେ
ଶବରୀ ସେ ଡ଼ାକେ ଉଟଜୁ ବାହାରି ସହସ୍ରେ ଝରଣା ପାଶେ ।୫।

ଶୁଭ୍ର ସ୍ୱଚ୍ଛ-ନୀର-ମୁକୁରେ ଦେଖିଲା ମୁଖ ଦେଖୁଛି ଆକାଶ
ଶିର୍ଣ୍ଣ ସର୍ଜନା ଦେଖି ତା' ବିସ୍ମୟ ପ୍ରତିବିମ୍ବରେ ପ୍ରକାଶ ।୬।
ଶ୍ରାନ୍ତି-ନିମୀଳିତ ନକ୍ଷତ୍ର-ନୟନେ ଦେଖି ରାମକୃତି-ଦୃଶ୍ୟ
ଶୀତାଂଶୁ ଆଲୋକ-ବର୍ତ୍ତିକାରେ ଦେଖେ ଦୃଶ୍ୟ ନୁହେଁ ଯା-ଅବଶ୍ୟ ।୭।
ଶରୀରରେ ତରଳତା ଘେନି ନଗେ ଜଳେ ଦେଇ ପ୍ରତିଭାଶ
ଶ୍ରୀରାମ ଶରୀରେ ସଶରୀର ବୋଲି ଭଳେ କରନ୍ତି ପ୍ରକାଶ ।୮।
ଶବରୀର କର-ପରଶେ ଚହଲୁଁ ନୀର-ଦର୍ପଣେ ଆକାଶ,
ଶଶଧର-ତାରା-ତରୁ-ଲତା ଗିରି ଅସଂଖ୍ୟେ ଲଭେ ପ୍ରକାଶ ।୯।
ଶବରୀର ଏକ ଆନନ ଅନେକ ହୋଇ ହୁଏ ତହିଁ ଦୃଶ୍ୟ
ଶ୍ୟାମ ରାମ ପ୍ରତିରୂପ ଦିଶେ ତାକୁ ଆବୋରିଲାର ସଦୃଶ ।୧୦।
ଶ୍ରୀରାମ ମଧ୍ୟରେ ନିଜେ ନିଜ ଦେହେ ବିଦେହ-କେମା-ଜୀବେଶ
ଶମ୍ଭୁ ଗତିରୁ ପ୍ରଗତି ନେଇ କରେ ଅନୁଭୂତିରେ ପ୍ରବେଶ ।୧୧।
ଶାନ୍ତ କାନ୍ତ ରାମ ନ ଥିବାର ସ୍ଥାନ ନାହିଁ ନ ଜାଣିଲି ଲେଶ
ଶିବ ଧ୍ରୁବରାମ ମୋ ଭିତରେ ଥାଇଁ ଖୋଜି ରାମେ ଦେଲି କ୍ଳେଶ ।୧୨।
"ଶୋଚନାରେ ଶାନ୍ତି ପାଇବାକୁ କାହିଁ କେ ପାଇଛି ଅବକାଶ ?"
ଶବରୀ ବେଚାରୀ ଏପରି ବିଚାରି ପ୍ରତ୍ୟାଗତ କୁଟୀ ପାଶ ।୧୩।
ଶୀର୍ଣ୍ଣକାୟେ ଭିନ୍ନ ଅନୁଭୂତି ଏବେ ଏବେ କରିଛି ପ୍ରବେଶ
ଶାଶ୍ୱତ ସୁନ୍ଦର ରାମ ଦେଖେ ଯହିଁ କରଇ ଦୃଷ୍ଟି ନିବେଶ ।୧୪।
ଶ୍ରୁତିକି ଯା ଆସେ ରାମ ରାମ ଶୁଭେ ସ୍ମୃତିରେ ରାମ ଆବେଶ
ଶରୀର ଯା ଛୁଏଁ, କଲାପରି ଲାଗେ ରାମ ପାଦ ପଦ୍ମ ସ୍ପର୍ଶ ।୧୫।
ଶବ୍ଦ 'ରାମ ରାମ' ରସନା ପାତ୍ରରେ ପୀୟୂଷ ଆଣି ପରଶେ
ଶ୍ରୀରାମ ପଦ ଅରବିନ୍ଦ ସୁବାସ ବସେ ଘ୍ରାଣେନ୍ଦ୍ରିୟ ପାଶେ ।୧୬।
ଶରୀର ଭିତରେ ଆତ୍ମା ପରମାତ୍ମା ହୋଇଗଲେ ମିଶାମିଶି
ଶୁଦ୍ଧ ଜ୍ଞାନ ସୂର୍ଯ୍ୟୋଦୟେ ପାହିଗଲା ଘୋର ଅଜ୍ଞାନତା ନିଶି ।୧୭।
ଶବରୀ ତା' ଅନ୍ତର୍ଦୃଷ୍ଟି ଫେରାଇଣ ପକାଇଁ କାନନ ଦେଶେ
ଶ୍ରୀରାମ ଆସନ୍ତି ତେଜ ଅସରନ୍ତି ପଡ଼ିଛି କି ଦେହପାଶେ ।୧୮।
ଶବରୀ ବ୍ୟତୀତ କେ ଦେଖିଛି ଅବା ଲେଖିବ ସେ ରମ୍ୟ ବେଶ

ଶ୍ରୀରାମ ରମ୍ୟ ରୂପ ବର୍ଣ୍ଣିବା ପାଇଁ ରାମ ବି ମଣିବେ କ୍ଲେଶ ।୧୯।
ଶରାସନ-କର ପୃଷ୍ଠରେ ତୂଣୀର ଜଟା ଜୂଟ ଶିର ଦେଶେ
ଶତରାମ ରୂପ ଦୃଷ୍ଟି ପଥାରୂଢ଼ ହେଉଁ ଦିଶେ ଦଶ ଦିଶେ ।୨୦।
ଶାଖୀ ଲତା ପରେ ପତରେ ପତରେ ଦେଖୁ ଅଦ୍ଭୂତେ ଆକାଶେ
ଶାଶ୍ୱତ ସେ ରୂପ ଥିଲା ଯା ଅନ୍ତରେ ବାହାରେ ଏବେ ବିକାଶେ ।୨୧।
ଶୂନ୍ୟସ୍ଥାନ-ତପସ୍ୱିନୀ ଦେଖୁ ଶୂନ୍ୟେ ଶ୍ରୀରାମଙ୍କ ପରବେଶ
ଶରୀର ନିଜର ଥିବା ଜାଣିବାର ନ ପାଇଲା ଅବକାଶ ।୨୨।
ଶଇଳ-ଝରଣା ପରି ଯାଏ ଝରି ଲୁହଧାର ନେତ୍ର ଦେଶେ
ଶବରୀ କି ସତେ ତରଳି ବସୁଛି ଶ୍ରୀରାମେ ମିଶିବା ଆଶେ ।୨୩।
ଶଇଳ ଦଉଡ଼ି ଆସେ କି ତଟିନୀ ପାରାବରେ ଯିବ ମିଶି
ଶୁଦ୍ଧି ଲଭି ଜୀବ ପରମରେ ଯିବ ପରାପର ଭୁଲି ପଶି ।୨୪।
ଶୀକର ହୋଇ ଯେ ସାଗର-ସଲିଳ ଯାଇଥାଏଁ ନୀଳାକାଶେ
ଶୀତଳତା ଲଭି ଝରିପଡ଼େ ଶେଷେ ସାଗରେ ମିଶିବା ଆଶେ ।୨୫।
ଶାନ୍ତ ପରମାତ୍ମା-ପାରାବାରୁ ଆତ୍ମା ଆସିଥାଏ ନରଦେଶେ
ଶୁଦ୍ଧ ଶୀତଳତା ଲଭି ପାରିଲେ ବା ପରମାତ୍ମା ଦେହେ ମିଶେ ।୨୬।
ଶୀଳ-ଗୁଣ ସବୁ ଲଭେ ବିସ୍ମରଣ ସରିତା ସାଗରେ ମିଶୁଁ
ଶବରୀ କି ସେହି ବିସ୍ମରଣେ ପଡ଼େ ଶ୍ରୀରାମଙ୍କୁ ଦେଖି ପାଶୁଁ ।୨୭।



-୨୧-

## ଶତ୍ରୁଘ୍ନ-ସୋଦର ପଛରେ
### (ରାଗ-ରାମକେରୀ)

ଶତ୍ରୁଘ୍ନ-ସୋଦର ପଛରେ, ଆଗେ ବଇଦେହୀଶ
ଶିରେ ଜଟା କରେ କୋଦଣ୍ଡ ଯେନି କଲେ ପ୍ରବେଶ ।୧।
ଶ୍ରଦ୍ଧାରେ ମାନବ-ଶରୀର ନେଇଛନ୍ତି ବିଶ୍ୱେଶ
ଶୁଦ୍ଧ ନର-ନୀତି ଆଚରି ସାଧିବେ ସ୍ୱଉଦ୍ଦେଶ୍ୟ ।୨।
ଶବରୀ-ଭାବରେ ଭାବିତ ଭାବଗ୍ରାହୀ ରମେଶ

ଶ୍ରୀଗୁ ଆସି ଭକ୍ତି-ବିହ୍ୱଳା ପାଶେ କଲେ ପ୍ରବେଶ ।୩।
ଶେଷ କରେ ଯେହ୍ନୁ ନିଜତା ନାରାୟଣଙ୍କ ଆଶେ
ଶେଷଶାୟୀ ତାକୁ ଦିଶନ୍ତି ଜଳେ, ସ୍ଥଳେ, ଆକାଶେ ।୪।
ଶରୀର-ଜ୍ଞାନ ଯେ ହରାଏ ଅଶରୀରୀ ଉଦ୍ଦେଶେ
ଶାରୀରିକ ହୋଇ ସେ ପ୍ରଭୁ ତା'ର ପାଶେ ପ୍ରବେଶେ ।୫।
ଶ୍ରଦ୍ଧା ଭକତିର ଭୋକିଲା ପ୍ରଭୁ ଶ୍ରୀପରମେଶ
ଶୁଦ୍ଧ ଭକ୍ତି ଦେଖି ଧାଆନ୍ତି ରତ୍ନେ ରଙ୍କ ସଦୃଶ ।୬।
ଶର୍କରା-ଆଘ୍ରାଣେ ଆସନ୍ତି ଯଥା ପିମ୍ପୁଡ଼ି ବଂଶ
ଶ୍ରୀରାମ ଆସନ୍ତି ହୋଇଣ ଶୁଦ୍ଧ ଭକତି ବଶ ।୭।
ଶିଶୁ କି ନ ପାଇ ଅନେକ ଦିନୁ ମାଆ-ପରଶ
ଶବରୀ ପାଖରେ କହନ୍ତି ରାମ ପ୍ରଥିତ-ଯଶ ।୮।
"ଶ୍ରାନ୍ତ କ୍ଷୁଧାଗ୍ନିରେ ଜନନୀ । ଏବେ ମୁହିଁ ଅବଶ
ଶାନ୍ତ କର କିଛି ଖୁଆଇ ଯାହା ଅଛି ତୋ ପାଶ" ।୯।
ଶାନ୍ତ ନ ହେବାରୁ ବିଜୁଳି ମେଘ ଦେହରେ ଦିଶି
ଶଂପା ମେଘ ଘୋରି ରୂପ କେ ନୂଆଁ ଦେଲା ପ୍ରକାଶି ।୧୦।
ଶ୍ରବଣେ ଶ୍ରୀରାମ ବଚନ ଦ୍ରବିଗଲା ନାରୀଶ
ଶ୍ରୁତି-ସ୍ମୃତି-ସର୍ବ-ଇନ୍ଦ୍ରିୟ ଏବେ ହେଲେ ଅବଶ ।୧୧।
ଶାନ୍ତ ନୋହିଥିଲା ଦର୍ଶନେନ୍ଦ୍ରିୟ ଅପରା-ଆଶା
ଶ୍ରୀରାମ ଦର୍ଶନେ ଭଜିଲା ତେଣୁ ନିସ୍ପନ୍ଦ ଦଶା ।୧୨।
ଶୁଣିଥିଲା ଯାହା ଅର୍ଚ୍ଚନା-ବିଧି ଗୁରୁପଦେଶେ
ଶଙ୍କା ନ ମାନି ବୁଲିଲେ ବିସ୍ମରଣ-ପ୍ରଦେଶେ ।୧୩।
ଶରୀର ରହିଲା ଅନାତ୍ମ, ପରମାତ୍ମା ପ୍ରବେଶେ
ଶବରୀ ନ ଜାଣେ 'ସେ କିଏ'?କିଏ ଉଭା ତା' ପାଶେ ? ।୧୪।
ଶକ୍ତି-ପ୍ରଚାଳିତ-କଳର ପରି କୁଟୀରେ ପଶି
ଶାଳପତ୍ରେ ଆଣି ବିବିଧ ଫଳ ଦେଲା ପରଶି ।୧୫।
ଶ୍ରୀକର ପ୍ରସାରୁ ଶ୍ରୀରାମ, ବାରି ନିକେ ନାରୀଶ
ଶୁଦ୍ଧାଶୁଦ୍ଧ ଭାବ ନ ଜାଣି ଫଳେ ଆସ୍ୱାଦି ଲେଶ ।୧୬।
ଶୁଦ୍ଧ ସ୍ୱାଦ ଯେଉଁ ଫଳର ବାଛି ଆଗେ ବାଳୀଶ

ଶରଧାରେ ନିଛି ବଢ଼ାଇଁ ନେଇ ଯାନ୍ତି ବିଶ୍ୱେଶ ।୧୬।
ଶୋଭା ହୋଇ ମୂର୍ତ୍ତ, ଶବରୀ ଛାନ କଲା ବିଭୂଷଣ
ଶପ ରସ ଛାଡ଼ି କେବେ ବା ଦିଏ ମଣ୍ଡି କର୍କଶ ।୧୮।
ଶୂନ୍ୟତ୍ୱକ କରେ କେ ଫଳ ଅତି ଆଗ୍ରହ ବଶେ
ଶ୍ରୀରାମଙ୍କ କରେ ବଢ଼ାଇଁ ଫଳ ପଡ଼େ ତା' ପାଶେ ।୧୯।
ଶତଚ୍ଛୋପା ଖଣ୍ଡ ରାମଙ୍କ ମୁଖେ ଅବାଧେ ପଶେ
ଶବରୀ ନ ଜାଣେ କି ଦିଏ ? କିବା ପଡ଼େ ପାରୁଶେ? ।୨୦।
ଶ୍ରଦ୍ଧା ମୂର୍ତ୍ତିମତୀ ହୋଇ କି ବସେ ଶବରୀ ବେଶେ?
ଶୂନ୍ୟସ୍ଥାନ କରି ବସାଇଅଛି ପ୍ରଭୁଙ୍କୁ ପାଶେ ।୨୧।
ଶାଶ୍ୱତ ସ୍ୱାଦ ଯା ନାମରେ ହେବ କି ସ୍ୱାଦେ ବଶ ?
ଶସ-ରସ-ଚ୍ଛୋପା ସମାନ ସ୍ୱାଦ ତାକୁ ଅବଶ୍ୟ ।୨୨।
ଶୂରେଶ ଲକ୍ଷ୍ମଣଆସୀନ ଥାଇ ତାଙ୍କରି ପାଶେ
ଶବରୀ ବା ରାମ କାହାରି ନୟନକୁ ନ ଦିଶେ ।୨୩।
ଶବ ପାଇଟିଛି ଶବରୀ ନିଜ ନିଜତା ନାଶି
ଶ୍ରୀରାମ ବିନା ବା କାହାରି ସ୍ଥିତି ତାକୁ କି ଦିଶି ? ।୨୪।
ଶତ୍ରୁ-ଜିତ-ଜେତା ଯା ଆଗେ ଦିଶେ ନିଜ ସଦୃଶ
ଶଇଶବୁ, ଆଜି କିପରି ହେବ ଭିନ୍ନରେ ଦୃଶ୍ୟ ? ।୨୫।
ଶାସ୍ତ୍ରଜ୍ଞ-ଲକ୍ଷ୍ମଣେ ଯା ଦିଶେ ଲେଖା ମାନସ-ଦେଶେ
"ଶୁଭାଶୁଭ ଫଳ ଭକତ ଅର୍ପେ ପ୍ରଭୁଙ୍କ ପାଶେ" ।୨୬।
ଶବରୀ ସେ ସୂତ୍ରୁ ଭକତୁ ଯାଇ ପ୍ରଭୁ ଉଦ୍ଦେଶ୍ୟ
ଶୁଭ କର୍ମଫଳ ସମର୍ପେ ରଖି ଅଶୁଭେ ପାଶେ ।୨୭।
ଶାସ୍ତ୍ର କହେ ଭକ୍ତି ନବଧା ଏବେ ହେଲା ଏ ଦଶ
ଶବରୀ ବିନା କେ ପାଇନି, ପାଇବନି ଅବଶ୍ୟ ।୨୮।
ଶୁଦ୍ଧ-ଜୀବ-ନେତ୍ରେ ପରମ ଏବେ ଅଭିନ୍ନ ଦିଶେ
ଶ୍ରୀରାମଙ୍କୁ ଫଳ ଆସ୍ୱାଦି ପରେ ତେଣୁ ପରଶେ ।୨୯।
ଶକ୍ତି ପ୍ରଭୁଙ୍କର ଅମିତ, ଭକ୍ତି ଦେଇ ତାଦୃଶ
ଶବରୀକୁ ରଖି ଅଛନ୍ତି ଅବା ପ୍ରଭୁ ସୀତେଶ ।୩୦।

ଶ୍ରୀରାମ ଶକତି, ଭକତି କେତେ ବହେ ବାର୍ଣ୍ଣୀଶ
ଶ୍ରୁତୀଶ ନ ଜାଣେ ଜାଣନ୍ତି ନାହିଁ ଶକ୍ର ପର୍ତୀଶ ।୩୧।
ଶବରୀ ତନ୍ମୟ ଶ୍ରୀରାମ ଭାବ-ରାଜ୍ୟରେ ପଶି
ଶ୍ରୀରାମ ହଜାନ୍ତି ନିଜକୁ ଭକ୍ତ ଭାବରେ ମିଶି ।୩୨।
ଶାନ୍ତ ଚିତ୍ତେ ଭ୍ରମୁ ସୌମିତ୍ରୀ ସେହି ଭାବ ପ୍ରଦେଶେ
ଶୁଣି ନ ପାରିନ୍ତି ତୃହଙ୍କ ଯେବେ ବନେ ପ୍ରବେଶେ ।୩୩।
ଶୁଭୁ ସେ ତୃହଙ୍କ ନିଷ୍କଳ ସେଇ ଆଶ୍ରମ-ଦେଶ
ଶୀଘ୍ର ତୁଟିଗଲା ପୁରୁଷ ପ୍ରକୃତିର ଆବେଶ ।୩୪।



-୨୨-

## ପ୍ରଭୁ ଉଦ୍ଦେଶ୍ୟ
(ରାଗ-ବସନ୍ତ)

ଶ୍ରୁତି-ଉଚ୍ଚାରିତ ପ୍ରଭୁ ଉଦ୍ଦେଶ୍ୟେ
ଶୁଭେ ସେ ଶବଦ ଆଶ୍ରମ-ଦେଶେ
ଶାଶ୍ୱତ ସୁଖ ନେଲା ଅବକାଶ
ଶୁଦ୍ଧ ବାସ୍ତବତା କଲା ପ୍ରବେଶ ଯେ
ଶବରୀ ସଙ୍ଗେ ସୀତେଶ ଯେ
ଶୀଳ-ଗୁଣ-ଭାବ ଫେରାଇ ଆଣିଲେ ଥିଲା ଯା ବିସ୍ମୃତି-ଦେଶ ଯେ ।୧।
ଶକ୍ତାରି-ଉଗାରି ତେଜି ଆବେଶ
ଶ୍ରୀରାମଙ୍କୁ ତାହୁଁ ପାଇ ନିର୍ଦ୍ଦେଶ
ଶୀଘ୍ର ଗଲେ କୁଟୀର ବହିର୍ଦ୍ଦେଶ
ଶତଶତ ମୁନିଙ୍କ ସମାବେଶ ଯେ
ଶୁଣାନ୍ତି ପ୍ରଭୁଙ୍କ ପାଶେ ଯେ
"ଶ୍ମଶ୍ରୁ-ଜଟା-ଧାରୀ ବହୁ ତପସ୍ୱୀ ଆସନ୍ତି ଦର୍ଶନ ଆଶେ" ଯେ ।୨।
ଶୂନ୍ୟେ ଉଭା ଥାଇ ମଣ୍ଡି ଆକାଶ
ଶୂଳପାଣି ପ୍ରଜାପତି ସୁରେଶ

ଶମନାଦି ସୁର-ସମାଜେ ମିଶି
ଶାନ୍ତେ ଦେଖୁଥିଲେ ଏ କୃତି ରାଶି ଯେ
ଶୋଭା-ମୂର୍ତ୍ତି ରାମ ବେଶ ଯେ
ଶକ୍ତ କରିବାକେ ଯାଇ ନ ପାରନ୍ତି ହୋଇ ପ୍ରଭୁ-ପ୍ରେମେ ବଶ ଯେ ।୩।
ଶୂରପ୍ରସୂ ନିଜ କୁଳେ ଦିନେଶ
ଶ୍ରଦ୍ଧା ଲାଗି ନିରେଖନ୍ତି ଦୀନେଶ
ଶମନେ ତନୟ-ସ୍ନେହ ପ୍ରକାଶି
ଶୁଣାନ୍ତି ଏ ଜୀବେ ନ ପାରୁ ନାଶି ଯେ
ଶତକାଳ ହେବେ ବଶ ଯେ
ଶଶି ସଙ୍ଗେ ମୁହିଁ ଏହି ବିଶ୍ୱଭୂଇଁ ଅଛୁଁ ଯାବତ ଅବଶ୍ୟ ଯେ ।୪।
ଶାନ୍ତ ଶୋଭାଯାତ୍ରା ସଙ୍ଗତେ ମିଶି
ଶାର୍ଦ୍ଦୂଳ ଭଲ୍ଲୁକ ଆସନ୍ତି ପଶି
ଶୂକର ହରିଣ କାନନ-ପଶୁ
ଶତ୍ରୁଭାବ ଭୁଲି ଆସନ୍ତି ଆଶୁ ଯେ
ଶୁକାଦି ବିହଗ ବଂଶ ଯେ
ଶୂନ୍ୟେକେହୁ ଉଡ଼େ କେବା ବସେଡ଼ାଳେ କେ ତାପସୀଙ୍କ ଦେଶ ଯେ ।୫।
ଶିଖୀ ଆଗେ ଡ଼ାଳେ ନୃତ୍ୟ ପରାଶି
ଶିଖାରେ ଶ୍ରୀରାମ-ବିଭା ବିକାଶି
ଶୋଭାଯାତ୍ରୀ ଦୃଷ୍ଟି ତହିଁ ନିବେଶୁଁ
ଶାନ୍ତ ନେତ୍ର-ଚିହ୍ନ ବନ୍ଧା ବିବଶୁଁ ଯେ
"ଶାନ୍ତ ନୁହଇ ସୁଦୃଶ୍ୟେ ଯେ
ଶାଶ୍ୱତ କାଳକୁ ଦରଶନ ଆଶା" ସତ୍ୟ ଅବଧି ପ୍ରକାଶେ ଯେ ।୬।
ଶୁଚି ପଢୁଥିଲେ ଯେଉଁ ଯୋଗୀଶେ
ଶୁକ ସାରୀ ଉଡ଼ି ସେ ପାଶେ ପାଶେ
ଶୁଚି-ରୁଚିକର ସ୍ୱର ପରଶେ
ଶୁଦ୍ଧେ ଧରନ୍ତି ପାଳି ପ୍ରୀତି ବଶେ ଯେ
ଶୁଭେ ପୂରି ଦଶ ଦିଶା ଯେ
ଶକ୍ତି ଅନୁରୂପ ଭକ୍ତି-ପୂରା-ତାନ ଡ଼ାଳେ ପିକ କୃଷ୍ଣ-ବେଶା ଯେ ।୭।

ଶାରୀରିକ ହେଲେ ଶ୍ରୀପରମେଶ
ଶ୍ରୀରାମ ଅଯୋଧ୍ୟାଖଣ୍ଡ ନରେଶ
ଶାନ୍ତ ସମାଗତ ମୁନିଙ୍କ ପାଶେ
ଶିର ନତେ ଇଛା ଆଶୀଷ ଆଶେ ଯେ
ଶ୍ରୀକର ଯୋଡ଼ୁ ସୀତେଶ ଯେ
ଶତଶତ କରଯୁଗ ଯୋଡ଼ି ସ୍ତୁତି ପାଠ କରନ୍ତି ଯତୀଶ ଯେ ।୮।
ଶୁକ-ସାରୀ-ପିକ ବିହଗ ବଂଶ
ଶୁଚିକି ସୁଖ ଯା ଦେଇ ଅବଶ୍ୟ
ଶ୍ରୁତି, ଛନ୍ଦେ ଗତ ଦେଲେ ପରଶି
ଶର୍କରା ସଙ୍ଗେ କି ପୀୟୁଷ ମିଶି ଯେ
ଶୁଣାଗଲା ଦଶଦିଶ ଯେ
ଶ୍ୟେନ ଆଦି ଢେଣା ପିଟି ବାଦ୍ୟକଲେ ସ୍ୱର ଯାହାଙ୍କ କର୍କଶ ଯେ ।୯।
ଶାନ୍ତ-ତପୀ-ନେତ୍ରୁ ଝରଇ ଅଶ୍ରୁ
ଶୋଇ ସଙ୍ଗ କରି କେତେକ ପଶୁ
ଶ୍ୱାପଦେ ବସି ସମାବେଶ ପାଶେ
ଶାନ୍ତେ ଜିହ୍ୱା ଫେଇ ସ୍ତୁତି ପ୍ରକାଶେ ଯେ
ଶୁଣିବାକୁ କରି ଆଶା ଯେ
ଶୋଇ ରୋମନ୍ଥକେ ରୋମନ୍ଥନେ ଚାହୁଁଥାଆନ୍ତି ଦିଶାବିଦିଶା ଯେ ।୧୦।
ଶିରେ ଜଟା ଦେହେ ତାପସ ବେଶ
ଶ୍ରୀରାମ ଇଛା, ଆଗେ ସମାବେଶ
ଶୂରେଶ ଲକ୍ଷ୍ମଣ ଇଛା ପାରୁଶେ
ଶବରୀ ରହିଛି ବୁଢ଼ି ଆବେଶେ ଯେ
ଶାନ୍ତଛାତ ନେତ୍ରେ ଦିଶେ ଯେ
ଶୁଦ୍ଧ ଜ୍ଞାନ କର୍ମ-ଭକ୍ତି ମୂର୍ତ୍ତି ହୋଇଛନ୍ତି କିଏ ମର୍ତ୍ତ୍ୟଦେଶ ଯେ ।୧୧।
ଶତ ଜନମର ସଂସ୍କାର ବଶେ ଶ୍ରୀରାମଙ୍କୁ ରଖି ଅନ୍ତର-ଦେଶେ
ଶାନ୍ତେ ନେତ୍ର ମୁଦି ଥିଲେ ତପୀଶେ ଶ୍ୱାପଦାଦି ପଶୁ ବିହଗ ବଂଶେ ଯେ
ଶ୍ରୀରାମେ ଦୃଷ୍ଟି ନିବେଶି ଯେ
ଶବରୀ ଦେଖି କେ ଘଷିହୁଏ ଦେହେ, ଲେହେ କେ ଆଦରଆଣୀ ଯେ ।୧୨।

ଶୋଭାର ଆକର ଶ୍ରୀରାମ ବେଶ ଶତଧା କଳ୍ପିତ ଧାରଣା ବଶ
ଶରୀର ବନ୍ଦ ହୋଇ ଆଗେ ଦିଶୁ ଶାନ୍ତ ତପୀନେତ୍ର ବନ୍ଧ ବିବର୍ଣ୍ଣ ଯେ
ଶ୍ରୀରାମ ସ୍ମରଣ ଆଣେ ଯେ
ଶତଶତ କରଯୁଗ ପ୍ରସାରିତ ବାନ୍ଧିନେବେ ବାହୁ ପାଶେ ଯେ ।୧୩।
ଶାନ୍ତେ ଥାଇ ସବୁ ଅନ୍ତରଦେଶେ ଶ୍ରୀରାମ ଜାଣି ସକଳ ଉଦ୍ଦେଶ୍ୟ
ଶୁଣାଇଲେ ବାଣୀ ସୁଧା ସଦୃଶ "ଶମ ସ୍ପର୍ଶେନ୍ଦ୍ରିୟ ହେ ତାପସୀଶ ! ଯେ
ଶିରୀଷାଙ୍ଗୀ ସୀତା ପାଶେ ଯେ
ଶ୍ୟାମ ଏ ଅଙ୍ଗ ଅଙ୍ଗୀକୃତ ହୋଇଛି ଦେୟ ନୁହେଁ କି ଉଦ୍ଦେଶ୍ୟ ଯେ ।୧୪।
"ଶୁଣାନ୍ତେ ତବ କୁଶଳ ସନ୍ଦେଶ; ଶାନ୍ତି ଥାଆନ୍ତି ତ ଆଶ୍ରମ ଦେଶ ?
ଶ୍ରାଦ୍ଧ ତର୍ପଣରେ ନାହିଁ ତ କ୍ଳେଶ ? ଶୌଚ ସଂଯମେ ନୁହଁତ ହତାଶ? ଯେ
ଶୁଦ୍ଧ ଜଳ ମିଳେ ପାଶେ କି ?
ଶର୍ବରୀଚର ଉପଦ୍ରବ ନାହିଁତ ଯଜ୍ଞ ତପସ୍ୟା ବିନାଶେ ଯେ ।୧୫।
ଶୁଣି ପ୍ରଭୁ-ବାଣୀ ପୀୟୁଷ-ମିଶା ଶୁଚିଷ୍ମ ଶୁଚିକି ଢ଼ାଳିଲା ନିଶା
ଶାନ୍ତ ସ୍ତବ୍ଧମୁଗ୍ଧ ହେଲେ ତପୀଶେ ହତବାକ ହେଲେ ସବୁ ବାଗୀଶେ ଯେ
ଶ୍ରୀରାମ ରୂପର ନିଶା ଯେ
ଶ୍ରାନ୍ତ ସ୍ପର୍ଶ-ଦର୍ଶନେନ୍ଦ୍ରିୟ ଆଗରେ ଥୁଏ କି ନୂତନ ଆଶା ଯେ ।୧୬।
ଶୁଣାନ୍ତି ଶ୍ରୀରାମ ମୁନି ଉଦ୍ଦେଶ୍ୟ ଶୁଭାକାଂକ୍ଷୀ ଅଛି ଯା ହୃଦଦେଶେ
ଶାନ୍ତ ହେବ ଭାବୀ ଯୁଗେ ଅବଶ୍ୟ ଶୁଦ୍ଧପ୍ରେମ ଥିଲେ ପ୍ରଭୁଙ୍କ ପାଶ ଯେ
ଶୂନ୍ୟେ କି ତା' ଯାଏ ମିଶି ଯେ
ଶୀଘ୍ର ନ ହେଲେ ବି ପ୍ରଭୁ କେତେବେଳେ କୃପା ଦିଅନ୍ତି ପରଶି ଯେ ।୧୭।



-୨୩-

## ଶୁକ୍ଳଶିର ଏକ ତାପସ

(ରାଗ-ବଙ୍ଗଳାଶ୍ରୀ)

ଶୁକ୍ଳଶିର ଏକ ତାପସ ବୟସ୍କ ଶରୀରେ ଥିଲେ ବି କୃଶ
ଶୁଦ୍ଧ-ବ୍ରହ୍ମତେଜେ ତେଜୀୟାନ ସେ ଯେ ଆସି ରାମ ସନ୍ନିବେଶ ।୧।

ଶିରନତେ ଗିର ପ୍ରକାଶନ୍ତି, "ନୀର ନୁହେଁ ସୁଲଭ ଏ ପାଶେ
ଶୁଷ୍କନୀରା ପମ୍ପାସର ଅନୁକମ୍ପା ନ କରେ ଆଶ୍ରମ ଦେଶେ ।୨।
ଶ୍ରୀ ପ୍ରଭୁ କରୁଣା ବଳେ କିଛି ଭଣା ନାହିଁ ଏ କାନନ ଦେଶେ
ଶର୍ବରୀଚରଙ୍କ ଉପଦ୍ରବ ଏକ ଦୃଷ୍ଟାନ୍ତ କେବେ ନ ଦିଶେ' ।୩।
ଶ୍ରୀରାମ ଅଳପ ହସି ବାକ୍ୟାଳାପ କରନ୍ତି ଭକତି ବଶ
"ଶରୀର ପାବନ ତାହାର ଯେ ଜନ ହୃଦେ ଧରେ ପରମେଶ ।୪।
ଶୁଦ୍ଧହୃଦା ସାଧ୍ୱୀ ଶବରୀ ବାନ୍ଧବୀ ଥାଇଁ ଏ ଆଶ୍ରମ-ଦେଶେ
ଶୁଦ୍ଧିହେବ ଜଳ ଅନିଳ-ଅନଳ ତାଙ୍କ ପାବନ ପରଶେ" ।୫।
ଶ୍ରୁତିରେ ଏ ଗିର ପଡୁଁ ଶବରୀର ଉଭେଇ ଗଲା ଆବେଶ
ଶିର ନତ କରି ନ ଶୁଣିଲା ପରି ଠିଆହେଲା ପ୍ରଭୁପାଶ ।୬
ଶୁଦ୍ଧାଚାର ଅଭିମାନୀ ସେ ମୁନିଟି ଥାଇ ଶାନ୍ତ ସମାବେଶେ
ଶ୍ମଶ୍ରୁ ପାଉଁଜିଣ ଅଶ୍ରୁ ସମ୍ବରଣେ ରତ ନିରତ ଅଦୃଶ୍ୟେ ଯେ ।୭।
ଶ୍ରୀରାମ ସଜଳ-ନୟନ-କମଳ ଶବରୀ ପରେ ନିବେଶି
ଶୁଣାନ୍ତି, କୁ-ପୁତ୍ର ହୋଇପାରେ ଜାତ କୁମାତା କାହିଁ ନ ଦିଶି ।୮।
ଶାନ୍ତନୁହେଁ ପମ୍ପା ସରୋବର ଅବା ନ ପାଇ ତବ ପରଶ
ଶୁଦ୍ଧକର ତାକୁ ଶାନ୍ତ କର ତାକୁ ଅବଗାହି ତୃପ୍ତିବଶ ।୯।
ଶତଶତ ଜୀବ-ସନ୍ତାନ, ଜନନୀ ଏହି ଜଳେ ରଖି ଆଶା
ଶୁଦ୍ଧ ନ ଥିବାରୁ ଜଳ, ଜଳ-ନେତ୍ରେ ଫେରାନ୍ତି ସକଳ ଆଶା ।୧୦।
ଶ୍ରୀରାମଙ୍କ କୃପା-କଟାକ୍ଷର ସହ ପାଇ ସସ୍ନେହ ନିର୍ଦ୍ଦେଶ
ଶବରୀ ପଶିଲା ପମ୍ପା ସରୋବରେ ଗଙ୍ଗା ସ୍ମରିଭକ୍ତି ବଶ ।୧୧।
ଶତଦଳ-ମୁଖେ ଉତ୍‌ଫୁଲ୍ଲିତ ସର ସ୍ଫୀତ ଲହରୀ-ଆବେଶେ
ଶ୍ରଦ୍ଧା ଜ୍ଞାପି, ସ୍ମିତ ଉକୁଟି ଆସିଲା କୋକନଦ-ଓଷ୍ଠ-ଦେଶେ ।୧୨।
ଶିର ଟେକି ସରେ ସାରସ ସମାଜ ଚଞ୍ଚୁରୁ ପକାଇ ବିଶ
ଶୁଭ ସ୍ୱାଗତିକା କାକଳି ଛଳରେ ଉଚ୍ଚେ କରିଲେ ପ୍ରକାଶ ।୧୩।
ଶଫରୀ ନୟନେ ଚାହିଁଲା ସରସୀ ଉଭା ପ୍ରଭୁ ତଟ ଦେଶେ
ଶେଉଳର ଲମ୍ବ-ବଳେ ପାଣି ଛଳେ ଶ୍ରୀପାଦ-ପଦ୍ମ ପରଶେ ।୧୪।
ଶ୍ୟାମ-ସର-ଜଳେ ଶ୍ୟାମ-ରାମ-ଛାୟା କେଡ଼େ ମନୋରମ ଦିଶେ
ଶୁକଳ ଢ଼ଗରେ ଜଳନ୍ତି ଆଗରେ ନିରୁପମ ଏହି ଦୃଶ୍ୟେ ।୧୫।

ଶରାସନ କୂଳେ ଥୋଇ ପ୍ରଭୁଜଙ୍କେ କଲେ ହରଷେ ପ୍ରବେଶ
ଶ୍ରୀପାଣିରେ ପାଣି ଧରି ରଘୁମଣି ଢ଼ାଳିଲେ ଚାହିଁ ଦିନେଶ ।୧୬।
ଶ୍ରୀପଦ-ନଖରୁ ଜନମି ଜାହ୍ନବୀ ପାବନୀ ହୋଇଛି ବିଶ୍ୱେ
ଶରୀରାର୍ଦ୍ଧ ଥୋଇ କହିଲେ କି ଶ୍ଳେଷେ ଗଣା ନୁହେଁ ଏ ଅସ୍ପୃଶ୍ୟେ ।୧୭।
ଶିରତୋଳି ଯେବେ ଚାହିଁଥିଲେ ନଭେ ଅର୍ଘ୍ୟ ଦେବାକୁ ଦିନେଶେ
ଶୁଣାନ୍ତି ତାପସେ "ଯାଉଛି ଦିବସ, ଯାଉଛି ରହ ତପୀଶେ ।।୧୮।
ଶିରପାତି ହାତ ଯୋଡ଼ି ବିନୟରେ ବିଦାୟ ନେଇ ସୀତେଶ
ଶବରୀର ସ୍ନାନ ସିକ୍ତ ଦେହ ଆସି ସମ୍ମୁଖେ କଲା ପ୍ରବେଶ ।୧୯।
"ଶିରୋଭୂଷା ଏହି ତୀର୍ଥରେ" ବୋଲି ମୁନି ଗଲେ ସରେ ପଶି
ଶ୍ୟାମବନେ ରାମ ଗଲେ ଯେତେବେଳେ ଶବରୀ ସଙ୍ଗତେ ମିଶି ।୨୦ ।
ଶ୍ରେୟ ନୀରବତା ଅଗ୍ରଜ ଅଗ୍ରରେ ଭାବି ଲକ୍ଷ୍ମଣ ବୀରେଶ
ଶାଳୀନତା ରଖି ଯା ହୁଏ ତା' ଲକ୍ଷି ଚାଲିଥାନ୍ତି ପାଶ ପାଶ ।୨୧।
ଶୁଦ୍ଧ ଆତ୍ମା ସଙ୍ଗେ ପରମାତ୍ମା ଚାଲେ ବିବେକ ଥାଏ କି ପାଶେ
ଶବରୀ, ଶ୍ରୀରାମ, ଲକ୍ଷ୍ମଣ ଯିବାର ସାକ୍ଷୀ-ନେତ୍ରେ ଅବା ଦିଶେ ।୨୨।



-୨୪-

## ଶାଶ୍ୱତ ସୁଷମା ଆସେ

### (ରାଗ-କେଦାର କାମୋଦୀ)

ଶାଶ୍ୱତ ସୁଷମା ଆସେ ଜାଣି ନିଜ ଦେଶେ
ଶାନ୍ତବନ ମଗ୍ନ ଦରଶନେ ଏହି ଦୃଶ୍ୟେ ।୧।
ଶ୍ୟାମ-ପତ୍ର-ନେତ୍ର ବିସ୍ଫାରିତ ପ୍ରୀତି ବଶେ
ଶ୍ୟାମ ରାମ କାନ୍ତି ଦ୍ୟୁତି ସଂଗ୍ରହ ସକାଶେ ।୨।
ଶିରତୋଳି ଚଞ୍ଚୁଦ୍ୱୟ ଦେଖିବାର ଆଶେ
ଶାଖେ ଉଡ଼ୁଁ ଉଡ଼େ ପ୍ରତିଯୋଗୀ ବେଶେ ।୩।
ଶକ୍ତି ନାହିଁ ଯାର ଉଡ଼େ ଉଠିବା ସକାଶେ
ଶାନ୍ତି ଭଜେ ଶ୍ରୀଚରଣେ ଦରଶନ ଆଶେ ।୪।

ଶୈଳେ ଉଚ୍ଚ ଉଚ୍ଚତର କରି ଶୃଙ୍ଗଦେଶ
ଶିହରି ଯାନ୍ତି, ଶ୍ରୀହରି କଲାରୁ ପ୍ରବେଶ ।୫।
ଶିମୁଳି ସହିତ ମିଶି ଅଶୋକ ପଲାଶ
ଶୋଣିତାଭ ଓଠେ ସ୍ମିତ କରନ୍ତି ପ୍ରକାଶ ।୬।
ଶେଫାଳି ଆଗରୁ ପଡ଼ିଅଛି ଭୂମିଦେଶ
ଶ୍ରୀଚରଣ ରେଣୁ ଅବା କରିବାକୁ ସ୍ପର୍ଶ ।୭।
ଶୁଭ୍ର ଫୁଲେ କୁଟଜ ସୁନାରି ହୋଇ ବେଶ
ଶ୍ରଦ୍ଧାଞ୍ଜଳି ଦେବା ଲାଗିଛନ୍ତି ପାଶ ପାଶ ।୮।
ଶିଖୀ ଶାଖୀ ଶାଖେ ବସେ ଆଗ୍ରହର ବଶେ
ଶଙ୍ଖ ଧ୍ୱନି କରେ କୁମ୍ଭାଟୁଆ ମାର୍ଗ ପାଶେ ।୯।
ଶରଧାରେ ଚୂତଡ଼ାଳେ ପିକ କୃଷ୍ଣବେଣୀ
ଶ୍ରୁତି ସୁଖକର ସୁରେ ବଜାଇଲା ବଂଶୀ ।୧୦।
ଶୁକ ସାରୀ ସଙ୍ଗେ ଆଉ ଅନ୍ୟ ପକ୍ଷୀ ମିଶି
ଶୁଭ ହୁଳ ହୁଳି ଧ୍ୱନି ଦେଲେ କି ପରଶି ।୧୧।
ଶ୍ୱାପଦେ ଆସନ୍ତି ପାଶେ ଖେଳୁଥାନ୍ତି ଶିଶୁ
ଶଙ୍କା ତେଜି ହରିଣୀଏ ଆସୁଥାନ୍ତି ଆଶୁ ।୧୨।
ଶଙ୍କାତେଜି ମୃଗ ଏକ କରୁ ପରବେଶ
ଶିଳାଟିରେ ପ୍ରଭୁ ନିଜେ କଲେ ଉପବେଶ ।୧୩।
ଶତଦଳ ନୟନରୁ ଝରିଗଲା ଅଶ୍ରୁ
ଶୁଖିଗଲା ଚାହୁଁ ଚାହୁଁ ବଦନ-ସୁଧାଂଶୁ ।୧୪।
ଶବରୀ ଦେଖି ପ୍ରଭୁଙ୍କ ଏତାଦୃଶ ଦଶା
ଶଙ୍କାଗ୍ରସ୍ତ ହୋଇ ହେଲା ଚିନ୍ତାରେ ବିବଶା ।୧୫।
"ଶାନ୍ତ ତୁମେ ନିର୍ବିକାର ତୁମେ ପରମେଶ !
ଶିବ ତୁମେ ସତ୍ୟ ତୁମେ ସୁନ୍ଦର ରମେଶ ।୧୬।
ଶବରୀ ଛାରେ ପରୀକ୍ଷା କର କି ଉଦ୍ଦେଶ୍ୟେ
ଶୋକ କି ସମର୍ଥ କେବେ ତୁମ ଛାୟା ସ୍ପର୍ଶେ ? ।୧୭।
ଶୁଣାଇ ଏତିକି ନିଜେ ବସେ ପ୍ରଭୁ ପାଶ

ଶ୍ରୁତି-ଶ୍ରେୟ୍‌-ଭାଷେ ରାମ କରନ୍ତି ପ୍ରକାଶ ।୧୮।
"ଶାଶ୍ୱତ ଏ ଆତ୍ମା ଯେବେ ଆସେ ମର-ଦେଶେ
ଶରୀର ଯାହାର ଧରେ ରହେ ତା'ର ବଶେ" ।୧୯।
"ଶାନ୍ତ ସେ ଅଶାନ୍ତ, ଦୂରେ ଥାଇ ରହେ ପାଶେ
ଶୂନ୍ୟରେ ବାହାରେ ଥାଇ ରହେ ଅନ୍ତର୍ଦେଶେ" ।୨୦।
"ଶୋକହୀନ ହୁଏ ପୁଣି ଶୋକ-ସୁଖ-ବଶ
ଶୁଦ୍ଧ ଜ୍ୟୋତିଃଧାରୀ କରେ ତମରେ ପ୍ରବେଶ ।୨୧।
"ଶରୀର ପିଞ୍ଜରେ ରହି ସ୍ୱଭାବର ବଶେ
ଶୋକ ସୁଖ ପରିସ୍ଥିତି ନେଇ ପରକାଶେ" ।୨୨।
ଶୁଣ ଆମେ ଥିଲୁଁ ଯେବେ ଗୋଦାବରୀ ପାର୍ଶ୍ୱେ
ଶାନ୍ତ-ବନବାସ-ସୁଖ ଆସ୍ୱାଦନ ଆଶେ ।୨୩।
"ଶଶିମୁଖୀ-ସୀତା-ନେତ୍ରେ ହରିଣୀ ସୁଦୃଶ୍ୟ
ଶୀଘ୍ର ଦୃଶ୍ୟ ହେଉଁ ପ୍ରିୟା ଲୋଭେ ହେଲେ ବଶ" ।୨୪।
"ଶ୍ରଦ୍ଧା ଜଣାଇଲେ ଲଭିବାକୁ ସେହି ପଶୁ
ଶରାସନ ନେଲ ତା'ର ପଛେ ବନେ ପଶୁଁ" ।୨୫।
"ଶର ପ୍ରହାରାନ୍ତେ ନେଲା ନିଶାଚର ବେଶ
ଶବଦ 'ତ୍ରାହି ଲକ୍ଷ୍ମଣ' ଶୁଭେ କୁଟୀ ପାଶ" ।୨୬।
"ଶୁଣି ତା' ଲକ୍ଷ୍ମଣ କଲେ ବନେ ପରବେଶ
ଶୂନ୍ୟକରେ ଫେରୁଁ ଥିଲା ଶୂନ୍ୟ କୁଟୀଦେଶ ।୨୭।
ଶୂନ୍ୟ ହୃଦେ ବୁଲୁଁ ସେହି ଦିନୁ ଦେଶ ଦେଶ
ଶୁଣି ନ ପାରିଲୁଁ କାହିଁ ସୀତାଙ୍କ ସନ୍ଦେଶ ।୨୮।
"ଶୁଦ୍ଧ ଆତ୍ମା ତୁମେ ପରମାତ୍ମା ପ୍ରତିବେଶୀ
ଶତକାଳ-ଜୟୀ ତୁମେ ତିନିକାଳ ଦର୍ଶୀ" ।୨୯।
"ଶୁଣାଇବ ବୋଲି କିଛି ସୀତାଙ୍କ ସନ୍ଦେଶ
ଶୁଭାକାଂକ୍ଷା ନେଇ ଆସିଅଛୁଁ ତୁମ ପାଶ" ।୩୦।



-୨୫-

## ଶାଳୀନ କାଳୀନ ଭାଷା

(ରାଗ-ନଟବାଣୀ)

ଶାଳୀନ କାଳୀନ ଭାଷା ବନ ଦେଶେ
ଶୁଭୁଁ ପ୍ରତିଧ୍ୱନି ଶୁଭେ ସର୍ବ ଦିଶେ ।୧।
ଶ୍ରେୟ୍ ପ୍ରେୟ୍ ଭାଷା ସତ୍ୟ ଯା ପ୍ରକାଶେ
ଶିଳା ସମର୍ଥ ସମର୍ଥନ ସକାଶେ ।୨।
ଶଇଳ-ସରିତା-ଦରୀ-ଦ୍ରୁମ ରାଶି
ଶ୍ୟାମାକାଶ ସଙ୍ଗେ ଦଶଦିଶ ମିଶି ।୩।
ଶ୍ରୀରାମଙ୍କ ଭାଷା କରିଲେ ପ୍ରକାଶ
ଶୁଦ୍ଧ ସତ୍ୟର ଏ ଶୁଭ ଅବକାଶ ।୪।
ଶୁଭଙ୍କରୀ ହେଲା ଶବରୀ ସକାଶେ
ଶାଶ୍ୱତ ସତ୍ୟତା ଜ୍ଞାନ-ନେତ୍ରେ ଦିଶେ ।୫।
ଶରୀର-ବସାକୁ ଫେରେ ଭାବ-ଦେଶୁ
ଶାନ୍ତ ନିଜ ଭାବେ ଆସଇ ଆବେଶୁ
ଶୁଣାଏ ପ୍ରଭୁଙ୍କୁ, ତୁମେ ଜଗଦୀଶ ।
ଶରୀର ନେଇ ଆସଛି ମର ଦେଶ ।୬।
ଶିଖାଇ ଯିବାକୁ ନର-ଆଦରଣ
ଶରୀରେ ନିଜକୁ ଲୁଚାଅ ଅବଶ୍ୟ ।୮।
ଶବରୀ ମୁଁ ହୀନା ଅଜ୍ଞାନ-ବିବଶା
ଶରଣ ଚରଣେ କେବଳ ମୋ ଆଶା ।୯।
ଶ୍ରେଷ୍ଠତା ସେବକେ ଦେବାର ଉଦ୍ଦେଶ୍ୟେ
ଶୁଣାଅ ସିନା ଆସିଛ ମୋର ପାଶେ ।୧୦।
ଶକ୍ତିଏ ସୃଷ୍ଟିର ବଇଦେହୀ-ବେଶେ
ଶୂନ୍ୟ ଦେହ ହୋଇଛନ୍ତି ପାଶେ ପାଶେ" ।୧୧।
ଶରୀର ତାଙ୍କର ଅଛି କେଉଁ ଦେଶ
ଶୁଣାଇବି ମୁହିଁ ତୁମରି ଉଦ୍ଦେଶ୍ୟ ।୧୨।

ଶ୍ରୁତିବେତ୍ତା ଗୁରୁ ମତଙ୍ଗ ଯତୀଶ
ଶୁଣାଇଥିଲେ ଯା ଦେଇଁ ଉପଦେଶ ।୧୩।
ଶୁଣିବ ଜଗତ ଏହି ଅବକାଶେ
ଶ୍ରୀନାଥଙ୍କ ଇଛା; ତେଣୁ ମୁଁ ପ୍ରକାଶେ ।୧୪।
ଶ୍ରୁତି-ପରାୟଣ ଋଷିକୁଳ ଈଶ
ଶୁଦ୍ଧ ବୁଦ୍ଧ କୁଶଧ୍ୱଜ ଜ୍ଞାନାଧୀଶ ।୧୫।
ଶ୍ରୁତି ପଢ଼ୁଁ ମୁଖେ ଜନ୍ମିଲା ନାରୀଶ
ଶ୍ରୁତିମତୀ ନାମ ପୁରାଣେ ପ୍ରକାଶ ।୧୬।
ଶୋଭା ରାଜ୍ୟେ ନିଜେ ବେଦପତି ପଣି
ଶ୍ରେଷ୍ଠ କମନୀୟ, ନେତ୍ରେ ଯାହା ଦିଶି ।୧୭।
ଶ୍ରୁତୀଶ ସେ ସବୁ ରଖିଥିଲେ ପାଶେ
ଶାଶ୍ୱତୀ ସୁଷମା ସଂଗ୍ରହର ଆଶେ ।୧୮।
ଶୁଣିଲେ ବିଧାତା ନିଜେ ଜଗଦୀଶ
ଶରୀର ବହିବେ ଆସି ମର୍ତ୍ତ୍ୟ ଦେଶ ।୧୯।
ଶ୍ରୀପତି ପଦାବ୍‌ଜେ ଉପହାର ଆଶେ
ଶୋଭା-ପସରା ଯା ଥିଲା ତାଙ୍କ ପାଶେ ।୨୦।
ଶମ୍ପା-ଦ୍ୟୁତି ଦେଇ କଲେ ନାରୀ ବେଶ
ଶ୍ରୁତିମତୀ ରୂପେ ଥିଲେ ବନ ଦେଶ ।୨୧।
ଶାନ୍ତ କୁଶଧ୍ୱଜ ମନେ ଥିଲା ଆଶା
ଶୀଳ-ଗୁଣ-ବତୀ କନ୍ୟା ରୂପ-ଯଶା ।୨୨।
ଶ୍ରୀପ୍ରଭୁ ହାତରେ ସମର୍ପି ତପୀଶ
ଶରୀର ତେଜିବେ ହେଜି ପରମେଶ ।୨୩।
ଶାୟିତ ଥିଲେ ସେ, ଦେଖି ଅବକାଶେ
ଶୁମ୍ଭ ଦୈତ୍ୟ ଆସି ନିର୍ଦୟେ ବିନାଶେ ।୨୪।
ଶଙ୍କାତେଜି କନ୍ୟା, ଜନକ ଉଦ୍ଦେଶ୍ୟ
ଶୋଚେ, ତପେ ପୂରାଇବ ସେ ଅବଶ୍ୟ ।୨୫।
ଶୁଦ୍ଧ ହେମ-ରୂପ ତପସ୍ୟା-ହୁତାଶେ

ଶତଗୁଣ ହୋଇ ସତତ ବିକାଶେ ।୨୬।
ଶିର ଦଶ ବିଂଶ ବାହୁ ପଦ-ବିଂଶ
ଶୁଚୀଶ ପଉତ୍ର ନିଃଶଙ୍କ ଲଙ୍କେଶ ।୨୭।
ଶୁଚିମତୀ କନ୍ୟା ପାଶେ ପରବେଶି
ଶାନ୍ତ ନୁହେଁ ଦେଖି କନ୍ୟା-ରୂପ-ରାଶି ।୨୮।
ଶୋଭାରେ ବହୁଧା ପ୍ରକୃତିର ବଶେ
ଶୀଳହୀନ ହୁଏ ନର ନାରୀ ପାଶେ ।୨୯।
ଶୁଣାଇଲେ ଅନୁନୟ ଲଙ୍କାଧୀଶ
ଶୋଭା ଏତେ ଧରି ଥିବା ବନଦେଶ; ।୩୦।
ଶୋଭନୀୟ ନୁହେଁ ଆସ ଲଙ୍କାଦେଶ
ଶିରୋଭୂଷା ହେବ ମୋର ଗୋ ନାରୀଶ ! ।୩୧।
ଶୁଣିଲା ନାହିଁ ସେ ଥାଇ ତପ-ବଶ
ଶପ୍ତହେଲା ଦୈତ୍ୟ କରୁଁ କର ସ୍ପର୍ଶ ।୩୨।
ଶୁଣିଲାରେ ନୀଚ ! ଲଭିବୁ ବିନାଶ
ଶେଷହେବ ଏଥିପାଇଁ ତୋର ବଂଶ ।୩୩।
ଶୁଣାଇ ଆପଣେ ରହିଲା ହୁତାଶେ
ଶକ୍ତି ମାନୀ ରକ୍ଷ ଫେରିଲା ହତାଶେ ।୩୪।
ଶୁଚମତୀ ଆସିଅଛି ସୀତାବେଶେ;
ଶମନ ରକ୍ଷର ଲଙ୍କାରେ ପ୍ରବେଶେ ।୩୫।
ଶୀତାଂଶୁ-ବଦନା ଯିବେ ଲଙ୍କା ଦେଶ
ଶରେ ପ୍ରଭୁଙ୍କର ମରିବ ଲଙ୍କେଶ ।୩୬।
ଶତ୍ରୁ ରୂପେ ଭଜୁଅଛି ଅସୁରେଶ
ଶକତି ତାହାର ପରୀକ୍ଷା ପକାଶ ।୩୭।
ଶବରୀ ବଚନ ଶୁଣି ଅବଧେଶ
ଶତ ଧନ୍ୟବାଦ କରିଲେ ପ୍ରକାଶ ।୩୮।
ଶୁଣି ତୁମଠାରୁ ସୀତାଙ୍କ ସନ୍ଦେଶ
ଶ୍ରୁତି-ମୁଖେ ହେଲା ପୀୟୁଷର ପ୍ରାଶ ।୩୯।

ଶୀଘ୍ର ଦେଖିବାକୁ ସୀତା ମୁଖ-ଶଶି
ଶାନ୍ତ ନୁହେଁ ଆଉ ଏ ମାନସ-ନିଶି ।୪୦।
ଶୁଭଙ୍କରୀ ! ରହିବାକୁ ତୁମ ପାଶେ
ଶ୍ରଦ୍ଧା ଥିଲେ ବି ନ ପାରେ ଏ ସକାଶେ ।୪୧।
ଶାଳୀନତାରେ ମୋ ଦୋଷ ଥିଲେ ମିଶି
ଶୀଳ-ସିଦ୍ଧ ନିଜ ଗୁଣେ ଦେବ ନାଶି ।୪୨।
ଶରୀର ନେଉଛି ସିନା ନିଜ ବଶେ
ଶାନ୍ତିରେ ରହିବ ମନ ତୁମ ପାଶେ ।୪୩।
ଶୁଭରେ ବିଦାୟ ଦିଅ ଶାନ୍ତ ଦୃଶା
ଶିଥିଳ ନୋହୁ ଏ ଭାବ ପ୍ରୀତି-ମିଶା ।୪୪।
ଶ୍ରୀରାମ ଚାଲିଲେ ହସେ ଦଶ ଦିଶ
ଶବରୀ ଦୃଷ୍ଟିରୁ ହୁଅନ୍ତେ ଅଦୃଶ୍ୟ ।୪୫।
ଶରୀର ତା' ଜଳେ ଯୋଗର ହୁତାଶେ
ଶମ୍ପା ସମ କିଛି ଯାଇ ରାମେ ମିଶେ ।୪୬।
।ଇତି ।
ଶ୍ରୀ ଭଗବାନର୍ପଣ ମସ୍ତୁ



(କବି 'ଶବରୀ ସନ୍ଦେଶ'ର ଲେଖା ୧୯୬୨ରେ ଆରମ୍ଭ କରି ସମ୍ଭବତଃ ୧୯୬୫ରେ ଶେଷ କରିଥିଲେ; ପ୍ରଥମ ପ୍ରକାଶ କାଳ ୧୯୮୫)

# ଶିଶୁ ଗୀତିକା

-୧-

## ଗାଇବି ଗୀତ ଖେଳିବି ଖେଳ

ଗାଇବି ଗୀତ ଖେଳିବି ଖେଳ ହସ ଖେଳର ଧରତୀ ଏହି
ଯେ ଆଡ଼େ ଦେଖ ଜଗତ ଯାକ ନ ହସି ଖେଳି ରହିଛି କେହି ?

ପୂରୁବ ଦିଗେ ସୁରୁ-ସୂରୁଯ ଲାଲ ଓଠରେ ଗୀତିକା ଗାଏ
ବାଦଲ ଭାଇ ଆଦର କରି କେବେ କେବେ ତା' ଶୁଣି ବି ଯାଏ ।।

ଆକାଶ ଆଇର ଝୁଆପୁଅ କି ? ଜହ୍ନମାମୁଁ ଖେଳଇ ହସି
କଳା ନୀଳିଆ ମେଘ ମାଳିକା ଯାଆନ୍ତି ମିଶି ସେ ଖେଳେ ରସି ।।

ପବନ ଗାଏ ପୋଖରୀ ନାଚେ ବଜାଏ ବାଜା ଲହରୀ ମାଳ
ପୋଖରୀ ମଝି କଇଁ କଢ଼ିଟି ମଥା ହଲାଇ ଦିଅଇ ତାଳ ।।

ବରଗଛରେ ବଗ ପିଲାଟି ଖେଳଇ ଡେଇଁ ଡ଼ାଳକୁ ଡ଼ାଳ
ଜାତି ପିଲାଏ ସାଥୀରେ ତା'ର ଗାଆନ୍ତି ମିଶି 'ତାଲରେ ତାଲ' ।।

ଆମ୍ବ ବଣରେ କୋଇଲି ଶିଶୁ କୁହୂ-କୁହୂ-କୁ ଗାଅଇ ଗୀତି
କାହାରି ଗୀତେ ବାଧା ନ ଦେଇ ଗାଇବି ମୁହିଁ ସବୁଠୁ ଜିତି ।।

ଛୋଟ ବା ବଡ଼ ଯେ କାମ ପଡୁ ଖେଳିବି ତାକୁ ଦେହ ଲଗାଇ
ସମ ବିଷମ ଭାବନା ଯେତେ କର୍ପୂର କରି ଦେବି ମୁଁ ଗାଇ ।।



- ୨ -

## ଧରମା

ବାର ବରଷର ପିଲା ଧରମା
ଆମ ଦେଶର ସେ କାରୁ କରମା
ଦିନେ ପଚାରୁଁ କହିଲେ ତା' ମା'
ବାପା ଖାଇଛନ୍ତି ରାଜ ଦରମା
ଏଗାର ଯାଇଣ ବାର
ପଶିଲାଣି ବାପା ଘରୁ ଗୋଡ଼ କାଢ଼ିବାର ।।୧।।
ଦେଶ-ମାଆର ପାଦ ସମୁଦର
ଯହିଁ ଧୁଅଇ କରି ସମାଦର
ତହିଁ ପଡ଼ିଛି ବାଲୁକା-ଚାଦର
କାମ ହୁଅଇ ରାଜା ବରାଦର
ସୂରୁଯ ଦେବତା ପାଇଁ
ଦେଉଳ ହେବ ଯେ ଜଗତରେ ଥିବ ନାହିଁ ।।୨।।
'ବାପା ସେ'ଠି ତୋର ବଡ଼ ବଢ଼େଇ'
"ମାଆ ! ମୁଁ ଯିବି ସେହିଠାକୁ ଦେଖିଁ"
'ବହୁଦୂର କିଏ ନେବ କଢ଼େଇ'
"ଓଡ଼ିଆ ପୁଅ ମୁଁ ଚରି ଆଡ଼େଇ"
ରହିଯିବି ନୂଆଁ କଥା
ଓଡ଼ିଆ ଜନନୀ ଶିଖୁ ଭୟ କାତରତା ?" ।।୩।।
କେତେ ଧରପା ସଡ଼କ କଡ଼ରେ
କେତେ ପୋଖରୀ ତଡ଼ାଗ ହିଡ଼ରେ
କେତେ ଅଜଣା ମଣିଷ ଭିଡ଼ରେ
ଧୀର ଧରମା ଚାଲିଲା ନି-ଡ଼ରେ
ଧୂଳି, ତା' ପାଦ ମାଡ଼ରେ
ଉଡ଼ି ଲେଖିଗଲା ଗୀତି ଏ ଜାତି ହାଡ଼ରେ ।।୪।।
ଯାଇ ଦେଖିଲା ବଢ଼େଇ ବାରଣ
କାମ କରନ୍ତି, ଧରମା ହରଷ

ଏ କି କଥା ପଶିଏଁ ଯେ ବିରସ
କାହିଁକି ? ଜାଣି ନ ପାରେ
କି ଅଭାବ ? ଯହିଁ ଜାତିଟାଏ ପବୁ ପାରେ ॥୫॥
ଦେଖେ ପାହାଡ଼ ପାହାଡ଼ ପଥର
ନାହିଁ ଚୁନ ବାଲି ଏକ ପତର
ଟଙ୍କୀ ଶଗଡ଼ ଶଗଡ଼ ମାତର
ପରେ, ନାହିଁ ତହିଁ ତା'ର ଖାତର
ତେବେ କିପାଇଁ କାତର
ଦେଉଳ ପରି ମୁଣ୍ଡି ମରା ଅଛି ମାତର ॥୬॥
ଆଜି ଆଦେଶ ହୋଇଛି ରାଜାର
ବୃଥା ନ ପରୁ ଧନ ଏ ପ୍ରଜାର
ମୁଣ୍ଡି ମରା ହେବ ହାତରେ ଯା'ର
ତାକୁ ପୁରସ୍କାର ଟଙ୍କା ହଜାର
ଦେଉଳ ମୁଣ୍ଡି ନ ହେଲେ
ବାରଶହ ମୁଣ୍ଡ ଛିଣ୍ଡା ହେବ ଅବହେଳେ ॥୭॥
ପାରା ଦେଉଳ ଧରମା ଦେଖିଲା
କିର୍ପା ନ ହେଉଛି ମନେ ଲେଖିଲା
ଦଧି ନଉତି ଯେବେ ପଜଖିଲା
ମୁଣ୍ଡି ଠଉରିବ ବୋଲି ଯୋଖିଲା
ସେ'ଠି ସେ ନିଶା ରାତିରେ
ଦେଉଳ ମୁଣ୍ଡି ଟେକି, ଟେକି ଦେଲା ଜାତିରେ ॥୮॥
ଜାଣି ବଢ଼େଇ ଥରିଲେ କାତରେ
ରାଜା ଏ କଥା ଜାଣିଲା ମାତରେ
ଯିବ ଜୀବନ, ଘାତକ ହାତରେ
ଏହା ଶୁଣି ଧରମା ବେଖାତରେ
ଦେଉଳ-ଚୂଳକୁ ଛୁଇଁ
ଡ଼େଇଁ ସାଗରକୁ ଡ଼େଇଁଲା ମରତ ଭୂଇଁ ॥୯॥



-୩-

## ମହାନଦୀ

ଦୁଇ ପାହାଡ଼ର ଛୋଟିଆ ନଈଟି
ମହାନଦୀ ହୋଇ ବହେ
ଗାଆଁ ଗାଉଁଲିର ଛୋଟିଆ କାହାଣୀ
ଦେଶ ସାରା ବୁଲି କହେ ।।୧।।
ମୁହିଁ ମଧ୍ୟ ଦିନେ ବଡ଼ ହେବି ନିଶ୍ଚେ
ଏ ଛୋଟିଆ ଦେହ ଧରି
ଦେଶ-ଗଉରବ କହିବି ଜଗତେ
ଏଇ ମହାନଦୀ ପରି ।।୨।।
ମୋହପରି ଧୂଳି ଖେଳି ମହାନଦୀ
ପାହାଡ଼ ପାଇଲେ ଖେଳେ
ପାହାଡ଼ ପରିକି ବଡ଼ କାମ ସବୁ
ଖେଳିଯିବି ଅବହେଳେ ।।୩।।
ପରସେବା ଲାଗି ପରଶିବା ପାଇଁ
ଆପଣା ଗରଭ ପାଣି
ସାଇତି ରଖିଛି ଏଇ ମହାନଦୀ
କେତେ ଦୂରଦେଶୁ ଆଣି ।।୪।।
ବିତରିବା ପାଇଁ କାତର ନୁହଇ
ନ ନିଏ ବଦଳେ କିଛି
ପାଇବା ଆଶାରେ ଦେଲେ ଦିଆଇଲେ
ଦେବା ଦିଆଇବା ଛି ଛି ।।୫।।
ଛୋଟ ଅବା ବଡ଼ ଯେ ନଈ ଆସିଲେ
ଆଦରେ, ଛାତି ମିଶାଇ
ମହତ ସେ ସିନା ଛୋଟ ବଡ଼ ଭେଦ
ଯେ କେବେ ରଖଇ ନାହିଁ ।।୬।।
ଶେଷେ ଯାଇ ମିଶେ, ମହାସାଗରକୁ

ଅଟି ଆପଣାର କରି
ଏ ମହା ମହୀ କି ଅଟି ଆପଣାର
କରିବି ମୁଁ ସେହିପରି ।।୬।।



-୪-

## ଗଙ୍ଗାଧର

ମେହେର କବି ଗଙ୍ଗାଧର
ମୋହରି ଦେଶର ପୁଅ
ମୋହରି ଭାଷା ରାଇଜ ସାରା
ଢାଳିଲା କବିତା ସୁଅ ।।୧।।
ଏଇ ଦେଶର କେତେ କାହାଣୀ
କେତେ ପରବତ ନଈ
ଗଉରବ ପାଇ ପାରିଲେ ତା'
କଲମ କରୁଣା ପାଇ ।।୨।।
କେଡ଼େ ମହାନ୍ ଶକ୍ତିମାନ୍
ତାହାରି କଲମ ଜଡ଼
ଏ ଦେଶର ଧୂଳି ମାଟି ମଧ୍ୟ
କରି ଦେଇଗଲା ବଡ଼ ।।୩।।
ତା'ରି ଜନମ ଭୂଇଁ ଯେ ଦେଖି
ମୁହିଁ ସେ ଦେଶର ପିଲା
କହିବାକୁ ଯା । ଜଣକ ଆଗେ
ଭାଗ୍ୟ ମୋହରି ଥିଲା ।।୪।।
ତାହାରି ଚଲା ବାଟେ ଚାଲିବି
ଗାଇବି ତାହାର ନାମେ
ଆଦରଣ ତା' ବାଢ଼ି ରଖିବି
ଯେତେ ମୋର କଲା କାମେ । ।।୫।।



-୫-

## ଆଉ କି ଆସିବ ନାହିଁ ?

ଅତି ଛୋଟ ପିଲା ଥିଲି ଦିନେ ମୁହିଁ ସେଦିନ ହଜିଲା କାହିଁ ?
କାନ୍ଦିବାରେ ବି ଆନନ୍ଦ ଥିଲା ସେ ଦିନ ଖୋଜିବି ନାହିଁ ? ॥୧॥
କାହିଁ ସେ ସୁଦିନ ଜାଣିଥିଲି ଯେବେ ମଣିଷ ଗୋଟିଏ ଜାତିର
ଆଜି ଶୁଣେ ଏକ ମଣିଷ ଅନେକ ଦେଶ ଜାତି ଆଉ ନୀତିର ॥୨॥
ସେ ଦିନରେ ଧନ ଧୂଳି ପରି ଦିଶେ, ଧୂଳି ହୋଇଥିଲା ଧନ
ଧନ ହୀନେ ଆଜି ଧନୀର ଜୁଲମ ଦେଖି ସହିବ କି ମନ ? ॥୩॥
ସେ ଦିନ ସୁଖର 'ମଣିଷ ମରିବ' ଯେ ଦିନ ନ ଥିଲା ଜଣା
ଅରଣା-ମରଣ-ପଥରେ ଜୀବନ-ପକ୍ଷୀ ପରା ହୁଏ ବଣା ॥୪॥
କିଏ କହିଦେବ ସେଇଦିନ ମୋର ଛାଡ଼ି ଚାଲିଗଲା କାହିଁ ?
ଝୁରି ମରେଁ ଯେଉଁ ଦିନ ଅବିରତ ଆଉ କି ଆସିବ ନାହିଁ ?॥୫॥

❖❖❖

-୬-

## ମୋ ବଡ଼ ହେବାର ଯାଏ

ଗାଈ ଗୋଠେ ଏକ ଆନେ ହୃଦୟ ଭରି
ଢାଳଇ ନିଗାଡ଼ି ତା'ର ସେନେହ-ଝରି ॥୧॥
ଆନର ଉଦୟ ଚାହିଁ ଆକାଶେ ତାରା
ହସି ହସାଉ ଥାଏ ଯେ ଆକାଶ ସାରା ॥୨॥
ଏକାକୀ ନିଜକୁ ଦେଖି ସରଗ-ଶଶି
ମାସକେ ପନ୍ଦର ଦିନ ନ ପାରେ ହସି ॥୩॥
ଗଛ ନିଜ ଦେହ ପରେ ନେଇ ଆଶ୍ରୟ
ଜୀଆଁଇ ରଖଇ ଗଛ-ଲତା-ନିଚୟ ॥୪॥
ଅନେ ଦେଖ ଆଉ ଜୀବ-ଜଗତ କଥା
ଶିଳା ପରେ ଶିଳା ଥାଏ ଟେକି ତା' ମଥା ॥୫॥

କିନ୍ତୁ ମଣିଷ ଚାହୁଁଛି ମଣିଷ ଲୟ
ମଣିଷେ ମଣିଷ କରେ ଜୀବନେ ଭୟ ॥୬॥
ବଡ଼ ହେଲେ ମୁହିଁ ମନେ ରଖିବି ବଳ
ଯେନେହେ ବାନ୍ଧି ରଖିବି ବିଶ୍ୱ ସକଳ ॥୭॥
ଏକ ପରିବାର ହେବ ଜଗତ ସାରା
ମୋ ବଡ଼ ହେବାର ଯାଏ ନ ଯାଉ ମାରା ॥୮॥



-୭-

## ଜୀବନର ମୂଲ କାହିଁ ?

ନିଖିଳ ଯାକର ଜୀବ-ଜଗତର ଅଛ ଆଜି ଯେତେ ବାଳକ
ଜୀବନ ଉପରେ ଚଢ଼ାଉ ହେଲାଣି ଶୁଖୁନାହିଁ କିରେ ହଲକ ?
ଆମରି ପାଇଁକି କେତେ ହତିଆର ସରଜିତ ହୁଏ ସାଲକ
ଆସ ଆସ ଆଜି ଦେଖିବା କିଏ ସେ ମରଣ-ବାହିନୀ ଚାଳକ
ତାହାରି ଆଗରେ ମଥା
କଚାଡ଼ି ମରିବା ଆମ ମରିବାକୁ ତୋଳିନିଏ କିଆଁ ବ୍ୟଥା ॥୧॥
ଜୀବନରେ ଆଉ କାହିଁଛି ମମତା ଆସରେ ବାହାରି ପଡ଼ରେ
ନର ଆସ ଘର ବରଜି ପଶୁ ଗୁହା ତେଜି ପକ୍ଷୀ ନୀଡ଼ରେ
ଏକଜୁଟେ ଆଜି ଆସ ଭାଇ ସାଜି ଛାତି ପତେଇବା ନିଡରେ
କିଏ ସେ ମାରୁଛି ମାରିବ ପାଇଚି ରଖିଚି ଜିଭେ ତା' ହାଡ଼ରେ
ତାହାରି ଦୁଆରେ ଆଜି
ପତେଇଲା ଛାତି ଭାଚି ଉଠିବରେ ତା' ବୋମା ଗୋଳା ବାଜି ॥୨॥
ଆସ ଯେତେ ଅଛ ବିଶ୍ୱ ଯାକର ହେ ନିଃସ୍ୱ-ଜୀବନ-ଧାରୀ
ରକ୍ଷ-ଶକତି ଆଗରେ ଆମରି ବକ୍ଷ ଦେବାରେ ଫାରି
ଆମରି ମରିବା ପାଇଁ କି କାହିଁକି ଶକତି କେ ଦିଏ ପାରି
ଆମ ଜୀବନ ଯେ କାହିଁକି କାହାକୁ ହେବ ଦୁରୁବହ ଭାରୀ

ତାହାରି ଆଗରେ ଛାତି
ବିଦାରି ଝରିବା ତପତ ରକତ ଜଗତ ଉଠିବ ତାତି ।।୩।।
ଆସରେ ଆସରେ ବାହାରି ଆସରେ ଚପଳ ଚଳାଇ ଚରଣ
ଜୀବନ ଆଗରେ ମରଣ କରାଳ ଯାଚୁଛି କି ନାହିଁ ଶରଣ ?
ଆସରେ ଆସରେ ଶହ ଶହ କରି ଆସ ଆସ ଭରି ଭରଣ
ମର-ମରତକୁ ଅମର ରଖିବା ଆସ ମାଗି ନେଇ ମରଣ
ଜୀବନର ମୂଲ କାହିଁ ?
ଦୁନିଆଁକୁ ଆଜି ଜୀଆଁଇ ରଖିବା ମରଣର ରୂପ ଚାହିଁ । ।।୪।।



-୮-

## ଦେଖିଲି ସେ' ଦିନ

ଦେଖିଲି ସେ ଦିନ ଭିଖାରୀ ଗୋଟାଏ ଆଖିନାହିଁ ତା'ର ଆଖିନାହିଁ
କେବେହେଲେ ତାର ଜଗତର ଏଇ ସରସ ମାଧୁରି ମାଖି ନାହିଁ ।
କିଏ ସରଜିଲା ସରସ ଦୁନିଆଁ କିଏ କଲା ଏଇ ରାତିଦିନ
ଦେଖିବାର ସବୁ ସୁଯୋଗ ତା'ଠାରୁ ନେଇ କରି ଦେଲା ଆଖିହୀନ
ନିଜର ଯା ଅଛି ଦେଖିବାକୁ ପରା ଶକତି ଦିଆ କାହା ଆଣେ
କିଏ ନିରିଦୟ ହୋଇଅଛି ଏତେ କେବେ ହେଲେ କହ କାହା ପାଣେ
ଦେଖିବାର ଇଛା ଦିଆ ହେଲା କିଆଁ ନ ଦେଇଣ ତାକୁ ଆଖି
ଆଖି-ରସନାରେ ସରସ ଦୁନିଆଁ ରସ ନ ପାରିଲା ଦିନେ ଚାଖି
ଆସ ନର, ପଶୁ, ପକ୍ଷୀ ଜୀବ ସବୁ ଆଖି ନାହିଁ ଯାର ଆଖି ନାହିଁ
ସବୁ ଯାକ ଯେତେ ଆଖି ଥିବା ଲୋକ ତୁମ ତରଫର ସାକ୍ଷୀ ନାହିଁ
ରୁଣ୍ଡ ଦୁଆରେ ତୁଣ୍ଡ ଫିଟାଇ ମାଗିନେବା ଆଜି ଆଖ ବେନି
ସୁପ୍ତ-ଚେତନା ଉପ୍ତ କରରେ ଚାଲିବା ହେ କହ କିସ ସେନି
କିଏ ସେ ଦେଇଛି କ'ଣ ଦେଇଛି ଦେଖିବାକୁ ଆଖି ଦେଲା ନାହିଁ ।
ଦିନକୁ ଆମର ରାତି କରିଅଛି କିପାଁ ? ପଚାରିବା ଆସ ଭାଇ

ଆମରି ସିନାରେ ଆଖି ନାହିଁ ତାର ଅଛି ଦେଖି ଆମ ଆଖି ଦେଇ
ନୋହିଲେ ଆମରି ଆଗେ ହାତ ପାତି ଯା ଦେଇଛି ତାହା ଫେରି ନେଇ।
ଉଦର ଆଉ ତା ଭରିବାର ଇଚ୍ଛା ବାହାର ଦେବାର ଭିତରେ
ଫେରାଇ ନେଇ ସେ, କି କରିବ ତାକୁ ଆଖି ନାହିଁ ବା ଯା'ର ହାତରେ।



-୯-

## ଏଭାରେଷ୍ଟ ବିଜୟ

ଏଭରେଷ୍ଟ
ଭାରତର ଗଉରୀ ଶଙ୍କର
ପୃଥିବୀର ଉଚ୍ଚତମ ଶ୍ରେଷ୍ଠ ତମ ଶୃଙ୍ଗ।
ଅବିଜିତ
ରହିଥିଲ ଏ ଯାଏ ବିଜୟୀ
ବପୁ ଖାଲି ନୁହେଁ ତବ ମହିମା ବି ତୁଙ୍ଗ ॥୧॥
କେତେଦିନୁ
କେତେ କେତେ ଶୁଭର ଲଗନ
ହୋଇଅଛି ଅଶୁଭ ପ୍ରତୀତ, ତୁମ ଦେହେ
କେତେ ପାଦ
ପଡ଼ିଅଛି ଆଶା-ଆଶରାରେ
ଫେରିନାହିଁ ଫେରିନାହିଁ କେବେ ଆଉ ଗେହେ ॥
ମାନବର
ସମ୍ମାନିଆ ମନ ମାନିଲା କି
ଆଜି ଯାଇ ଦେଖିନେଲା ସରଗ-ଦୁଆର
ଅବସୋସ
ଆସିଲା କି ମନରେ ତୁମରି
ମହୀୟାନ୍ ! ଦୋଷ ଏକି ? ମଣିଷ-ଛୁଆର ॥୨॥

ହେ ମହାନ୍
ସରଜନା ବିକାଶ ଦିନୁ
ରହିଛି ତ ସବୁଠାରୁ ଉଚ୍ଚେ ମଥା ତୋଳି
ଦେଖିଥିବ
ନରଜାତି ଆଶା-ନଗ ରଡ଼ି
ତୁମରି ଉଚ୍ଚତା କରି ଆସୁଅଛି ଡ଼ୋରି ॥୪॥

ହେ ମାନବ !
ଛୁଇଁ ଫେରିଛତ ଜଗତର-
ଶିର ସମ ଯେ ମହାନ୍ ଶିଖରୀ ହାତରେ
କହ କହ
ମାନବର ଆଶା-କଳପନା
ମଥା ତୋଳେ ଏ ଶିଖରୀ ତଳେ ନା-ଉପରେ ॥୫॥

ନର ଜାତି !
କର ଆଗେ, କରିବା ଆଗରୁ
ଜଗତରୁ ଆଶାୟିତ-ତୋ ଜାତି-ବିଜୟ
କଳପନା-
ତୂଙ୍ଗ ଛୁଇଁବାର ଅଭିଯାନ;
କର କର ଯେ ଆଶାର ଏଭ୍ରେଷ୍ଟ-ଜୟ॥



-୧୦-

## ଜଗତ ଜରତା

ଜଗତ ଜରତା ତୁମେ ଜଗତରେ ବଡ଼ ।
ବଡ଼ ଜଗତରେ ମତେ ବଡ଼ କରି ଗଢ଼ ।।୧।।
ଛୋଟ ଦେହେ ଦିଅ ମୋର ବଡ଼ର ଶକତି

କର୍ମକ୍ଷ ପାଦେ ମୋ ଦିଅ ପ୍ରବଳ ପ୍ରଗତି ।।୨।।
ଆକାଶରୁ ଉଚ୍ଚ କର ଭାବନା ମୋହର
ସାଗରୁ ବିଶାଳ କର ହୃଦ ମନୋହର ।।୩।।
ମୋ ହୃଦ ନିର୍ମଳ ଯଦି ନ କରିବ ସ୍ୱାମୀ
କାହିଁରେ ରହିବ କହ ପ୍ରଭୁ ଅର୍ନ୍ତଯାମୀ ।।୪।।
ବିପତ୍ତି ତ ଦେଇ ପ୍ରଭୁ ବହୁତ ଶିଖିଲି
ଶତ୍ରୁ ମିତ୍ର ସବୁ ସମ ଭାବେ ପରଖିଲି ।।୫।।
ଦେଖିଲି ସୋଦର ଆଉ ଯେତେକ ସୋଦରା
ଆତ୍ମୀୟ ସ୍ୱଜନ ସର୍ବେ ସ୍ୱାର୍ଥର ପସରା ।।୬।।
ହେଜି ନାହିଁ ଖୋଜି ନାହିଁ କେବେ ମୁଁ ସଂପଦେ
ନ ତେଜିବ ବିପଦରେ ପ୍ରଭୁ ପଦେ ପଦେ ।।୭।।
ତୁମ୍ଭ ବିନା ବନ୍ଧୁ ଆଉ ଯାହା ଏ ଜଗତେ
ନ ଦିଅନ୍ତି ଦେଖା ନିଜ ନିଜ ସ୍ୱାର୍ଥ ଗତେ ।।୮।।
ନୟନରେ ଦିଅ ମୋର ପ୍ରଭୁ ଦିବ୍ୟ ଜ୍ୟୋତି
ଦିଶୁଥାଉ ସଦାବେଳେ ସଦାନନ୍ଦ ମୂର୍ତ୍ତି ।।୯।।
ଦୟାକର ତୁମ୍ଭଙ୍କୁ ହେ ନ ଯାଏଁ ମୁଁ ଭୁଲି
ତୁମ୍ଭ କଥା ଭାବି ଭାବି ଜୀବ ଯାଉ ଚାଲି ।।୧୦।।



## (ସମାପ୍ତ)

('ଶିଶୁ ଗୀତିକା' ନାମରେ କେତୋଟି ଗୀତର ପାଣ୍ଡୁଲିପିରେ ଲେଖା ସମୟ ୧୯୫୦ ପାଖାପାଖି ବୋଲି କବି ଉଲ୍ଲେଖ କରିଛନ୍ତି ।)

# ଅନୁଭବର ଅଳିନ୍ଦରୁ

## - ୧ -

## ଡାକୁଆ ବୁଢ଼ାର ସ୍କୁଲ

ବରଗଡ଼ ଜିଲ୍ଲାର ଓଡ଼ିଶା ଓ ଛତିଶଗଡ଼ ସୀମାନ୍ତରେ ଆମ ଗାଁ ଗର୍ଭଣା । ପିଲାଦିନେ ପ୍ରାୟ ସାତ ଆଠ ବର୍ଷ ବୟସ ବେଳେ ଡାକୁଆ ବୁଢ଼ାଙ୍କୁ ସେ'ଠି ଦେଖିଛି । ପାଞ୍ଚ ଛାତିଆ ମଣିଷ । କଳା ମଚମଚ ଦେହ ଉପରେ ଧୋବ ଫରଫର ବାଳଭର୍ତ୍ତି ମୁଣ୍ଡଟିଏ । ଆଇକାତରା ବୋଳା ଖମ୍ବ ଉପରେ ପାଣି କଖାରୁଟିଏ ଥୁଆ ହେଲାପରି ଦିଶେ । ବୟସ ସେତେବେଳେ ସତୁରି ଉପରେ ହୋଇଥିବ । ଟିକିଏ ବି ନଇଁ ନ ଥିଲା ଦେହ, ଚିଲ୍ ଛାଟ୍ । ସେ ବୟସରେ ବି ସେ ବେଶ୍ ବଳିଷ୍ଠ ଜଣାପଡୁଥିଲା । ପ୍ରକୃତରେ ତାଙ୍କ ନାଁ କ'ଣ ଥିଲା, କେହି ଜାଣି ନ ଥିଲେ । 'ଡାକୁଆ ବୁଢ଼ା' ନାଁରେ ହିଁ ତାଙ୍କୁ ବୁଝୁଥିଲେ ସମସ୍ତେ । ତାଙ୍କର ପରିବାର ତାଙ୍କଠି ଶେଷ ହେଲା ବୋଧହୁଏ । ତାଙ୍କ ପରେ ତାଙ୍କରି ସେ ସଡ଼କ କଡ଼ର ଡିହ ଟିକ ଆବୋରି ନ ଥିଲେ କେହି ଉତ୍ତରାଧିକାରୀ ରୂପେ । ପାଳ ଛାଉଣିର ଦୁଇ ବଖରା ଘର । ସୁନ୍ଦର ନ ଥିଲେ ବି ସ୍ୱଚ୍ଛ ଥିଲା । ବଖରାକରେ ତାଙ୍କର ରହିବା ଓ ରାନ୍ଧିବା କାମ ହେଉଥିଲା । ଆଉ ବଖରାଟାକ ପଢ଼ା ଘର । ବିଦ୍ୟାଳୟ ନ କହିଲେ ଭଲ ହେବ । ହେଲେ ତାହା ଗୋଟେ ବିଶ୍ୱବିଦ୍ୟାଳୟ ଥିଲା, ଆମ ଗାଁ ପାଇଁ । ଖାଲି ଅକ୍ଷର ଶିକ୍ଷା ଓ ପଣକିଆ ନୁହେଁ; କାଠ ମିସ୍ତ୍ରୀ, ଇଟା ମିସ୍ତ୍ରୀ କାମ ପଢ଼ା ନ ହେଲେ ବି ଯଥେଷ୍ଟ ଚର୍ଚ୍ଚା ହେଉଥିଲା । ପଢ଼ା ହେଉଥିବା ଘରେ ତାଙ୍କର କୌଣସି ଗୋରୁ ବନ୍ଧା ହେଉଥିବା ମୁଁ ଦେଖିନି । କିନ୍ତୁ ସେ ବଖରାଟାକୁ ବୁଢ଼ା 'ଗୁହାଳ' କହୁଥିଲେ । ସେ ବଖରାରେ ପାଠ ପଢୁଥିଲେ ଆମ ଗାଁର ପିଲା ବୁଢ଼ା ଅନେକେ । ପାଠ ପଢ଼ିସାରି ବାହାରିଲା ପରେ ଯୋଗ୍ୟତା ଥାଏ ପଚିଶ ଘଡା ପଣକିଆ, ରାସକ୍ରୀଡ଼ା ପଠନ ଓ ଓଡ଼ିଆରେ ଲେଖାଥିବା ଯେ କୌଣସି କଥା ପାଠ କରିବା । ଡିଗ୍ରୀ ବା ଉପାଧି ଥିଲା ଗୁହାଳ ପଢ଼ା । ଆମ ଗାଁରେ, ସେତେବେଳର ବିବର୍ତ୍ତନ କ୍ରମରେ ଲୀଳା, ଯାତ୍ରା, ଗୀତାଭିନୟ, ନାଟକ ଆଦି ଯଥା କାଳରେ ଅଭିନୀତ ହେଉଥିଲା । ଏସବୁରେ ମୁଁ ପିଲାବେଳୁ ଏ ଯାବତ୍ ଶୁଣି ଆସିଛି ଯେ ଆମ ଗାଁର ଖ୍ୟାତି ମନେ ରଖିବା ଯୋଗ୍ୟ ଥିଲା । ଏସବୁ ଲୀଳାଠାରୁ ନାଟକ (ଡ୍ରାମା) ପର୍ଯ୍ୟନ୍ତ ସବୁ ଗୀତ ଓ ସଂଳାପ ମାନ ଓଡ଼ିଆ ଭାଷାରେ ହେଉଥିଲା ଓ ଅଭିନେତାମାନେ ସମସ୍ତେ

ପଢ଼ି ମୁଖସ୍ଥ କରି ମଞ୍ଚରେ ସୁନାମ ଅର୍ଜନ କରୁଥିଲେ। ଆମ ଗାଁରେ ସେତେବେଳେ କୌଣସି ବିଦ୍ୟାଳୟ ନ ଥିଲା। ତଥାପି ଗାଁରେ ପୁରାଣ, ସାହିତ୍ୟ ଚର୍ଚ୍ଚା, ପାଲା, ନାଟକ ଆଦିର ଚର୍ଚ୍ଚାରେ କେବେ ମାନ୍ଦା ପଡୁ ନ ଥିଲା। କଥାବାର୍ତ୍ତାରେ ଚର୍ଚ୍ଚା ହେଉଥିଲା ଯେ ମୁଖ୍ୟ ଅଭିନେତା ବା ଚର୍ଚ୍ଚାକାରୀଙ୍କ ଯୋଗ୍ୟତା 'ସୁହାଳ ପଢ଼ା' ଓ ସେମାନଙ୍କ ମାଷ୍ଟର 'ଡାକୁଆ ବୁଢ଼ା'।

ଦୀର୍ଘ ଅଧା ଶହ ବର୍ଷ ଧରି ଗାଆଁଟି ନିରକ୍ଷରତାର ନିଠୁର ନିଗଡରୁ ରକ୍ଷା ପାଇ ଯାଇଥିଲା, ଡାକୁଆ ବୁଢ଼ାଙ୍କ 'ବିନ୍ ମଗା' ଦୟାରୁ। ଡାକୁଆ ବୁଢ଼ା ଗାଁରେ ଚଳୁଥିବା କଥିତ ଭାଷାରେ କଥାବାର୍ତ୍ତା କରୁଥିଲେ। ପାଖର ରାୟପୁର, ରାୟଗଢ଼ (ମଧ୍ୟପ୍ରଦେଶ) ଜିଲ୍ଲାର ଲୋକେ କଥା ହେଉଥିବା ଭାଷାକୁ ଲରିଆ (ଛତିଶଗଢ଼ି) କୁହାଯାଉଥିବା ବେଳେ ଆମ ଅଞ୍ଚଳର ଭାଷାକୁ ଉଡ଼ିଆ ଓ ଲୋକଙ୍କୁ ବି ଉଡ଼ିଆ କୁହାଯାଉଥିଲା। ଲୋକେ ପୁରୀ ଜଗନ୍ନାଥ ଦର୍ଶନକୁ ଗଲେ ଲରିଆମାନଙ୍କ ପରି ଉଡ଼ିଶା (ଓଡ଼ିଶା) ଯାଉଛୁଁ ବା ଯାଇଥିଲୁଁ ବୋଲି କହୁଥିଲେ।

ଡ଼ାକୁଆ ବୁଢ଼ା ଏ ଗାଁକୁ କେମିତି ଆସିଲେ ଓ କେମିତି ରହିଲେ, ପ୍ରାୟ କେହି ସଠିକ୍ ଜାଣି ନ ଥିଲେ। ସେ ଗଣ୍ଡ (ଆଦିବାସୀ) ଜାତିର ଲୋକ ଥିଲେ। ଆମ ଗାଁରେ ତଥା ଆଖପାଖର ଗାଁମାନଙ୍କରେ ସହରା, ବିଂଝାଲ, ସଦିଆ, ଆଦି ଆଦିବାସୀ ଲୋକ ଥିଲେ ବି ଗଣ୍ଡ ଜାତିର ଲୋକ ପ୍ରାୟ କେହି ନ ଥିଲେ। ସେ ସରକାରୀ ଡାକ ବିଭାଗରେ ହର୍କରା ଚାକିରିରେ ଥିଲେ। ଗୋଟିଏ ଡାକମୁଣା, ଖଣ୍ଡେ ବର୍ଚ୍ଛା ଓ ଗୋଟେ ଟାଙ୍ଗି (ପର୍ଶୁ) ଧରି ଛଅ ମାଇଲ ଦୂରସ୍ଥ ଚକରକେନ୍ଦ ଗାଁ ପର୍ଯ୍ୟନ୍ତ ଡାକ ନେ ଆଣ୍ କରୁଥିଲେ ବୋଲି ଶୁଣିଛି। ଅନ୍ତିମ ଦିନ ମାନଙ୍କରେ ସେ ଦୁଇ ବା ତିନି ଟଙ୍କା ମାସିକ ପେନ୍‌ସନ୍ ପାଉଥିଲେ। ସେତେବେଳେ ପ୍ରାଥମିକ ଶିକ୍ଷକମାନଙ୍କର ମାସିକ ବେତନ ଛଅ ଟଙ୍କା ମାତ୍ର ଥିଲା। ଗଣ୍ଡ ଜାତିରେ ଦୁଇଟି ଶ୍ରେଣୀ ଅଛନ୍ତି: ରାଜ ଗଣ୍ଡ ଓ ମେରିଆ ଗଣ୍ଡ। ରାଜଗଣ୍ଡମାନେ ନିଜକୁ କ୍ଷତ୍ରୀୟ ବଂଶଜ କହି ପଇତା ପିନ୍ଧୁଥିଲେ। ଡାକୁଆ ବୁଢ଼ାଙ୍କର ବି ଗୋଟେ ପଇତା ଥିଲା. ଅନୁମାନ ହୁଏ ଯେ, ସେ ମରହଟ୍ଟା ସେନା ସହିତ ଓଡ଼ିଶା ଆକ୍ରମଣବେଳେ ଆସି ଏ'ଠି ରହିଯାଇଥିବେ। କିନ୍ତୁ ସେ ଓଡ଼ିଆ ନ ଥିଲେ। ତାଙ୍କର ମାତୃଭାଷା ବି ଓଡ଼ିଆ ନ ଥିଲା। କିନ୍ତୁ ସେ ଗାଁଟାକୁ ଓଡ଼ିଆ ଭାଷା ପଢ଼ାଇ ଦୀର୍ଘ ଦିନ ଧରି ସାକ୍ଷର ରଖି ପାରିଥିଲେ। ଊନବିଂଶ ଶତାବ୍ଦୀର ଶେଷ ଭାଗରେ (୧୮୯୩ ରୁ ୧୮୯୫ ମଧ୍ୟରେ) ସମ୍ବଲପୁର ଜିଲ୍ଲାର କୋର୍ଟ କଚେରିରେ ହିନ୍ଦୀ ଭାଷା ଚଳିଲା। ଜନଗଣନାରେ ସାଧାରଣ ଲୋକଙ୍କୁ ଲରିଆ ବା ଛତିଶଗଢ଼ି ଭାଷାର ଲୋକ ବୋଲି ଗଣନାରେ ଉଲ୍ଲେଖ ରହୁଥିଲା। ଭାଷା ନେଇ

ଆନ୍ଦୋଳନ ଆରମ୍ଭ ହେଲା । ରାୟପୁର ଜିଲ୍ଲା କାର୍ଯ୍ୟାଳୟରେ ବୈକୁଣ୍ଠ ନାଥ ପୂଜାରୀ ଜଣେ କାର୍ଯ୍ୟକର୍ତ୍ତା ଥିଲେ । ସେ ଅଥକ୍ ପରିଶ୍ରମ କରି ଘୋଡ଼ାରେ ଦଉଡ଼ି ଦଉଡ଼ି ଜନଗଣନା କେନ୍ଦ୍ରମାନଙ୍କରେ ଲୋକଙ୍କ ଭାଷା ଛତିଶଗଡ଼ି ବା ଲରିଆ ନୁହେଁ, ଓଡ଼ିଆ ବୋଲି ଉଲ୍ଲେଖ କରାଇବାରେ କିଛିଟା ସଫଳ ହୋଇଥିଲେ । ସମ୍ବଲପୁରରୁ ଶ୍ରୀପତି ମିଶ୍ର, ବଳଭଦ୍ର ସୂପକାର ତଥା ବ୍ରଜମୋହନ ପଟ୍ଟନାୟକ ଆଦି ବିଶିଷ୍ଟ ବ୍ୟକ୍ତି ଭାରତର ବଡ଼ଲାଟଙ୍କୁ ସିମ୍ଲାରେ ଦେଖାକରି, ସେତେବେଳର ଓଡ଼ିଶାର ପଶ୍ଚିମାଞ୍ଚଳର ଭାଷା ଓଡ଼ିଆ କହି ଏ ଅଞ୍ଚଳଟିକୁ ଓଡ଼ିଶାରେ ରଖାଯିବାକୁ ଦାବି କରିଥିଲେ । ତା'ଫଳରେ ସମ୍ବଲପୁର ଅଞ୍ଚଳରେ ଓଡ଼ିଆ ଭାଷା ରହିଲା । ସେତେବେଳର ସେ ଓଡ଼ିଆ (କଥିତ ସମ୍ବଲପୁରୀ ଭାଷା) ଏବେ ଉନ୍ନତ ଅବସ୍ଥାରେ ଅଛି, କିନ୍ତୁ ଓଡ଼ିଶାର ଭାଷା ସଂପର୍କୀୟ କୌଣସି ସରକାରୀ ବା ବେସରକାରୀ ଅନୁଷ୍ଠାନମାନଙ୍କରେ 'ପ୍ରବେଶ ନିଷେଧ' ନିୟମ ମାନି ରହିଛି । ଆମ ଗାଁରେ ବହୁ ସମୟର ଧରି ସେହି କଥିତ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିଥିବା ଡାକୁଆ ବୁଢ଼ାଙ୍କର ଅମର ଆତ୍ମା କେଉଁ ଲୋକରେ ଥିବେ ଜାଣେନା । ତଥାପି ତାଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧା ଜ୍ଞାପନ କରି ଆମ ଗାଁ ଲାଗିଥିବା ଋଣରୁ ଛାଡ଼ ପାଇବା ଆଶା ରଖୁଛି ।



-୨-

## ସୁରେନ୍ଦ୍ର ସାଏ ଓ ସାଇ ଦୁଏଲ୍

ସାଇ ଏକ ମୂଷା ପ୍ରଜାତିର ଜୀବ; ଓଡ଼ିଆରେ ଝିଙ୍କ । ସାଇମାନଙ୍କ ଏକ ଲମ୍ବା ବିବରରେ ରହଣୀ । ଉଲ୍ଲିଖିତ ବିବରଟି ବନ୍ୟ ବୁଦାରେ ଲୁକ୍କାୟିତ ଥିବାରୁ ସହଜରେ ଦୃଶ୍ୟ ହେଉ ନ ଥିଲା । ଉନ୍ନବିଂଶ ଶତାବ୍ଦୀରେ ବ୍ରିଟିଶ୍ ଶାସନ ବିରୋଧରେ ସମ୍ବଲପୁରର ସୁରେନ୍ଦ୍ର ସାଏ ବା ସୁନ୍ଦର ସାଏଙ୍କର ବିଦ୍ରୋହ ଏକ ଅଲ୍ପ କଳ୍ପିତ ଘଟଣା । ସୁନ୍ଦର ସାଏଙ୍କର ଘନିଷ୍ଠ ସହଯୋଗୀଙ୍କ ମଧ୍ୟରେ ଘେଁସ୍ ଜମିଦାର ମାଧୋ ସିଂ ବରିହାଙ୍କର କଥା ଅନନ୍ୟ ସାଧାରଣ । ସେ ନିଜେ, ତାଙ୍କର ଚାରି ପୁଅ ହଟେ ସିଂ, କୁଞ୍ଜଲ ସିଂ, ବୈରୀ ସିଂ, ଅଏରି ସିଂ ତଥା ତାଙ୍କର ଜୋଇଁ ନାରାୟଣ ସିଂ (ସୋନାଖାନ୍ ଜମିଦାର) ଏ ବିପ୍ଳବରେ ପ୍ରାଣ ଦେଇଥିଲେ । ହଟେ ସିଂ ନିର୍ବାସନ ବା ଦ୍ୱୀପାନ୍ତର ଦଣ୍ଡରେ ଆଣ୍ଡାମାନରେ ପ୍ରାଣପାତ କରିଥିବା ଏକମାତ୍ର ଓଡ଼ିଆ ବିପ୍ଳବୀ ଥିଲେ ।

ଆଗରୁ କୁହାଯାଇଥିବା ବିବରଟି ଭୟାନକ ଝିଙ୍କ ଡରରେ ପ୍ରାୟ ନିର୍ଜନ ରହୁଥିଲା । ବିପ୍ଳବ ସମୟରେ ସୁନ୍ଦର ସାଏଙ୍କର ଅନୁଗତ ଓ ବ୍ରିଟିଶ ମାନଙ୍କର

ଅବିରୋଧୀ ମାନଙ୍କ ମଧ୍ୟରେ ସବୁବେଳେ ଯୁଦ୍ଧ ଲାଗି ରହୁଥିଲା। ଉଭୟେ ଉଭୟଙ୍କର ବିରୋଧରେ ସବୁବେଳେ ସୁବିଧା ସୁଯୋଗ ଖୋଜ୍‌ରେ ଥାଆନ୍ତି। ଘେଁସ୍ ଜମିଦାର ମାଧୋ ସିଂହଙ୍କର ପୁଅମାନଙ୍କ ପରି ତାଙ୍କ ଜମିଦାରୀର ଅଧିକାଂଶ ପ୍ରଜା ମଧ୍ୟ ଏହି ବିଦ୍ରୋହରେ ଲିପ୍ତ ଥିବାର କଥିତ ଅଛି। ଏଣୁ ଘେଁସ୍ ଗ୍ରାମ ସହିତ ଜମିଦାରୀର ଅନେକ ଗ୍ରାମ ବ୍ରିଟିଶମାନେ ପୋଡ଼ି ଦେଉଥିଲେ। ଏଣୁ ସେମାନେ ବିପ୍ଳବରେ ବ୍ୟବହୃତ ହେଉଥିବା ହତିଆର; ଯଥା ଖଣ୍ଡା, ବର୍ଚ୍ଛା, ଧନୁତୀର, ଟାଙ୍ଗୀ (ପଶୁ) ଆଦି ଏହି ଅଗମ୍ୟ ପାଇ ବିବରରେ ଲୁଚାଇ ରଖୁଥିଲେ ଓ ଦରକାର ପଡ଼ିଲେ ସୁରକ୍ଷା ଆଶାରେ ଆତ୍ମଗୋପନ ବି କରୁଥିଲେ।

'ଗୋପୀ କୁଇ୍‌ତା' ନାମରେ ଆଗରୁ ପରିଚିତ ପରେ ବିଜେପୁର ଜମିଦାର ଗୋପୀନାଥ ଗଡ଼ତିଆ ଜାରିଙ୍ଗ୍ ଗାଁର ବାସିନ୍ଦା। ଘେଁସ୍ ଓ ବିଜେପୁର ଜମିଦାରୀ ସୀମାରେ ଥିବା ଭାଟିବାହାଲି ନାମକ ଏକ ଉର୍ବର ଅଞ୍ଚଳକୁ ନେଇ ବିବାଦ ଥିଲା। ବ୍ରିଟିଶ ଶାସକଙ୍କୁ ଧରାଧରି କରି ପ୍ରୋକ୍ତ ଭାଟିବାହାଲି ଅଞ୍ଚଳଟିକୁ ଗୋପୀନାଥ ନିଜ କରାୟତ୍ତ କରିବା ଜାଣି ଘେଁସ୍ ଜମିଦାର ଜାରିଙ୍ଗ୍ ଆକ୍ରମଣ କରି ସେମାନଙ୍କୁ ପରାଜିତ କଲେ। ଫଳରେ ଘେଁସ୍ ଜମିଦାର ମାଧୋ ସିଂ ବରିହା ଓ ଗୋପୀନାଥ ଗଡ଼ତିଆଙ୍କ ମଧ୍ୟରେ ଶତ୍ରୁତା ଏକ ସ୍ଥାୟୀ ତଥା ମାରାତ୍ମକ ରୂପରେ ରହିଲା। ଗୋପୀନାଥ, ଘେଁସ ଜମିଦାର ମାଧୋ ସିଂ ଓ ତାଙ୍କର ପରିବାରକୁ ବ୍ରିଟିଶ ଶାସନ ବିରୋଧୀ ବିପ୍ଳବୀ ସୁନ୍ଦର ସାଏଙ୍କ ସପକ୍ଷ ଓ ସାହାଯ୍ୟକାରୀ ବୋଲି ପ୍ରମାଣ କରାଇବାକୁ ଲାଗିଲେ। ତା'ପରେ ବିପ୍ଳବୀ ଘେଁସ ବରିହା ପରିବାରର ଟିକିନିଖି ବିବରଣୀ ନିଜେ ଜାଣି, ବ୍ରିଟିଶମାନଙ୍କୁ ଜଣାଇବାକୁ ଅନେକ ଗୁପ୍ତଚର ରଖିଲେ। ସେମାନଙ୍କ ମଧ୍ୟରେ ଶ୍ରୀମତ୍ ଚୌକିଦାର ଓ ଏକ ଭାଟ ଦମ୍ପତି ଶନୁ ଭାଟ ଓ ଫଗ୍‌ନି ଭାଟେନ୍ (ଭାଟାଣୀ) ମୁଖ୍ୟ ଥିଲେ। ଏମାନେ ଘେଁସ ନିକଟବର୍ତ୍ତୀ ସମ୍ବଲପୁର - ପଦ୍ମପୁର ରାସ୍ତା କଡ଼ରେ ଥିବା ଏକ ପାହାଡ଼ିଆ ସତ୍ରାଜଙ୍ଗଲ ମଧ୍ୟରେ ରହି ଆଖପାଖ ଗାଁରେ ଭିକ୍ଷା କରିବା ବାହାନାରେ ଖବର ସଂଗ୍ରହ କରୁଥିଲେ। ରାସ୍ତାର ଅପରପଟରେ ଥିଲା ବନାବିରା ଗାଁ ସୀମାରେ ଏକ ସ୍ଥାନ 'ସାହେବ ଡେରା'। ଏ ସ୍ଥାନଟି ବିଦ୍ରୋହୀ ଘେଁସ ଅଞ୍ଚଳର ଖବରମାନ ପାଇବାକୁ ସମ୍ବଲପୁର ଅପେକ୍ଷା ଶୀଘ୍ରତା ଦୃଷ୍ଟିରୁ ସୁବିଧାଜନକ ଥିଲା। ଏହି ସ୍ଥାନକୁ ମୁଖ୍ୟ ରହିବା ସ୍ଥାନ କରିଥିଲା ଅନ୍ୟ ଗୁପ୍ତଚର ଶ୍ରୀମଦ୍ ଚୌକିଦାର।

ମାଧୋ ସିଂ ବରିହା ସୁନ୍ଦର ସାଏଙ୍କର ପରାମର୍ଶଦାତା ତଥା ଅତି ବିଶ୍ୱସ୍ତ ସହଯୋଗୀ ଥିଲେ। ତାଙ୍କର ଚାରି ପୁତ୍ର ହଟେ ସିଂ, କୁଞ୍ଜଲ ସିଂ, ବୈରୀ ସିଂ ଓ ଅଏରି

ସିଂ - ମଧ୍ୟ ଅନୁରୂପ ଯୋଦ୍ଧା ଓ ସାହସୀ ଥିଲେ। ଘାଟୀ ଜଗାରଖାରେ ସେଁସର ବରିହା ପରିବାରଙ୍କର ଯଥେଷ୍ଟ ସୁନାମ ଥିଲା। ପାର୍ଶ୍ୱସ୍ଥ ନିଶାଘାଟି ଓ ସିଂହୋଡ଼ା ଘାଟି ଦ୍ୱୟ (ସମ୍ବଲପୁର ରାୟପୁର ରାସ୍ତା ମଧ୍ୟରେ ଅଛି) ଏମାନଙ୍କ ଜିମାରେ ରହି ଇଂରେଜ ସେନା ଓ ସେନାପତିମାନଙ୍କ ହତ୍ୟାସ୍ଥଳୀ ରୂପେ ପରିଣତ ହୋଇଥିଲା ଏକାଧିକ ବାର। ମାଧୋ ସିଂଙ୍କର ଚତୁର୍ଥ ପୁତ୍ର ଅଏରି ସିଂ ଗାଁମାନଙ୍କରୁ ଖାଦ୍ୟ ସଂଗ୍ରହ ଓ ତାକୁ ଘାଟିସ୍ଥାନମାନଙ୍କୁ ଯୋଗାଣ କାମ କରୁଥିଲେ। ଏ କାମ ଅତି ଗୋପନୀୟ ଭାବେ ସମ୍ପନ୍ନ ହେଉଥିଲା। ଆହୁରି ଏକ ଗୁରୁତର କାମର ଦାୟିତ୍ୱ ତାଙ୍କ ଉପରେ ଥିଲା ଯେ, ମାଧୋ ସିଂ ଓ ସୁନ୍ଦର ସାଏଙ୍କ ମଧ୍ୟରେ ସମନ୍ୱୟ ରକ୍ଷା ତଥା ବିପ୍ଳବାତ୍ମକ ଗୁପ୍ତ କାର୍ଯ୍ୟକ୍ରମର ସନ୍ଦେଶ ଦେବା ନେବା। ଏଣୁ ସୁନ୍ଦର ସାଏଙ୍କ ସେ ଅତି ବିଶ୍ୱସ୍ତ ତଥା ପ୍ରିୟତମ ଯୁବକ ଥିଲେ। ଅଏରି ସିଂଙ୍କ ପିଛାରେ ଲାଗି ରହିଲେ ଶ୍ରୀମତ୍ ଚୌକିଦାର ଓ ଭାଟ ଦମ୍ପତି। ସମ୍ବଲପୁର ପଦ୍ମପୁର ରାସ୍ତା ପାଖରେ ଥିବା ସାହେବଡେରା, ପାହାଡ଼ିଆ ପତ୍ରା ଜଙ୍ଗଲ (ଏବେ ଭାଟେନ ଡୁଙ୍ଗ୍ରି ନାମ ପାଇଛି) ତଥା ସାଇ ବେର୍ଣ୍ଣି ପ୍ରାୟ କୋଶେ ଲେଖା ବ୍ୟବଧାନରେ ଅବସ୍ଥିତ। ଶ୍ରୀମତ୍ ଚୌକିଦାର ଓ ଭାଟ ଦମ୍ପତି ଦିନେ ଅଏରି ସିଙ୍କର ଦେଖା ପାଇ ସାହେବ ଡେରାରୁ କେତେ ଜଣ ସେନା ସହ ତାଙ୍କର ଅନୁଧାବନ କଲେ। ମାତ୍ର ଅଏରି ସିଂଙ୍କର ପତ୍ରାଜଙ୍ଗଲ ମଧ୍ୟରେ ହଠାତ୍ ଅନ୍ତର୍ଦ୍ଧାନ ସେମାନଙ୍କର ବିରାଟ ଆଶାକୁ ଧୂଳିସାତ କରିଦେଲା। ସେମାନଙ୍କର ଆଶା ଥିଲା ଅଏରି ସିଂଙ୍କୁ ଜୀବନ୍ତ ଧରାଇ ପାରିଲେ ବହୁ ମୂଲ୍ୟବାନ୍ ଇନାମ୍ ଓ ଜାଗିର୍ ପାଇବେ। ବିଜେପୁର ଓ ଉତ୍ତାଳ ଜାଗିର୍ ତ ଏପରି ଗୁପ୍ତଚରଗିରିର ଇନାମ୍ ବୋଲି ଏବେ ବି ଲୋକେ କଥା କଥାକେ କହନ୍ତି। ଅଏରି ସିଂଙ୍କୁ ନ ପାଇ ନିରାଶ ମନରେ ଫେରୁଥିବା ବେଳେ ଅଏରି ସିଙ୍କର ପ୍ରଭୁଭକ୍ତ ବାଣ୍ଟିଜୁକୁରକୁ ଦେଖିଲେ ଯେ ସେ ସାଈ ବିବରରୁ ଫେରୁଛି। ସାହେବଡେରାରୁ ଆସିଥିବା ବେନ୍ଦ୍ରା (ସାହେବ) କୁ ସେମାନେ ସାଇ ବିବରକୁ ଦେଖାଇ ଦେଲେ। ବିବରଟିର ମୁହଁକୁ ଏକ ବଡ଼ ପଥରରେ ବନ୍ଦ କରି କୁଟା କାଠି ଓ ଶୁଖା କାଠ ଜଳାଇବାରୁ ବିବରଟି ପ୍ରବଳ ଧୂଆଁରେ ଭର୍ତ୍ତି ହୋଇଗଲା। ଅଏରି ସିଂ ବିବର ମଧ୍ୟରେ ଅଣନିଃଶ୍ୱାସୀ ହୋଇ ପ୍ରାଣତ୍ୟାଗ କଲେ। ଅଏରି ସିଂଙ୍କ ଏହି ଦୁର୍ବିସହ ମୃତ୍ୟୁ ପରେ ସେଁସ୍ ବିପ୍ଳବର ଅଧାଅଧି ସମାପ୍ତି ଘଟିଲା ବୋଲି କହିବା ଅତ୍ୟୁକ୍ତି ନୁହେଁ। ପିତା ମାଧୋ ସିଂ ବରିହା ପ୍ରିୟ ପୁତ୍ର ଅକାଳ ଓ ଅନାକାଂକ୍ଷିତ ମୃତ୍ୟୁରେ ହତପ୍ରାଣ ପ୍ରାୟ ହୋଇ ସେଁସ୍ ଛାଡ଼ି ତାଲଖୋଲ ଜଙ୍ଗଲରେ ଗୋପନ ବାସ କରି ରହିଲେ। ଏହି ଦୁର୍ଦ୍ଦିନରେ କୁଞ୍ଜଲ ସିଂ କମଲ ସିଂ ଓ ଶାଲେଗ୍ରାମ୍ ବରିହା ଆଦି

ବିପ୍ଳବୀମାନେ ଡେବ୍ରିଗଡରେ ଥିଲେ। କୁଞ୍ଜଲ ସିଂ ତାଙ୍କର ଗୁପ୍ତଚର ସୀତ୍ କାବ୍‌ରିଠାରୁ ଜାଣିଲେ ଏ ଦୁଃଖଦ ଘଟଣାର ଇତିବୃତ୍ତି। ତେଣୁ ସେମାନେ ରାତାରାତି ଫେରିଲେ। ସାଇ ବିବରରେ ଅଏରି ସିଂ ମୃତ୍ୟୁ ପାଇଁ ସେତେ ଅଣନିଃଶ୍ୱାସୀ ହୋଇଥିବେ ତା'ଠାରୁ ଅଧିକ ଅଣନିଃଶ୍ୱାସୀ କରି ଦେଇଥିଲା ପ୍ରତିଶୋଧର ନିଆଁ ଦୂରାଗତ ବିପ୍ଳବୀମାନଙ୍କୁ। ଗୋପୀନାଥ ଗଡ଼ତିଆ ସ୍ୱସ୍ଥାନ ତ୍ୟାଗ କରି ରେମଣ୍ଡାରେ ରହୁଥିବା ଖବର ପାଇଲେ। ସେମାନେ ରାସ୍ତାକଡ଼ର ଭାଟେନ୍ ଡଙ୍ଗରିରେ ଭାଟ ଦମ୍ପତିଙ୍କୁ ଭେଟିଲେ। ଶନୁ ଭାଟ ସେହି ଜଙ୍ଗଲ ଭିତରେ ପଳାଇ କ୍ଷତବିକ୍ଷତ ହୋଇ ଆତ୍ମଗୋପନ କଲା। ତା'ର ସ୍ତ୍ରୀ ଫଗ୍‌ନି ଭାଟ କୁଞ୍ଜଲ ସିଂଙ୍କ ଖଣ୍ଡା ଚୋଟରେ ପ୍ରାଣତ୍ୟାଗ କଲା। ସେତିକିରେ କୁଞ୍ଜଲ ସିଂଙ୍କର କ୍ରୋଧ ଶାନ୍ତ ହେଲା ନାହିଁ। ଭାଟନିର ସ୍ତନ ଯୁଗଳକୁ କାଟି ସ୍ତନହୀନ ଶବକୁ ରାସ୍ତାକଡ଼ର ଏକ ମହୁଲ ଗଛରେ ଝୁଲାଇ ରଖିଲେ। ଆଉ କାହାକୁ ଜଣାଇବାକୁ ପଡ଼ିଲା ନାହିଁ ଘଟିଥିବା ଘଟଣାର କାହାଣୀ। କୁଞ୍ଜଲ ସିଂ ତଥା ସମସ୍ତ ବିପ୍ଳବୀଙ୍କ ହାତରେ ଏହା ପ୍ରଥମ ତଥା ଶେଷ ନାରୀହତ୍ୟା ବୋଲି କୁହାଯାଏ। ସେ ମହୁଲ ଗଛ ଏବେ ଅଛି କି ନାହିଁ କେଜାଣି। ମାତ୍ର ବିଘଟିତ ଘଟଣାର ସ୍ମୃତି ଜାରି ରଖେ ସେ ସ୍ଥାନର ନାମ ଭାଟେନ୍ ଡଙ୍ଗ୍‌ରି।

କୁଂଜଲ ସିଂ ଓ କମଲ୍ ସିଂ ସାଇ ବିବରକୁ ଆସି ଅଏରି ସିଂଙ୍କର ଉଦ୍ଦେଶ୍ୟରେ ଅଶ୍ରୁ ତର୍ପଣ କରି ଅର୍ଦ୍ଧ ଦଗ୍ଧ ବିପ୍ଳବୀଙ୍କର ଶବ ସତ୍କାର କରିବାର ଲୋକେ କହନ୍ତି। କିଛି ଦିନ ପରେ ଅଏରି ସିଂଙ୍କୁ ଲୋକେ ଭୁଲିଗଲେ, ମାତ୍ର ବିପ୍ଳବୀ ବୀର ସୁନ୍ଦର ସାଏ ତାଙ୍କର ପ୍ରିୟତମ ବିଶ୍ୱସ୍ତ ଯୁବ ବିପ୍ଳବୀଙ୍କୁ ଭୁଲି ପାରିଲେ ନାହିଁ। କିଛି ଦିନ ପରେ ସେ ଏକ ନିର୍ଜନ ଜହ୍ନ ରାତିରେ ସାଇ ବିବରକୁ ଆସି ଅଶ୍ରୁ ଅର୍ଘ୍ୟ ଢ଼ାଳି ସମସ୍ତଙ୍କ ଅଜାଣତରେ ସ୍ୱସ୍ଥାନ ପ୍ରତ୍ୟାବର୍ତ୍ତନ କରିଥିବା କଥା ଇତିହାସରେ ନ ଥିଲେ ବି ଲୋକ ମୁଖରେ ଅଛି।

ସେ ଆସିଥିବେ କି ନାହିଁ କେହି ଦେଖି ନାହାନ୍ତି, ବିଶ୍ୱାସ କରିବା ପାଇଁ କିଛି ପ୍ରମାଣ ନାହିଁ। ମାତ୍ର ଲୋକ ବିଶ୍ୱାସ କହେ, ସେ ଆସିଥିବେ ଏବଂ ଏବେ ବି ଆସୁଥିବେ ତାଙ୍କର ଅନୁରକ୍ତ ଅଏରି ସିଂଙ୍କ ପ୍ରାଣତ୍ୟାଗ ସ୍ଥଳୀକୁ।



-୩-

# ପ୍ରଥମ ଶ୍ରେଣୀ ଆଜ୍ଞା

ମୋର ପିଲା ଦିନର କଥା । ବୋଧହୁଏ ୧୯୩୨-୩୩ ସାଲ ହୋଇଥିବ । ବୟସ ପାଞ୍ଚ ବର୍ଷ ପୂରିଲା ପରେ ଇସ୍କୁଲ ଯିବା କଥା; ଗଲି । ଆମ ଗାଁରେ ସେତେବେଳେ ସ୍କୁଲ ନ ଥିଲା । ପାଖରେ କନର୍ଗା ଗାଆଁ । ସେଠାକାର ସ୍କୁଲକୁ ଗଲି । ଆମ ଗାଁ ପରି ପ୍ରାୟ ସାତଖଣ୍ଡ ଗାଁର ପିଲା ସେଠିକି ପଢ଼ିବାକୁ ଯାଉଥିଲେ । କନର୍ଗା ସମ୍ବଲପୁର ରାଜା ବଳରାମ ଦେବଙ୍କ ଅନ୍ୟତମ ରାଜଧାନୀ ଥିଲା ଓ ଏଠାରେ ଏକ ସାପ୍ତାହିକ ହାଟ ବସୁଥିବାର ସେ ପର୍ଯ୍ୟନ୍ତ ଲୋକ ମନେ ରଖିଥିଲେ । ବ୍ରିଟିଶ ରାଜୁତିର ଅବିଭକ୍ତ ସମ୍ବଲପୁର ଜିଲ୍ଲାର ହାତ ଗଣତି ଯେଉଁ କେତୋଟି ସ୍କୁଲ ବସିଥିଲା ସେ ଭିତରୁ ଗୋଟିଏ କନର୍ଗାରେ ଥିଲା । ଖ୍ରୀଷ୍ଟାବ୍ଦ ୧୮୫୪ ପୂର୍ବରୁ ପ୍ରତିଷ୍ଠିତ ହୋଇଥିବା ସ୍କୁଲର ରେକର୍ଡ କହେ । ପାଞ୍ଚୋଟି ଶ୍ରେଣୀ ପାଇଁ ଚାରି ବଖରା ଘର ଓ ଦୁଇ ପାଖରେ ଲମ୍ବା ପ୍ରଶସ୍ତ ବାରଣ୍ଡା । ଗୋଟିଏ ବାରଣ୍ଡାର କିଛି ଅଂଶ ସମୟ ସମୟରେ ମାଷ୍ଟରଙ୍କର ସାମୟିକ ରନ୍ଧାଘର ହୁଏ । ସ୍କୁଲ ଆଗରେ ସମଲେଇ ଗୁଡ଼ି, ଖଡ଼ ଛାଉଣିର ଛୋଟ ପର୍ଛିଟାଏ, ଆଗରେ ଗଛର ଖମ୍ବ ଦୁଇଟା; ସମଲେଇ, ସିନ୍ଦୂର ସର୍ ସର୍; ମୂର୍ତ୍ତିର ମୁହଁ ବାରି ହେଉ ନ ଥାଏ । ସ୍କୁଲର ପଛପଟ ପୋଖରୀ ସମଲେଇ ବନ୍ଧ, ପଦ୍ମବନ ଭରପୂର ।

ଆମେ ଦୁଇ ଓଳି ପଢ଼ିବାକୁ ଯାଉ ପ୍ରାୟ ଦୁଇ ମାଇଲ ବାଟ ଚାଲି । ଖରା ଓ ବର୍ଷା ଦିନ ଛାଡ଼ି ଯିବା ଆସିବାରେ ସେତେ କଷ୍ଟ ଜଣା ପଡୁ ନ ଥାଏ । ସରକାରଙ୍କ ସ୍କୁଲ, ମାତ୍ର ଗାଁଟାର ସମ୍ପତ୍ତି ହୋଇଥାଏ । ସ୍କୁଲର ମରାମତି ବାଡ଼ବନ୍ଦୀ ଆଦି ସବୁ କାମ ଗାଁ ବାସୀ କରନ୍ତି । ସ୍କୁଲ ଘରେ ଅଧିକାଂଶ ଦିନ ଗାଁର ପଞ୍ଚ ଗୌନ୍ତିଆ ବସି ସ୍କୁଲ ତଥା ଗାଁର ଯାବତୀୟ ନ୍ୟାୟ ନିଷ୍ପତ୍ତି କରାଯାଏ; ସ୍କୁଲର ପାଠ ପଢ଼ାରେ ବାଧା ନ ଦେଇ । ଗୌନ୍ତିଆଙ୍କର କ୍ଷମତା ବ୍ରିଟିଶ ଜମାନାରେ ବେଶ୍ ମନେ ରଖିବା ଭଳି ଥିଲା । ତାଙ୍କ ହାତରେ ଗାଁର ଭଲ ଭୋଗରା ଜମିର ଜମାଣି ସହ ଗାଁ ଭିତରର ଡିହ ବାଡ଼ି, ଗୋଚର ଓ ଗ୍ରାମ ଜଙ୍ଗଲ ଜମି ଗୁଡ଼ିକର ଦେବା ନେବା କ୍ଷମତା ବି ଥିଲା । ତା' ବାହାରେ ଗାଁର ସାଧାରଣ ରୟତି ଜମିଗୁଡ଼ିକର ବିକ୍ରିବଟା ବି ତାଙ୍କରି ଦସ୍ତଖତ ବିନା ହେଉନଥିଲା । ସେଥିରେ ବିକ୍ରି ମୂଲ୍ୟର ଟଙ୍କାରେ ଚାରିଅଣା 'ଫିକ୍' ରୂପେ ତାଙ୍କର ବିହିତ ତଥା ସମ୍ମତ ପାଉଣା ଥିଲା । ଗାଁର ରେଜିଷ୍ଟ୍ରିଖାନା କହିଲେ ଚଳିବ । ଗାଁରେ ଝାଙ୍କର ଓ ଚୌକିଦାର ଦୁଇଜଣ, ସରକାରୀ ଜାଗିର ଜମି ପୁରୁଷାନୁକ୍ରମିକ ଭୋଗ କରି

ଗ୍ରାମ ସେବା ଉଦ୍ଦେଶ୍ୟରେ ଥାଆନ୍ତି। ସେ ଦୁହେଁ ରାତିରେ ଗାଁ ପ୍ରହରା ଓ ଗାଁର ଜନ୍ମ ମୃତ୍ୟୁ ହିସାବ ପୋଲିସ ଥାନାରେ ଲେଖାଇବା ଦାୟିତ୍ୱ ସହ ଗାଁକୁ ସରକାରୀ କର୍ମଚାରୀ ଆସିଲେ ତାଙ୍କର ସାହାଯ୍ୟ କରିଥାନ୍ତି। ସରକାରୀ କର୍ମଚାରୀ ଗାଁକୁ ଆସିଲେ ସେମାନେ ଗାଁର ଅତିଥି ହୁଅନ୍ତି ଓ ଆତିଥ୍ୟ ଦିଅନ୍ତି ଗୌନ୍ତିଆ। ବୁଲା ବାବାଜୀ ବୈଷ୍ଣବ ମଧ୍ୟ ସେହି ଶ୍ରେଣୀର ଅତିଥି ହୋଇ ଗୌନ୍ତିଆଙ୍କଠାରୁ ଆତିଥ୍ୟ ଦାବି କରନ୍ତି।

ସ୍କୁଲରେ ଗାଁ ପଞ୍ଚାୟତି ବିଚାରରେ ସଦ୍ୟ ସ୍କୁଲ ମରାମତି ଖର୍ଚ୍ଚର ହିସାବ ହେଉଥାଏ। ଖର୍ଚ୍ଚ, ଗାଁ ତରଫରୁ ହୋଇଥାଏ ବଡ଼ ମାଷ୍ଟ୍ରେ ହିସାବ ବୁଝାଉଥାନ୍ତି ଟଙ୍କାରୁ ପାହୁଲା ପର୍ଯ୍ୟନ୍ତ। ସେତେବେଳେ ମୁଦ୍ରା ହିସାବ ଟଙ୍କାରୁ ପାହୁଲା ପର୍ଯ୍ୟନ୍ତ ହେଉଥାଏ। ଟଙ୍କାକେ ଷୋଳ ଅଣା, ଅଣାକୁ ଚାରି ପଇସା, ଆଠ ଅଧଲା ଓ ବାର ପାହୁଲା ହୁଏ। ସାରା ଗାଁର ଖଜଣା (ସ୍ଥାନୀୟ ଭାଷାରେ ମାଲ୍‌ଗୁଜାରି) ଅସୁଲ କରି ଗୌନ୍ତିଆ ସରକାରଙ୍କୁ ବୁଝାନ୍ତି। ଏଣୁ ଗୌନ୍ତିଆଙ୍କୁ ମାଲ୍‌ଗୁଜାର କୁହାଯାଏ। ଅସୁଲ ଖଜଣାରୁ କିଛି ଅଂଶ 'ଶେସ୍' ନାଁରେ ଗୌନ୍ତିଆ ପାଆନ୍ତି। ଝାଙ୍କରି, ଚୌକିଦାରି ଜମି ବ୍ୟତୀତ ବାକି ରୟତି ଜମିର ବନ୍ଦୋବସ୍ତ ଅନୁଯାୟୀ ନିର୍ଦ୍ଧାରିତ ମାଲ୍‌ଗୁଜାରି ପାଇଁ ଗୌନ୍ତିଆ ସରକାରଙ୍କ ଠାରେ ଦାୟୀ ରହନ୍ତି। କୌଣସି ରୟତି ତିନି ବର୍ଷ ବା ତଦୁର୍ଦ୍ଧ ସମୟ ଖଜଣା ଦେଇ ନ ପାରିଲେ ଅନାଦାୟ ଜମିକୁ ଗୌନ୍ତିଆ କଚେରିରେ କେଶ୍ କରି ବୈବାସିତ (ଜମି ଦଖଲରୁ ବିଚ୍ୟୁତ) କରିପାରିବା ନିୟମ ଥିଲା। ଏହା C.P.L.R. (ସେଣ୍ଟ୍ରାଲ୍ ପ୍ରଭିନ୍‌ସ ଲେଣ୍ଡ୍ ରେକର୍ଡ ଏକ୍ଟ) ଅନ୍ତର୍ଭୁକ୍ତ ଥିଲା। ଏଣୁ ଗୌନ୍ତିଆଙ୍କୁ ଗାଁ ସାରା ମାନିବାକୁ ଏକରକମ ବାଧ୍ୟ ଥିଲେ।

ମୁଁ ସ୍କୁଲକୁ ଯିବାର କିଛି ଦିନ ପରେ ଏପରି ଏକ ସଭା ଚାଲିଥାଏ। ବଡ଼ ମାଷ୍ଟ୍ରେ କହିଲେ କାଲି ଆମ ସ୍କୁଲକୁ ସାହେବ ଆସିବେ। ଏଣୁ ସେଥିପାଇଁ କ'ଣ କ'ଣ କରାଯିବ ବିଚାର ଚାଲିଲା। ଖିଆପିଆ ଜିନିଷ ପାତି ଗୌନ୍ତିଆ ଘରୁ ଆସିବ, ସ୍କୁଲ ଘରେ ରନ୍ଧା ହେବ। ସାହେବ ଖାଇବେ; ପ୍ରଥମ ଶ୍ରେଣୀ ମାଷ୍ଟ୍ରେ ସେ କିମାରେ ରହିବେ। ପିଲାଙ୍କୁ ଜଣାଇ ଦିଆଗଲା କାଲି ସମସ୍ତେ ସଫା ସୁତୁରା ଲୁଗାପଟା ପିନ୍ଧି ଆସିବେ। ଆରଦିନ ଆମେ ଯେତେ ପାରିଲୁ ସଫା ସୁତୁରା ହୋଇ ଗଲୁ।

ବଡ଼ ମାଷ୍ଟ୍ରେ କହିଲେ, ଏଥର ଯେଉଁ ସାହେବ ଆସୁଛନ୍ତି ସେ ଜଣେ ବିଖ୍ୟାତ ଲୋକଙ୍କ ପୁଅ, ଚନ୍ଦ୍ରମୋହନ ମହାରଣାଙ୍କ ପୁଅ ଶରତ ଚନ୍ଦ୍ର ମହାରଣା। ଚନ୍ଦ୍ରମୋହନ ମହାରଣା ଶିକ୍ଷା ଜଗତରେ ପ୍ରସିଦ୍ଧି ପାଇ ସାରିଥାନ୍ତି ପାଠ୍ୟ ପୁସ୍ତକ ରଚନାରେ, ଭକ୍ତ କବି ମଧୁସୂଦନ ରାଓଙ୍କ ସଙ୍ଗେ। ପ୍ରଥମ ଓଡ଼ିଆ ପଢ଼ା ବହି

ଏମାନେ ରଚନା କରିଥିବା ସମସ୍ତେ ଜାଣି ସାରିଥାନ୍ତି। ଶିଶୁବୋଧ, ବାଳବୋଧ, ସାହିତ୍ୟ ପ୍ରବେଶ, ସାହିତ୍ୟ କୁସୁମ ତଥା ସାହିତ୍ୟ ପ୍ରସଙ୍ଗ କ୍ରମରେ ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ। ଆସୁଥିବା ସାହେବ ଶରତଚନ୍ଦ୍ର ମହାରଣାଙ୍କୁ ଦେଖିବାକୁ ଆମ ଆଜ୍ଞାମାନଙ୍କ ସହ ସଭାର ସମସ୍ତଙ୍କର ଆଗ୍ରହ ଦେଖି ଆମର ବି ଆଗ୍ରହ ନୁହେଁ ତ, ଉତ୍କଣ୍ଠା ଥାଏ।

ସାହେବ ଆସିଲେ ସକାଳ ନଅଟାରେ। ପ୍ରଥମେ ଗାଁରେ ଗୌନ୍ତିଆ ଓ ପଞ୍ଚମାନଙ୍କ ସହ ଆମର ଆଜ୍ଞାମାନେ ନମସ୍କାର ଜଣାଇ ପାଛୋଟି ନେଲାପରେ ଆମ ପାଳି। ଆମର ଧାରଣା ଥାଏ ସାହେବ ଜଣେ ଗୋରା ଲୋକ ହୋଇଥିବେ ବୋଲି। ହେଲେ ଏ 'ସାହେବ ଆଜ୍ଞା' ଓଲଟା ଅର୍ଥାତ୍ ଚିକ୍କଣ କଳା ରଙ୍ଗର ଲୋକ। ଏଣୁ ସାହେବ ଅର୍ଥ ସ୍କୁଲର ଭଲମନ୍ଦ ଦେଖିବା ପାଇଁ ଜଣେ ସରକାରୀ ଲୋକ ବୋଲି ଧାରଣା କରିବାକୁ ପଡ଼ିଲା। ସାହେବ ଆଜ୍ଞା ସ୍କୁଲ ଦେଖିଲେ। ଘର ମରାମତି ଠିକ୍ ହୋଇଛି. ବଗିଚାରେ ଲଗାଯାଇଥିବା ଫୁଲଗଛ ଓ ଦେଶୀ ପରିବା ଗଛମାନ ବେଶ୍ ସତେଜ ସୁନ୍ଦର ଦିଶୁଛନ୍ତି। ପିଲାମାନେ ଏସବୁ ଗଛ ଲଗାଇବା ଓ ପାଣିଦେବା କାମ କରିଥିବାର ବଡ଼ ଆଜ୍ଞା କହିଲାରୁ ସାହେବ କୋବି ଓ ବିଲାତିଆଳୁ ଚାଷ ବି କରିବା ଶିଖାନ୍ତୁ, ଭଲ ହେବ, ବୋଲି କହିଲେ। ସେତେବେଳେ କୋବି ଓ ଆଳୁ ଚାଷର ପ୍ରଚଳନ ବିଶେଷ ହେଉ ନଥାଏ।

ଉପରଓଳି ପିଲାଙ୍କ ପରୀକ୍ଷା ହେଲା। 'ସାହେବ ଆଜ୍ଞା' ପିଲାଙ୍କୁ ପଚାରିଲେ ତୁମକୁ କ'ଣ ଭଲ ଲାଗେ, ସ୍କୁଲ ନା ଘର ? କେଉଁ ଫଳ ଭଲ ଲାଗେ, କେଉଁ ପରିବା ଭଲ ଲାଗେ ? ଶେଷ ପ୍ରଶ୍ନ ଥିଲା, କେଉଁ ଆଜ୍ଞାଙ୍କୁ ଭଲ ଲାଗେ ? ଅନେକ ପ୍ରଶ୍ନର ଉତ୍ତର ଅସମାନ ଥିଲେ ବି ଶେଷ ପ୍ରଶ୍ନର ଉତ୍ତର ପ୍ରାୟ ଏକ ଥିଲା ଜାଣି ସେ ଆଶ୍ଚର୍ଯ୍ୟ ପ୍ରକାଶ କଲେ। 'କାହିଁକି ସେ ଆଜ୍ଞାଙ୍କୁ ଭଲ ଲାଗେ ?' ଉତ୍ତର ପାଇଲେ, ସେ ଆଜ୍ଞା କାହାକୁ ପିଟନ୍ତି ନାହିଁ। ସ୍କୁଲରେ ଆମକୁ ନାଟକ ଶିଖାନ୍ତି। ପଚାରି ବୁଝିଲେ ସେ ଏବେ ଏବେ ଚାରି ଓ ପାଞ୍ଚ ଶ୍ରେଣୀର ପିଲାଙ୍କୁ ନେଇ 'ପିତୃଭକ୍ତି' ପାଠକୁ ନାଟକ କରାଇଛନ୍ତି। ପରେ ଗାଁ ମଝିଖୁଲି ବାରଣ୍ଡାରେ 'ପ୍ରହ୍ଲାଦ ଚରିତ' ନାଟକ କରାଇ ବେଶ୍ ପ୍ରଶଂସା ପାଇଛନ୍ତି। ମୋଟ ଉପରେ କନଗାଁ ଗାଁରେ ନାଟ୍ୟକଳାର ସେ ଏକ ବୀଜ ପକାଇଗଲେ ସେ, ଯା ଫଳରେ କନଗାଁରେ ଗୀତାଭିନୟ ଆଖପାଖର ବେଶ୍ ଖ୍ୟାତି ପାଇଲା। ଆମେ ନିଜକୁ ନିରେଖି ଚାହିଁଲେ ଏ ବୁଢ଼ାକାଳରେ ବି ଆମ ଭିତରେ ଉଙ୍କି ମାରନ୍ତି ଆମ ପ୍ରଥମ ଶ୍ରେଣୀ ଆଜ୍ଞା, ପାଣିମୋରା ଗାଁର ଫୁଲଶର ପ୍ରଧାନ। ଏହାର କିଛିଦିନ ପରେ ସେ ସ୍ୱାଧୀନତା ସଂଗ୍ରାମରେ ମିଶି ଜେଲ୍‌ଗଲେ; ତାଙ୍କର ମାଷ୍ଟର ଚାକିରିଗଲା। ତା' ସତ୍ତ୍ୱେ

ସେ 'ଫୁଲଶର ମାଷ୍ଟ୍ରେ' ନାଁରେ ହିଁ ଶେଷଯାଏଁ ପରିଚିତ ଥିଲେ ପୁରା ଅଞ୍ଚଳସାରା। ସ୍କୁଲ ଓ ଛାତ୍ର ପ୍ରତି ଅନୁରକ୍ତି, ଦେଶ ପ୍ରତି ତ୍ୟାଗ ଓ ସର୍ବୋପରି ମାନବୀୟ ସମ୍ବେଦନା ମଧ୍ୟରେ ତାଙ୍କର କେଉଁଠି ଅର୍ନ୍ତବିରୋଧ ନ ଥିଲା। ଗୋଟାଏ ତ୍ରିକୋଣର ତିନୋଟି ବିନ୍ଦୁପରି ସବୁଗୁଡ଼ିକୁ ନିୟମିତ ଛୁଉଁଥିଲା ତାଙ୍କ ଚରିତ୍ର।



## -୪-

# ପଇସା ନେଲେ ବିଦ୍ୟା କାଟୁକରେ ନାହିଁ

ମୋର ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ପ୍ରବେଶ ହୋଇଥାଏ। ସେତେବେଳେ ମୋର ବାପା ପଣ୍ଡିତ ଡୋଳାମଣି ଆଚାର୍ଯ୍ୟ ଜଣେ ଜ୍ୟୋତିର୍ବିଦ ଭାବେ ମାନ୍ୟତା ପାଇଥାନ୍ତି। ଆଖପାଖ ଚାରି ପାଞ୍ଚ ଜଣ ଜମିଦାରଙ୍କ ଠାରୁ ପାଟବସ୍ତ୍ର ଓ ସୁନା କୁଣ୍ଡଳ ଆଦି ପାଇଥାନ୍ତି। ସେତେବେଳେ ତାହା ଗୁଣୀ ତଥା ବିଦ୍ଵାନମାନଙ୍କ ପ୍ରତି ସମ୍ମାନାସ୍ପଦ ସ୍ଵୀକୃତି ରୂପେ ବିବେଚିତ ହେଉଥିଲା। ଫଳିତ ଜ୍ୟୋତିଷକୁ ଲୋକେ ଖଡ଼ି ପାଞ୍ଜି ବୋଲି କହୁଥିଲେ। ବାପା କୁଆଡ଼େ ଖଡ଼ି ନ କାଟି, ପାଞ୍ଜି ନ ଦେଖି ମୁହେଁ ମୁହେଁ ବିବାହାଦି ଲଗ୍ନ ଓ ହୃତ ଜିନିଷ ମିଳିବ କି ନାହିଁ, କୋଉଠି ମିଳିବ, କେବେ ମିଳିବ କହି ପାରୁଥିବା ଲୋକେ ବିଶ୍ଵାସ କରୁଥିଲେ। ବାପା, ନିତ୍ୟ ନୈମିତ୍ତିକ ବ୍ରାହ୍ମ ବେଳାରୁ ଗାଧୋଇ ପୂଜା ପାଠ ସାରି ମହାପ୍ରଭୁ ଘରୁ ବାହାରିଲା ବେଳକୁ ପ୍ରାୟ ସକାଳ ହୁଏ। ଦିନେ ଏମିତି ଏକ ବେଳାରେ ଆମ ଗାଁର ଗଉଡ଼ିଆଣୀ ଧଇଁସଇଁ ହୋଇ ଆମ ଘରକୁ ଆସିଲେ। ସେ କିଛି କହିବା ଆଗରୁ ବାପା କହିଲେ, 'ବହୁତ ବ୍ୟସ୍ତ ହୋଇ ଆସୁଛ ଯେ, ସୁନା ଅଳଙ୍କାର କିଛି ହଜାଇ ଦେଇଛ ତ?' ଗୌଡ଼ିଆଣୀ କହିଲେ, 'ହଁ, ମୋର ବହର୍ ଝଲ୍କା (ସୁନାର କାନ ଅଳଙ୍କାର) ପଟେ, କେନେ ପଡ଼ିଗଲା ଯେ ନାଇଁ ପାଏବାର୍। ଦେଖ ତ ବୁଆ। ମିଲ୍‌ବା କି ନି ଯେ?' ବାପା କହିଲେ, 'ମିଳିବ, ଦୁଇ ତିନି ଦିନ ପରେ। କୌଣସି ଓଦା ଜାଗାରେ ଅଛି ଦେଖିବ।' ଗୌଡ଼ିଆଣୀ ଟିକିଏ ଆଶ୍ଵସ୍ତ ହୋଇ ଚାଲିଗଲେ। ମୋର ମାଆ କହିଲେ, 'ମୋର ନାନୀ (ଗୌଡ଼ିଆଣୀଙ୍କୁ ମୋର ମା' ଗାଁ ମାନ୍ୟରେ 'ନାନୀ' କହୁଥିଲେ) ଆସିଥିଲା କେଡ଼େ ଆଶାରେ, ଖଡ଼ି ପାଞ୍ଜି ଦେଖି କିଛି କହିଥାନ୍ତ। ସେମିତି କ'ଣ ପଦେ ଚଟ୍ କରି କହିଦେଲ ଯେ ସେ ସାଙ୍ଗେ ସାଙ୍ଗେ ପଳାଇ ଗଲା, ବସି ଉଠି ବି ପାରିଲା ନାହିଁ।' ବାପା କହିଲେ, 'ମୋତେ ଯାହା ଦିଶିଲା କହିଲି। ଖଡ଼ି କାଟିଥିଲେ କି ପାଞ୍ଜି ଦେଖିଥିଲେ ବି ସେ'ୟା ହିଁ କହିଥାନ୍ତି। ତାଙ୍କର ସେ ହଜିଲା

ଜିନିଷ ପାଇଲେ ଗଲା । ଏତେ ବ୍ୟସ୍ତ କାହିଁକି?' ଏହାର ଦୁଇଦିନ ପରେ ଠିକ୍ ସେହି ସମୟରେ ଗୌନ୍ତିଆଣୀ ଟଙ୍କାଟିଏ ଧରି ହସି ହସି ଆସି ପହଞ୍ଚିଲେ। କହିଲେ, 'ହଁ ଗୋ ବାବୁ! ଝଲ୍‌କା ପଟକ ମିଳିଲା, ପାଣି ହାଣ୍ଡି ତଳେ ପଡ଼ିଥିଲା। ହେଦେ ଟଙ୍କାଟେ ରଖ ତୁମର କୁଠି ଶାଲ୍‌କେ (ସାଧନା କୋଠି) ଆଣି ଦେଇଛି।'

ଏହା ବୋଧହୁଏ ୧୯୪୦-୪୧ ସାଳର କଥା। ଟଙ୍କାକେ ମହଣେ (୪୦ ସେର) ଉସୁନା ଚାଉଳ ମିଳୁଥିଲା। ସେ ବେଳର ଟଙ୍କାକର ମୂଲ୍ୟ କେତେ ଥିଲା ଏବେ କି ହିସାବ କରିହେବ। ବାପା କହିଲେ, 'ଟଙ୍କାଟା ନିଅ ମହାପ୍ରଭୁ ଗୁଡ଼ି ପୂଜାରୀଙ୍କୁ ଦେଇଦେବ। ଶୁଣିଥିଲି ଗୁଡ଼ିରେ ଭୋଗରାଗ ଠିକ୍ ହେଉନାହିଁ।' ଗୌନ୍ତିଆଣୀ ଟଙ୍କାଟା ଧରି ଫେରିଗଲେ।

ଉଭୟ ଘଟଣା ବେଳେ ମୁଁ ଉପସ୍ଥିତ ଥିଲି। ବାପାଙ୍କୁ ପଚାରିଲି, 'ବାପା! ସତରେ ଜ୍ୟୋତିଷ ଶାସ୍ତ୍ରରେ ଏମିତି ସଠିକ୍ ଗଣନାର ସୂତ୍ର ଅଛି?' ବାପା କହିଲେ, 'ସମସ୍ତଙ୍କ ପାଇଁ ନୁହେଁ। ଫଳିତ ଜ୍ୟୋତିଷ ଏକ ଗଣିତ ଆଧାରିତ ବିଦ୍ୟା, ପ୍ରଣାଳୀ ବି ଅନେକ। କିଏ କେଉଁ ପ୍ରଣାଳୀରେ ସମୟ ଜାଣି ରାଶି ନକ୍ଷତ୍ରର ଅବସ୍ଥିତି ଆଦି ନେଇ ଫଳ ବିଚାର କରନ୍ତି। କାହାର ଗଣିତ ଫଳ ଠିକ୍ ହୁଏ ତ, କାହାର ଗଣନା ଠିକ୍ ହୁଏନା।' ମୁଁ କହିଲି, 'ତୁମେ ଯେ ଗୌନ୍ତିଆଣୀଙ୍କୁ କହିଥିଲ ସେ ଖୁବ୍ ସତ ହେଲା। ଗଣନା ତ ପୂରାପୂରି ଠିକ୍ ହେଲା।' ବାପା କହିଲେ, 'ହଁ ଠିକ୍ ଥିବାର ଜାଣିଲି, ବିଭିନ୍ନ ରକମର ଗଣନାରେ ଫଳ ବିଭିନ୍ନତା ସମ୍ଭବ। ମାତ୍ର ଯା'ର ସତ କହିବାର ଅଭ୍ୟାସ ଥାଏ, ତା' ମୁହଁରୁ ସତ କଥା ହିଁ ବାହାରେ। ଜ୍ୟୋତିଁବିଦ୍ୟା ସାଧନା ସହ ସତ୍ୟ କଥନର ସାଧନା ଆବଶ୍ୟକ ହୋଇପଡ଼େ। ପୁରାଣରେ ଆମେ ଶୁଣୁ ଯେ ଦେବତା, ଋଷି ମୁନି ସନ୍ଥମାନେ ଅଭିଶାପ ବା ବରପ୍ରଦାନ କରନ୍ତି। ବାସ୍ତବରେ ସେମାନେ ଇଚ୍ଛାକରି ବର ବା ଅଭିଶାପ ଦିଅନ୍ତି କି ନା କହିହେବ ନାହିଁ। ମୋର ବିଶ୍ୱାସ ଯେ ସେମାନେ ଭବିଷ୍ୟତ ଦ୍ରଷ୍ଟା ଥାଆନ୍ତି ତ, ସଂପୃକ୍ତ ବ୍ୟକ୍ତି ଭବିଷ୍ୟତରେ କ'ଣ ଭୋଗିବ ତାହା କହି ଦିଅନ୍ତି। ସତ୍ୟ କଥନର ଅଭ୍ୟାସ ଥିଲେ ଜିଭରୁ ଅସତ୍ୟ ବାହାରିବା ଅସମ୍ଭବ ପ୍ରାୟ ହୋଇପଡ଼େ।'

ମୋ ମନରେ ଥିବା ସତ କହିବା ଭାବନାର ବୀଜ ଏଥର ପାଣି ପାଇ ଗଜୁରିବାକୁ ଲାଗିଲା। ଭାବିଲି ସତ କହି ସର୍ପବିଦ୍ ଖାଲି ନୁହେଁ ଜ୍ୟୋତିର୍ବିଦ୍ ବି ହୋଇପାରିବି। ସତ କହିବା ପାଇଁ ଏକ ପ୍ରକାର ଦୃଢ଼ ପ୍ରତିଜ୍ଞ ହୋଇଗଲି। ଜ୍ୟୋତିଷ ଶିଖିବାର ଆରମ୍ଭ କଲି। ମୁଁ ସେତେବେଳେ ହାଇସ୍କୁଲକୁ ପଢ଼ିବାକୁ ଯାଇଥାଏ। ଆମ ହାଇସ୍କୁଲ ପଢ଼ା ବେଳେ ନୂଆ ହୋଇ ଓଡ଼ିଆ ମାଧ୍ୟମରେ ପରୀକ୍ଷା ଦେବା ଆରମ୍ଭ

ହୋଇଥାଏ। ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଥମ କରି କାର୍ଯ୍ୟକାରୀ ହୋଇଥାଏ। ଗଣିତ, ଇତିହାସ, ଭୂଗୋଳ ବହିମାନ ଇଂରାଜୀ ମାଧ୍ୟମରେ ପଢ଼ା ହେଉଥାଏ। ଓଡ଼ିଆ ମାଧ୍ୟମ ବହିମାନ ଛାପା ହୋଇ ନ ଥାଏ। ଜ୍ୟୋତିଷ ବହିମାନ ଯାହା ବାପାଙ୍କ ପାଖରେ ଥିଲା ସେ ସବୁ ପ୍ରାୟ ସଂସ୍କୃତ ଭାଷାରେ, ହିନ୍ଦୀ, ବଙ୍ଗଳା ଲିପିରେ ଥିଲା। କ୍ୱଚିତ୍ ଓଡ଼ିଆ ଲିପିରେ ମୁଦ୍ରିତ ଥିବା ବହି ଥିଲା। ଜ୍ୟୋତିଷ ଅଳଙ୍କାର, ଜ୍ୟୋତିଷାର୍ଣ୍ଣବ ଆଦି ବହି। ସେ ସବୁ ଜ୍ୟୋତିଷ ଶାସ୍ତ୍ରର ପୁସ୍ତକ ଅର୍ଣ୍ଣବ ଓ ପାଠ୍ୟ ପୁସ୍ତକର ସମୁଦ୍ର ମଧ୍ୟରେ ମୁଁ ହତୋତ୍ସାହ ଅନୁଭବ କରୁଥିଲି। ଦୁଇଟି ମହାସମୁଦ୍ରକୁ ପାରିହେବା ପାଇଁ ମୋ ମନ ରୂପକ ମଇମଲି ଡଙ୍ଗାର ମଙ୍ଗ ଧରିବାକୁ ଦମ୍ଭ ହେଲା ନାହିଁ। ବ୍ରିଟିଶ୍ ରାଜ୍ ସମୟ। କଷ୍ଟେମଷ୍ଟେ ମାଟ୍ରିକ୍ ପାଶ୍‌ଟେ କଲେ ଚାକିରିଟେ ମିଳିଯାଉଥିଲା। ମାଇନର୍ (ସପ୍ତମ ଶ୍ରେଣୀ) ସାର୍ଟିଫିକେଟ୍ ଥିଲେ ବି ପ୍ରାଥମିକ ଶିକ୍ଷକ କାମଟେ ପାଇଲେ ମାସକୁ ଛଅଟି ଟଙ୍କା ନିଶ୍ଚିତ। ଆଜିକାଲି ପରି ସେତେବେଳେ ଏତେ ଧରାଧରି, ଦିଆଥୁଆ ଲାଗୁ ନ ଥିଲା। ଖାଲି 'ମୁଁ ଉଚ୍ଚକୁଳ ସମ୍ଭୂତ, ଆପଣଙ୍କର ଅତ୍ୟନ୍ତ ଅନୁଗତ ଭୃତ୍ୟ ହେବା ପାଇଁ ମୋର ସମ୍ମାନ ଅଛି' ଲେଖି ତଳେ ଦସ୍ତଖତ କରି ଅର୍ଜିଟେ ଦେବା କଥା। ଜଣେ ସ୍କୁଲ ଶିକ୍ଷକ ବା ସାଧାରଣ ସରକାରୀ ଚାକିରିଆଠାରୁ ଜଣେ ଜ୍ୟୋତିଷ, ଯଜମାନ ବୃତ୍ତିଧାରୀ ବ୍ୟକ୍ତିର ସାମାଜିକ ସ୍ଥିତି ପ୍ରାୟ ତଳେ ରହୁଥିଲା। ଏଣୁ ମୁଁ ଚାକିରି ଆଶାଥିବା ବିଦ୍ୟାଧ୍ୟୟନରୁ ନିଜକୁ ମୁକ୍ତ କରି ନ ପାରି, ଜ୍ୟୋତିଷ ଶାସ୍ତ୍ରାର୍ଣ୍ଣବ ପହଁରିବାରୁ ମନ ଫେରାଇଆଣିଲି। ସତ କହିବା ଆରମ୍ଭଟା ଅଭ୍ୟାସ ବଳରେ କମ୍ ବେଶି କରି ରହିଲା, ମାତ୍ର ସର୍ପବିଦ୍ ବା ଜ୍ୟୋତିର୍ବିଦ୍ ହେବା ଲାଭ ହେଲା ନାହିଁ। ସେ ଆଶା ଆପେ ଆପେ ଉଭେଇ ଗଲା। ପରବର୍ତ୍ତୀ ଜୀବନରେ ଏପରି ଅନେକ ବ୍ୟକ୍ତିଙ୍କ ସଂସ୍ପର୍ଶରେ ଆସିଲି ଯେଉଁମାନେ ଯାଦୁକର ପରି ଅସାଧ୍ୟ ରୋଗୀମାନଙ୍କୁ ସାମାନ୍ୟ ଚୁଟୁକା ଚେରମୂଳି ଔଷଧ ଦେଇ ଆରାମ କରିପାରୁଥିଲେ। ମାତ୍ର ଦୁଃଖର କଥା, ସେଇ ସୁନାମଧନ୍ୟ ବ୍ୟକ୍ତିଙ୍କ ପରେ ତାଙ୍କର ଉତ୍ତରାଧିକାରୀ ବା ଅନ୍ୟ କେହି ବ୍ୟକ୍ତି ସେ ସବୁ ସାଧନାର ନାମ ବି ଜାଣୁ ନ ଥିଲେ। ମୁଁ ଭାବେ ଯେ ସେ କାଳରେ ସେ ସବୁ ସାଧନା ନ୍ୟସ୍ତ ଲୋକେ ପଇସା ନେଉ ନ ଥିଲେ ଓ କହୁଥିଲେ, 'ପଇସା ନେଲେ ସେ ସବୁ ବିଦ୍ୟା କାଟୁକରେ ନାହିଁ'। ଏଣୁ ସେ ସବୁ ବିଦ୍ୟା ସେମିତି ରହିଗଲା, ଏମିତି ଅର୍ଥହୀନ ବିଦ୍ୟା କିଏ କାହିଁକି ଶିଖନ୍ତା?



-୫-

# ସପ୍ତମ ଶ୍ରେଣୀ ପରୀକ୍ଷା ଫଳ ପରେ

ସପ୍ତମ ଶ୍ରେଣୀର ପରୀକ୍ଷା ଫଳ ବାହାରିଲା। ମୁଁ ଭଲ ଭାବେ ପାସ୍ କରିଥିବା ଜାଣି ଖୁସି ହେଲି। ସେତେବେଳେ ଅବଶ୍ୟ ମୋର ଭାବିବାର ଆଜିପରି ଶକ୍ତି ନ ଥିଲା। ଏବେ ଜାଣୁଛି ସେ ବେଳ ଥିଲା ମୋ ଜୀବନ ରାସ୍ତାର ଦୁଇପଟିଆ ବାଟ। ଗାଁରେ ରହି କୁଳକର୍ମ ଯଜମାନି ଜ୍ୟୋତିଷି ଶିଖି ନିଜର ପୈତୃକ ଜମିରେ କୋଡ଼ି ଓ ଲଙ୍ଗଳ ଗାରରେ ନିଜର ଭାଗ୍ୟଫଳ ଖୋଜିବା ଗୋଟିଏ ଦିଗରେ; ଅନ୍ୟ ବାଟରେ ସ୍କୁଲରେ ପାଠ ପଢ଼ି ସରକାରୀ ଚାକିରି ଖୋଜି କଲମ ଗାରର ଧାରରେ ନିଜର କପାଳ ଲେଖାକୁ ସମାନ ତାଳରେ ଟାଣିବା। ହେଲେ ପରବର୍ତ୍ତୀ ବାଟକୁ ଭାଗ୍ୟ ବିଧାତା ବାପା ମୋର ଜୀବନ ଶଗଡ଼କୁ ବହୁ ଅସୁବିଧା ସତ୍ତ୍ୱେ ମୁହାଁଇ ନେଲେ। ମୁଁ ବରଗଡ଼ ହାଇସ୍କୁଲକୁ ଗଲି। ସେତେବେଳର ସମ୍ବଲପୁର ଜିଲ୍ଲାରେ ମୋଟ ଦୁଇଟି ହାଇସ୍କୁଲ, ସମ୍ବଲପୁର ଜିଲ୍ଲା ସ୍କୁଲ ଓ ବରଗଡ଼ ଜର୍ଜ ହାଇସ୍କୁଲ। ଆଜିକାଲି ପରି ନାମ ଲେଖାଇବାରେ ଏତେ ପଇସା ପଡୁ ନ ଥିଲା। ସ୍କୁଲର କ୍ଲାସ୍ ଫି ସଙ୍ଗେ ଆଡ୍‌ମିଶନ ଫି, ଲାଇବ୍ରେରୀ ଫି, ଗରିବ ଛାତ୍ର ଫି ମିଶି ଦଶ ଟଙ୍କା ଓ ଛାତ୍ରାବାସରେ ରହିଲେ ଛାତ୍ରାବାସ ଫି ଓ ଛାତ୍ରାବାସ ନାଁ ଲେଖା ଫି ମିଶି ପ୍ରାୟ ପାଞ୍ଚଟଙ୍କା ଭିତରେ ପଡୁଥିଲା। ତଥାପି ଅଭିଭାବକମାନଙ୍କୁ ସେତକ ଗଣିବାରେ ବହୁତ କଷ୍ଟ ହେଉଥିଲା।

ହାଇସ୍କୁଲକୁ ଗଲି, ଛାତ୍ରାବାସରେ ରହିଲି ଗୋଟିଏ କୋଠରିରେ। ଯେଉଁଠାରେ ମୋର ବଡ଼ ଭାଇ ଦୁଇ ଜଣ ରହୁଥିଲେ। ହାଇସ୍କୁଲର ୨ଟି ଛାତ୍ରାବାସ ଥିଲା ଖଜୁରଟିକ୍ରା ହଷ୍ଟେଲ ଓ ଏଡ୍‌ୱାର୍ଡ ମେମୋରିଆଲ ହଷ୍ଟେଲ। ଆମେ ଏଡ୍‌ୱାର୍ଡ ମେମୋରିଆଲ ହଷ୍ଟେଲରେ ରହୁଥିଲୁ। ଏ ହଷ୍ଟେଲରେ ଟିକେ ସମ୍ପନ୍ନ ଅଭିଭାବକ ମାନଙ୍କର ପୁଅମାନେ ରହୁଥିବାର କଥିତ ଥିଲା, ମାତ୍ର ମୁଁ ସେପରି କିଛି ଅନୁଭବ କଲି ନାହିଁ, ପ୍ରାୟ ସମସ୍ତେ ଏକ ଧାରାବାହିକ ଚଳଣିରେ ଚଳୁଥିଲୁ। ବୋର୍ଡିଂର ଗୋଟିଏ କୋଠରୀରେ ଏକ ଛୋଟ ମନ୍ଦିର ଥାଇ ପ୍ରାର୍ଥନା ଗୃହ ହିସାବରେ ବ୍ୟବହୃତ ହେଉଥିଲା ଓ ବାଧ୍ୟବାଧକତା ନ ଥିଲେ ମଧ୍ୟ ପିଲେ ଦୁଇଓଳି ସେଠାକୁ ଯାଇ ପ୍ରାର୍ଥନା କରୁଥିଲେ। ସକାଳ ଓ ସନ୍ଧ୍ୟା ସମୟରେ ସମୂହ ପ୍ରାର୍ଥନା ସଙ୍ଗୀତ ଗାନ କରି ଧୂପ, ଦୀପ, ନୈବେଦ୍ୟ ନେଇ ପୂଜା କରାଯାଉଥିଲା।

ଛାତ୍ରାବାସର ଅନ୍ତେବାସୀଙ୍କ ମଧ୍ୟରୁ ଜଣେ ବ୍ରାହ୍ମଣ ପିଲା ନିତ୍ୟ ନୈମିତ୍ତିକ ପୂଜା କରୁଥିଲେ ଓ ସେଥିପାଇଁ ତାଙ୍କୁ ଛାତ୍ରାବାସର ଫି ମାଫ୍ ଥିଲା। ଆଜିକାଲି ଏ

ପ୍ରଥା କେଉଁଠି ବି ନାହିଁ ବୋଲି ମନେ ହୁଏ।

ହାଇସ୍କୁଲକୁ ଆସି ନୂଆ ସମ ବୟସର ପିଲାଙ୍କୁ ପାଇ ଗାଁର ସାଙ୍ଗ ସାଥୀ, ଗାଁ କଥା ଆଉ ବିଶେଷ ମନେ ପଡ଼ିଲା ନାହିଁ। ଆମ ସମୟରେ ସ୍କୁଲ ବା ଛାତ୍ରାବାସରେ ପିଲାଙ୍କର ବିଶୃଙ୍ଖଳତା ବା ଅବିହିତ କାମରେ ସମୟ ନଷ୍ଟ କରିବା ସମ୍ଭବ ହେଉ ନ ଥିଲା। ଉପର ଶ୍ରେଣୀର ଛାତ୍ରମାନଙ୍କୁ ଆଜ୍ଞା ଆପଣ କହି ଶିକ୍ଷକ ଭଳିଆ ମାନ୍ୟତା ଦେବାର ଚଳଣି ଥିଲା। ସପ୍ତମ ଶ୍ରେଣୀ ପରୀକ୍ଷା ଦେଲା ବେଳେ ମୋ ଲାଗି ଖଣ୍ଡେ କୁରୁତା ଟଙ୍କେ ବାରଅଣାରେ ତିଆରି ହୋଇଥିଲା। ହାଇସ୍କୁଲ ଆସିବା ପରେ ବି ଧୋତି ପିନ୍ଧି କ୍ଲାସକୁ ଯାଇ ହେଉଥିଲା। ପେଣ୍ଟ ପିନ୍ଧା ଚଳଣି ଆରମ୍ଭ ହୋଇଥିଲେ ବି ଟିକେ ନିମ୍ନ ବର୍ଗର ଛାତ୍ର ପ୍ରାୟ ପିନ୍ଧୁ ନ ଥିଲେ। ଜୋତା ବା ଚପଲ କ୍ୱଚିତ୍ ପିଲା ପିନ୍ଧୁଥିଲେ।

ସପ୍ତମ ସ୍ତର ପର୍ଯ୍ୟନ୍ତ ଇଂରାଜୀ ପଢ଼ା ସାରି ଅଷ୍ଟମ ଶ୍ରେଣୀକୁ ପ୍ରବେଶ କଲି। ସମ୍ପୂର୍ଣ୍ଣ ନୂଆ ପାଠ, ନୂଆ ମାଷ୍ଟର, ନୂଆ ସାଙ୍ଗ ଭିତରେ ନିଜକୁ ମିଶାଇ ନେଇ ପଢ଼ାରେ ମନ ଦେଲି। ମନେ ପଡ଼େ, ବୋଧହୁଏ ୧୯୪୦ ମସିହାର କଥା ହୋଇଥିବ ଗାଁକୁ ଯାଇଥିଲି। ମୋର ପିତା ଚୂଡ଼ାମଣି ଆଚାର୍ଯ୍ୟ ଜଣେ ଜ୍ୟୋତିର୍ବିଦ ହିସାବରେ ମାନ୍ୟତା ପାଇଥାନ୍ତି। ମୁଁ ଇଚ୍ଛା କଲି ଜ୍ୟୋତିର୍ବିଦ ହେବି। ଘରେ ବାପାଙ୍କର ଜ୍ୟୋତିଷ ଗ୍ରନ୍ଥମାନ ଥିଲା ଓଡ଼ିଆ, ହିନ୍ଦୀ ଓ ବଙ୍ଗଳା ଭାଷାରେ। ତାକୁ ଖୋଳାଖୋଳି କରି ଓଲଟପାଲଟ କଲି, ସେଆଡ଼େ ସ୍କୁଲରେ ଗଣିତ, ଇତିହାସ, ଭୂଗୋଳ ଆଦି ସବୁ ପାଠ୍ୟପୁସ୍ତକ ପ୍ରାୟ ଇଂରାଜୀ ଭାଷାରେ ଥାଏ। ସେତେବେଳେ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ନ ଥିଲା ଓ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ପଢ଼ାପଢ଼ି ଓ ପରୀକ୍ଷା ଆଦି ହେଉଥିଲା। ଜ୍ୟୋତିଷ ଓ କର୍ମକାଣ୍ଡର ପୁସ୍ତକ ରାଜିର ପୋଖରିରେ ବୁଡ଼ ପକାଇବି କି ହାଇସ୍କୁଲ ପାଠ୍ୟ ପୁସ୍ତକ ସମୁଦ୍ରରେ ଲହଡ଼ି ଭାଙ୍ଗିବି ଠିକ୍ କରି ପାରିଲି ନାହିଁ ହଠାତ୍। ପରିସ୍ଥିତି କହିଲା ପର ଗାଁର ନଈଠାରୁ ନିଜ ଗାଁ ପୋଖରି ଭଲ। ହାଇସ୍କୁଲରେ ରହିଲି, ଜ୍ୟୋତିର୍ବିଦ୍ ହେବାର ଆଶା କଢ଼ିଟି ଅକାଳରେ ମଉଳି ବସିଲା। ପୁଣି ଏତିକି ବେଳେ ବାପାଙ୍କର ସୋହେଲା ମିଡିଲ ସ୍କୁଲରୁ ଧମା ମିଡିଲ ସ୍କୁଲକୁ ବଦଳି ହେଲା, ଯଦ୍ୱାରା ବାପାଙ୍କର ଜ୍ୟୋତିଷି ଓ ଯଜମାନିର ଆୟର ଧାର ଚୁଟୁକି ଗଲା। ଆମର ପଢ଼ାପଢ଼ି ଖର୍ଚ୍ଚ ତୁଲାଇବା ବାଧକର ଜଣାପଡୁଥିଲା। ତଥାପି ଆମେ ପଢ଼ାପଢ଼ିରେ ଲାଗିଲୁ; ବାପା ବି କେବେ ଆର୍ଥିକ କଷ୍ଟକୁ ଡରି କାହାରି ପଢ଼ା ବନ୍ଦ କରିବାକୁ କହି ନ ଥିଲେ।



-୭-
# ଶଶୀ ଆଜ୍ଞାଙ୍କ କଥା

ବରଗଡ଼ ଜର୍ଜ ହାଇସ୍କୁଲ ଛାତ୍ର ଜୀବନର ଶିକ୍ଷକ ତଥା ଶିକ୍ଷା ପ୍ରଣାଳୀ କଥା ଆଜି ଭାବି ବସିଲେ ମନେହୁଏ ସେସବୁ ସତ ଥିଲା ନା ନିଦ୍ରିତ ନିଶିଥର ଚିତ୍ରିତ ସ୍ୱପ୍ନ? ଏବେ ଭାବିଲେ ଯୁଗଜୀବୀ 'ଶଶୀଆଜ୍ଞା' ବା ଶଶୀଭୂଷଣ ମିଶ୍ର ଶର୍ମା, 'ବୁଢ଼ା ମାଷ୍ଟ୍ରେ'ଙ୍କ କଥା ସତ ସତ ଲାଗେନା। ତାଙ୍କୁ ବିଶ୍ୱକୋଷ କହିବାରେ କିଛି ଅତ୍ୟୁକ୍ତି ବା ଅସମ୍ଭବ ମନେ ହୁଏନା। ତାଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ମାତ୍ର ଆଇଏସ୍‌ସି, ହେଲେ ବଡ଼ ବଡ଼ ବିଶ୍ୱବିଦ୍ୟାଳୟ ମାନଙ୍କରେ ଅସମାହିତ ବୋଧ ହୋଇଥିବା ଗଣିତ ତାଙ୍କ ପାଖକୁ ସମାଧାନ ପାଇଁ କୁଆଡ଼େ ଆସୁଥିଲା ଓ ସେ ତାର ସମାଧାନ କରି ବିଶ୍ୱବିଦ୍ୟାଳୟ ମାନଙ୍କଠାରୁ ବିଜ୍ଞତାର ସ୍ୱୀକୃତି ପାଉଥିଲେ। ସେହି ସୀମିତ ଯୋଗ୍ୟତା ନେଇ ହାଇସ୍କୁଲର ଚତୁର୍ଥ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟ ଥିବା ଯେ କୌଣସି ବିଷୟ ଦେଲେ ବି ସେ ସୁଚାରୁ ରୂପେ ପଢ଼ାଇ ପାରୁଥିଲେ। ବରଗଡ଼ ଜର୍ଜ ହାଇସ୍କୁଲ ସୁବିଦ୍ୟ ତଥା ସୁନିପୁଣ ଶିକ୍ଷକ ବର୍ଗଙ୍କର ପୀଠ ଥିବା ସତ୍ତ୍ୱେ ବି ଭୂଗୋଳ ବିଷୟ ଆଧ୍ୟାପନା ପାଇଁ ସୁଯୋଗ୍ୟ ଶିକ୍ଷକ ନଥିଲେ। ଫଳରେ ଶଶୀ ଆଜ୍ଞା ଉକ୍ତ ବିଷୟ ଅଧ୍ୟାପନା ଦାୟିତ୍ୱ ନିର୍ବାହ କରୁଥିଲେ। କୌଣସି ଛାତ୍ର ତାଙ୍କ ଅଧ୍ୟାପନାରେ ଅମନଯୋଗୀ ହେଉ ନ ଥିଲେ। କାରଣ ସେ ପାଠ୍ୟ ବିଷୟ ଉପରେ ବେଶି ଜୋର ନ ଦେଇ ଆମ ରାଜ୍ୟର, ଦେଶର ତଥା ଅନ୍ତର୍ଦେଶୀୟ ବିଶିଷ୍ଟ ପ୍ରତିଭାମାନଙ୍କ ବିଷୟରେ ସମ୍ୟକ୍ ଆଲୋଚନା କରୁଥିଲେ।

ସମ୍ବଲପୁରୀର ସେ ଥିଲେ ଜଣେ ଆଦ୍ୟକବି। ତାଙ୍କ ଦୟାରୁ ତାଙ୍କର ଅନେକ ଛାତ୍ର ଭବିଷ୍ୟତରେ କବି, ବକ୍ତା, ରାଜନୀତିଜ୍ଞ ଭାବେ ତିଆରି ହୋଇଥିବା ବିଷୟ ଏବେ ସ୍ପଷ୍ଟ ପ୍ରତୀତ ହୁଏ। ପାଠ୍ୟ ବିଷୟ ଛାଡ଼ି ଅନ୍ୟ ବିଷୟ ସବୁ ଆଲୋଚନା କରି ସମୟ ନଷ୍ଟ କରୁଥିବା କଥା କିଏ କେବେ କହିଲେ ସେ କହନ୍ତି, ପାଠ୍ୟ ବିଷୟ ସବୁ ବହିରେ ଅଛି। ମାତ୍ର ତାଙ୍କ ବହିରେ ଯାହା ନାହିଁ ସେସବୁ ପିଲାଙ୍କ ଜ୍ଞାନକୁ ଆଣିବା ମୁଁ ନିଜେ ନିଜର କର୍ତ୍ତବ୍ୟ ବୋଲି ମନେ କରେ। ସେ ଆମ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ୍ ଥିଲେ। ପ୍ରତି ଶନିବାର ସନ୍ଧ୍ୟାରେ ତର୍କ ସଭା, ଗୀତ ପ୍ରତିଯୋଗିତା, ଶ୍ଳୋକାନ୍ତ ପ୍ରତିଯୋଗିତା ହେବାରେ କିଛି ବ୍ୟତିକ୍ରମ ହେବାର ଜାଣିଲେ ସେ ମନ ଦୁଃଖ କରନ୍ତି।

ଛାତ୍ରାବାସ ମଧ୍ୟରେ ଅଧ ଏକର ପ୍ରାୟ ଜମି ଥିଲା, ସେଥିରେ ସେ ଫୁଲ ଚାଷ, ପରିବା ଚାଷ ବ୍ୟତୀତ ପ୍ରାୟ ୧୦ ଡ଼େସିମିଲ ଜମିରେ ଔଷଧୀୟ ଗୁଳ୍ମ ଲତା ଆଦି ଚାଷ କରିବାରେ ବିଶେଷ ଦୃଷ୍ଟି ଦେଉଥିଲେ। ଆଜି ମନେ ପଡ଼େ, ଆମ ମାନଙ୍କର ଯଦି କେବେ ଉଦ୍ଭିଦ ଜଗତ ପ୍ରତି କିଛି ଆନ୍ତରିକତା ଆସିଛି, ତାହା ତାଙ୍କରି ଦୟା କହିବା ଠିକ୍ ହେବ। ସେ ଚାହିଁଥିଲେ ଟିଉସନ୍‌ରେ ଅନେକ ଅର୍ଥ ଉପାର୍ଜନ କରିପାରିଥାନ୍ତେ। ମାତ୍ର ସେ କହୁଥିଲେ ଛାତ୍ରାବାସର ସବୁ ଅନ୍ତେବାସୀଙ୍କର ପାଠ୍ୟଗତ ସନ୍ଦେହ ମୋଚନ କରିବା ସୁପରିନ୍‌ଟେଣ୍ଡେଣ୍ଟଙ୍କ ଧର୍ମ। ସେ ଅନେକ ବିଷୟ ପଢ଼ାଇଛନ୍ତି ଆଉ ଆମେ ଶିଖିଛୁ, କିନ୍ତୁ ତାଙ୍କର ବ୍ୟକ୍ତିଗତ ଜୀବନରେ ଯେଉଁ ଆଦର୍ଶ ଦେଖାଇଛନ୍ତି ତାହା ଆମେ ଜୀବନର ଶେଷ ଅବସ୍ଥାରେ ବି ଭୁଲି ପାରିବୁ ନାହିଁ।

ସବୁଠାରୁ ବିସ୍ମୟକର ଥିଲା ତାଙ୍କର ଜୀଇଁବା କଳା। ବଡ଼ ପୁଅ ନବମ ଶ୍ରେଣୀ ପଢୁଥିବା ବେଳେ ଅକାଳରେ କାଳଗ୍ରସ୍ତ ହେଲା। ଦ୍ୱିତୀୟ ପୁତ୍ର ସଂସାର ବିରାଗୀ ଭାବ ହେତୁ ବଡ଼ ହେବା ପର୍ଯ୍ୟନ୍ତ ଲୁଗା ପିନ୍ଧୁ ନ ଥିଲା। ତାପରେ ଗୋଟିଏ ଝିଅ; ସେ ବି ଅକାଳରେ ପ୍ରାଣତ୍ୟାଗ କଲା। ତାପରେ ଦୁଇଟି ପୁଅ; ବାଳ ଚପଳତା ଅଙ୍ଗପ୍ରାୟ। ଏସବୁ ପାରିବାରିକ ଦୁଃଖରେ ତାଙ୍କର ସହଧର୍ମିଣୀ ଅସୁସ୍ଥ ମସ୍ତିଷ୍କା। ତଥାପି ଆଜ୍ଞାଙ୍କର ଆଖିରେ ଅଶ୍ରୁ ବା ମନରେ ବୈମନସ୍ୟ ଭାବ କେହି ଦେଖି ନ ଥିଲେ। ସବୁବେଳେ ନିର୍ବିକାର ମାନସିକ ସ୍ଥିତି। ଛାତ୍ରାବାସର ନିୟନ୍ତା, ମାତ୍ର ଛାତ୍ରାବାସସ୍ଥିତ ମେସ୍‌ରୁ କାଣିଚାଏ ବି ସାହାଯ୍ୟ ସେ କେବେ ଲୋଡ଼ି ନାହାନ୍ତି। ସେ ଜଣେ ଶିକ୍ଷକ, ହେଲେ ସେ କ'ଣ ପଢ଼ାଇ ନ ଥିଲେ କହିବା ମୁସ୍କିଲ। ମାତ୍ର ସେ ଦେଖେଇ ଦେଇଥିଲେ, ଅନତିକ୍ରମଣୀୟ ବାଧାବିଘ୍ନ ଭିତରେ ମଣିଷର ବଞ୍ଚିବା ଏକ କଳା। ମନେହୁଏ ତାଙ୍କର ଶିକ୍ଷକତା ଥିଲା ଏକ କଠୋର ତପଶ୍ଚରଣ ଆଉ ଆଜ୍ଞା ଥିଲେ ଏକ ଅଟଳ ତପସ୍ୱୀ। ତାଙ୍କଠାରୁ ଆମେ ଶିଖିଲୁ ଧୈର୍ଯ୍ୟର ସୀମାନ୍ତ ରୂପ, ଯାହା ଆମର ବାସ୍ତବ ଜୀବନରେ ବି ଆମକୁ ବଞ୍ଚାଇ ରଖିଛି। ଏବେ ଅନେକ ବିମର୍ଷକର ସମୟରେ ଆଶା ସଂଚାର କରିବା ପାଇଁ ତାଙ୍କ କଥା ମନେ ପକାଇବାକୁ ଇଛା ହୁଏ। ଏବେ ବି ଜୀବନରେ ତାଙ୍କର ଅଭ୍ରାନ୍ତ ଅକ୍ଲାନ୍ତ ପ୍ରତିଛବି ମନ ଆଖି କି ସ୍ପଷ୍ଟ ଦିଶେ।



-୭-

# ବରଗଡ଼ର ସ୍ୱାଧୀନତା ସଂଗ୍ରାମ

ବରଗଡ଼ ଜର୍ଜ ହାଇସ୍କୁଲ ୧୯୧୭ ସାଲରୁ ଆରମ୍ଭ ହୋଇଥିବାର ଜାଣେ। ହାଇସ୍କୁଲର ସୁନ୍ଦର ପକ୍କା ଘରଟି ବରଗଡ଼ ସହରର ସବୁ ଘରଠାରୁ ବଡ଼ ଜଣାପଡ଼େ। ୧୯୨୧ରେ ତିଆରି ସରିଥିବା କଥା ସ୍କୁଲ କାନ୍ଥରେ ଲେଖାଅଛି। ଏହି ୧୯୨୧ ସାଲରେ ତତ୍କାଳୀନ ଏକମାତ୍ର ସମ୍ବଲପୁର ଜିଲ୍ଲା ସ୍କୁଲ ସ୍ୱାଧୀନତା ସଂଗ୍ରାମରେ ଅସହଯୋଗ ଆନ୍ଦୋଳନ କରିଥିଲା। ବହୁ ସଂଖ୍ୟକ ଛାତ୍ର ପଢ଼ା ଛାଡ଼ି ନିଜ ନିଜ ଗାଁମାନଙ୍କୁ ଚାଲି ଆସିଥିଲେ। ସ୍କୁଲରୁ ତାଙ୍କ ନାମମାନ କଟିଲା ଓ ସେମାନେ ଗାଁମାନଙ୍କରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର କଲେ ନିଜ ନିଜର ସାଧ୍ୟ ଓ ଶକ୍ତିମତେ। ଉକ୍ତ ଆନ୍ଦୋଳନର ସେନାନୀ ମଧ୍ୟରୁ ପୁଣ୍ୟଶ୍ଳୋକ ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ରଙ୍କୁ ଏକତମ ନ କହି ଶ୍ରେଷ୍ଠତମ କହିବାରେ ଆଦୌ ଅତିଶୟୋକ୍ତି ହେବ ନାହିଁ। ସେ ବରଗଡ଼ ବାସିନ୍ଦା ନହେଲେ ବି ବରଗଡ଼ ସହର ତାଙ୍କ କାର୍ଯ୍ୟକ୍ରମର କେନ୍ଦ୍ରସ୍ଥଳୀ କହିବା ନିର୍ଭୁଲ୍ ହେବ ବୋଲି ମନେହୁଏ। ପଣ୍ଡିତ ମିଶ୍ର ଇଂରାଜୀ, ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଉର୍ଦ୍ଦୁ ତଥା ତେଲୁଗୁ ଭାଷାରେ ଅନର୍ଗଳ ଭାଷଣ ଦେଇପାରନ୍ତି। କୁଆଡ଼େ ସେ ଉର୍ଦ୍ଦୁ ଓ ତେଲୁଗୁରେ କିଛି ପାଠ୍ୟ ପୁସ୍ତକ ରଚନା କରିଥିଲେ ଯାହାକି ସଂପୃକ୍ତ ବିଶ୍ୱବିଦ୍ୟାଳୟ ମାନ ନିଃସଙ୍କୋଚରେ ଗ୍ରହଣ କରିଥିଲେ। ସେ ସୁପ୍ରସିଦ୍ଧ ମହାଦେବ ଦେଶାଇଙ୍କର ଅନୁପସ୍ଥିତିରେ କିଛି ସମୟ ପାଇଁ ମହାତ୍ମା ଗାନ୍ଧୀଙ୍କର ବ୍ୟକ୍ତିଗତ ସଚିବର ଗୁରୁଦାୟିତ୍ୱ ତୁଲାଇଥିବାର ପ୍ରସିଦ୍ଧି ପାଇଥିଲେ। ସେ ବରଗଡ଼ର ସବୁ ବିଖ୍ୟାତ ବ୍ୟକ୍ତିଙ୍କର ପ୍ରିୟ ଥିଲେ ବି ସେ କାହାରି ଘରେ ପ୍ରାୟ ରହୁ ନ ଥିଲେ। ଏଣୁ କେବେ କେମିତି ଆବଶ୍ୟକ ପଡ଼ିଲେ ଆମ ଛାତ୍ରାବାସରେ ରହି ଆମ୍ଭ ମେସ୍‌ରେ ଖିଆପିଆ କରିବାରେ ଆମେ ସବୁ ଗୌରବାନ୍ୱିତ ଅନୁଭବ କରୁଥିଲୁ। ତାଙ୍କର ସଭାରେ ଅଗଣିତ ଲୋକ ଭିଡ଼ ହୁଏ। ତାଙ୍କର ଭାଷଣରେ ସେ ଅତି ଅଳ୍ପ ସମୟରେ ଅସଂଖ୍ୟ ଲୋକଙ୍କୁ ଚେତାଇ ଓ ତତାଇ ପାରୁଥିଲେ। ସେ ବାସ୍ତବ ଜୀବନରେ ବ୍ରିଟିଶ୍ ସରକାରଙ୍କର 'ଆଖିର କୁଟା ବାଘର ବଇରୀ' ପରି ମନେ ହେଉଥିବାରୁ ତାଙ୍କର ଯିବାଆସିବା ରହିବାରେ ସରକାରଙ୍କର ତୀକ୍ଷ୍ଣ ଦୃଷ୍ଟି ରହୁଥିଲା।

ତାଙ୍କର ସଂଗ୍ରାମୀ ଜୀବନର ଅନେକ ମୋକଦ୍ଦମା ପ୍ରାୟ ବରଗଡ଼ କୋର୍ଟରେ

ବିଚାର ହେଉଥିଲା । ସେତେବେଳେ ଶାସନ ବିଭାଗ ଓ ବିଚାର ବିଭାଗ ଅଲଗା ନ ଥିଲା । ଏଣୁ ଶାସନ ବିଭାଗର ମୁଖ୍ୟ ସବ୍‌ଡିଭିଜନାଲ୍ ଅଫିସରଙ୍କ ଇଜ୍‌ଲାସ୍‌ରେ ତାଙ୍କର ବିଚାର ହେଉଥିଲା । ସବ୍‌ଡିଭିଜନାଲ୍ ଅଫିସର୍ ଆଇ.ସି., ଏସ୍. ଉପାଧିଧାରୀ ଓ ପ୍ରାୟ୍ ଗୋରା ଲୋକ ରହୁଥିଲେ । ଏଣୁ ତାଙ୍କର ବିଚାର ଚାଲିଥିବା ଦିନମାନଙ୍କରେ ବରଗଡ଼ କଚେରୀ ଲୋକାରଣ୍ୟ ରହୁଥିଲା । ଅନେକ ଦିନ ତ କଚେରୀ ବାରଣ୍ଡା ଓ ଇଜ୍‌ଲାସ୍‌ରେ ଲୋକ ଧରନ୍ତି ନାହିଁ ତ କଚେରୀ ଅଗଣାରେ ବରଗଛ ତଳେ ତାଙ୍କର ବିଚାର ଚାଲେ । ଆମେ ଛାତ୍ର ସମାଜ ବି ଉକ୍ତ ଲୋକାରଣ୍ୟ ଭିତରେ ହଜିଯାଇ ତାଙ୍କର ଯୁକ୍ତିତର୍କ ଶୁଣୁ । ପଣ୍ଡିତ ମିଶ୍ରଙ୍କ ସଙ୍ଗେ ସମ୍ପର୍କ ରଖିବା କଥା ତ ଅଲଗା, ତାଙ୍କ ସଭା ଶୁଣିବା, ତାଙ୍କର ବିଚାରବେଳେ ତାଙ୍କର ଯୁକ୍ତିତର୍କ ଶୁଣିବା ବି ଦୋଷାବହ ବୋଲି ଗଣ୍ୟ ହେଉଥିଲା । ସେ ସବୁବେଳେ ଛାତ୍ରବତ୍ସଳ ଥିଲେ ଓ ସବୁ ସଭାରେ ଛାତ୍ରମାନଙ୍କ ପ୍ରତି ଏକ ବିଶେଷ ବକ୍ତବ୍ୟ ରୂପେ କେବେ ଭଗତ ସିଂ କଥା, କେବେ ଖୁଦିରାମ୍ ବୋଷ କଥା ତ କେବେ ବାଜି ରାଉତ ପ୍ରସଙ୍ଗ ନିଜ ବକ୍ତବ୍ୟ ମାଧ୍ୟମରେ ପରଷୁ ଥିଲେ । ହୀରାଖଣ୍ଡ-ସମ୍ବଲପୁରର ପ୍ରସୂତ କୋହିନୂରମାନଙ୍କ ମଧ୍ୟରେ ସେ ଉଜ୍ଜ୍ୱଳତମ ହୀରା ଥିବା ଏକ ସର୍ବମାନ୍ୟ ମତ । ତାଙ୍କ ପାଇଁ ଆଖିଦୃଶିଆ ଭାବେ ଆମେ କେହି କେବେ କିଛି କହିନାହୁଁ, କି କରିନାହୁଁ, କହିଲେ ଭୁଲ୍ ହେବ ନାହିଁ । କାରଣ ସ୍ୱରୂପ ମୋତେ ଲାଗେ ଦିନଟାଏ ସେ କେବେ ଧନ ବା କ୍ଷମତା ପଛେ ଦୌଡ଼ି ତ ନ ଥିଲେ, ପାଆନ୍ତେ କେମିତି ? ବସ୍ତୁବାଦୀ ସମାଜ ଧନ ବା କ୍ଷମତା ନ ଥିବା ଲୋକଙ୍କ ପାଇଁ ନ ରହିସିବା ଏବେ ଲୋକ-ଅଭ୍ୟାସରେ ପରିଣତ ହୋଇଗଲାଣି । ସେ ଖାଲି ପାଦରେ, (ସେ କେବେ ଯୋତା ବା ଚପଲ ପିନ୍ଧୁ ନ ଥିଲେ) ସମ୍ବଲପୁର ଜିଲ୍ଲାର ଅଧିକାଂଶ ଗାଁ ବୁଲିଛନ୍ତି, ସ୍ୱାଧୀନତାର କ୍ଷୁଧା ଜାଗ୍ରତ କରାଇବା ତାଙ୍କର କାମ କେବଳ ନୁହେଁ, ଏକ କଳା ଥିଲା ବୋଲି କହିବା ଠିକ୍ ହେବ । ସେ ଆଜୀବନ ନିର୍ଲୋଭ, ନିର୍ଦ୍ଧନ, ତଥା ବିସଂଗ୍ରହୀ ଥିଲେ । ମାତ୍ର ଆଶ୍ଚର୍ଯ୍ୟର କଥା ଯେ ତାଙ୍କ ପାଖେ ଧନ ଥିବ ଭାବି ରେଳଯାତ୍ରାରେ ଯିବା ବେଳେ ଆତତାୟୀ ଡକାୟତର ନିର୍ଦ୍ଦୟ ଛୁରୀକାଘାତରେ ତାଙ୍କ ମହା ଜୀବନର ଅବସାନ ଘଟିଲା ।

ସେତେବେଳେ ଜର୍ଜ ହାଇସ୍କୁଲର ଗୁରୁ-ସାକ୍ଷାତ୍-ପରଂବ୍ରହ୍ମ ପଦ ବାଚ୍ୟ ପ୍ରଧାନ ଶିକ୍ଷକ ଥିଲେ ପ୍ରଥିତ ଯଶା ଶ୍ରୀ ହାରାଚାନ୍ଦ ନାଏକ । ସେ ମହାଶୟ ପଣ୍ଡିତ ମିଶ୍ରଙ୍କର ସ୍କୁଲ ସାଥୀ ଥିବାର ଯଶସ୍ୱୀ ଶ୍ରୀ ନାଏକ ବା ମହାମାନ୍ୟ ମିଶ୍ର କେବେ କାହାକୁ କହି

ନାହାନ୍ତି। ମାତ୍ର ପ୍ରଧାନ ଶିକ୍ଷକ ନାଏକ ମହାଶୟ ହଠାତ୍ ଇସ୍ତଫା ଦେଇ ସ୍କୁଲ ଛାଡ଼ିବା ବେଳେ ଶୁଣାଗଲା ଯେ, ଗୁପ୍ତଚର ବିଭାଗର ରିପୋର୍ଟ ଅନୁଯାୟୀ ବିପ୍ଳବୀ ମିଶ୍ର ମହାଶୟ କର୍ଜ ହାଇସ୍କୁଲର ଇଲାକାରେ ରହନ୍ତି। ଏକଥା ପ୍ରଧାନ ଶିକ୍ଷକଙ୍କୁ ତତ୍କାଳୀନ ସବ୍‌ଡିଭିଜନାଲ ମାଜିଷ୍ଟ୍ରେଟ ପଚାରିବାରୁ ନାଏକ ମହାଶୟ ସାଙ୍ଗେ ସାଙ୍ଗେ ଇସ୍ତଫା ଦେଇ ଏ ସ୍କୁଲ ଛାଡ଼ିଦେଲେ। ମନେଅଛି ତାଙ୍କୁ ଅଟକାଇବା ପାଇଁ ବରଗଡ଼ ସହରର ସବୁ ଶ୍ରେଣୀର ବ୍ୟକ୍ତି ଏକତ୍ର ସହୃଦୟ ଅନୁରୋଧ କରିବାର। ମାତ୍ର ସବୁ ବିଫଳ ହେଲା। ସେ ପଳାଇଲେ, ଯାଇ ତାଙ୍କ ନିଜ ଅଞ୍ଚଳ ଝାରସୁଗୁଡ଼ାରେ ଏକ ହାଇସ୍କୁଲ ଅନୁଷ୍ଠିତ ତଥା ପ୍ରତିଷ୍ଠିତ କରିବାରେ ପୁରୋଧା ହେଲେ। ସେ ହାଇସ୍କୁଲ, ପରେ କଲେଜ ବି ହେଲା ଏବଂ ସେଥିରେ ପୁଣ୍ୟଶ୍ଳୋକ ପଣ୍ଡିତ ଲକ୍ଷ୍ମୀ ନାରାୟଣ ମିଶ୍ରଙ୍କର ନାମ ସଂଯୋଜିତ ହେଲା। ପ୍ରଧାନ ଶିକ୍ଷକ ଶ୍ରୀ ନାଏକ ମହାଶୟଙ୍କର ଯଶ ଗୁଣ ଏ କ୍ଷୁଦ୍ର ପ୍ରବନ୍ଧରେ ପ୍ରକାଶିତ ହେବା ସମ୍ଭବ ନୁହେଁ। ସେ ନିଜେ ଜଣେ ଆଦର୍ଶ, କର୍ତ୍ତବ୍ୟନିଷ୍ଠ, ଛାତ୍ର ତଥା ସହକର୍ମୀବତ୍ସଳ ତ ଥିଲେ, ସଙ୍ଗେ ସଙ୍ଗେ ତାଙ୍କର ସହକର୍ମୀ ସମସ୍ତ ଶିକ୍ଷକ ସମାଜକୁ ନିଜ ଅନୁରୂପ କରିପାରିବାରେ ତାଙ୍କର କୃତିତ୍ୱ ଅସାଧାରଣ ବୋଲି ମନେ ହୁଏ। ସେତେବେଳର ସେ ହାଇସ୍କୁଲ କଥା ମନେ କଲେ ସ୍ୱତଃ ଇଚ୍ଛା ହୁଏ ଆମ ଦେଶର ସମସ୍ତ ସ୍କୁଲ ସେପରି ହୁଅନ୍ତା କି ଓ ସେତେବେଳର ସେ ସୁଯୋଗ୍ୟ, ଓ ସମ୍ଭ୍ରାନ୍ତ ଶିକ୍ଷକ - ସମାଜର ଆଦର୍ଶର ଶତାଂଶ ହେଲେ ବି- ଆମ ଶିକ୍ଷକ ସମାଜକୁ ଅନୁପ୍ରାଣିତ କରନ୍ତା। ତାହାହେଲେ ଦେଶର ଶିକ୍ଷା ବିଭାଗ କେବଳ ନୁହେଁ, ସାରା ଦେଶର ମହନୀୟତା ତା'ମନକୁ ଫୁଟି ଉଠନ୍ତା।

ଉପରୋକ୍ତ ଘଟଣାବଳୀର ସାକ୍ଷ୍ୟ ସ୍ୱରୂପ ଲେଖା ନ ଥିବ; ଏବଂ ସେ ସବୁ ଘଟଣା ପ୍ରତ୍ୟକ୍ଷୀଭୂତ କରିଥିବା ବ୍ୟକ୍ତି ବି ଏବେ ମିଳିବା ବିରଳ। ତଥାପି ଆମେ ସେହି ସୁଲଭ୍ୟ ଯୋଗ ସବୁ ଉପଲବ୍ଧି କରିବାର ସୌଭାଗ୍ୟ ପାଇଲୁ ମାତ୍ର ଉପଯୋଗ କରିପାରିଲୁ ନାହିଁ। ଏତିକି କହି ଏବେ ଆଶ୍ୱସ୍ତି ପାଉ, ଜୀବନରେ ଅନେକ ସୁଯୋଗ ଆସେ ହେଲେ ସେସବୁ ଉପଯୋଗ କରିହୁଏ ନା।



-୮-

# ପଶ୍ଚିମ ଓଡ଼ିଶାର ଦୁର୍ଗା ପୂଜା

ପ୍ରଥମ ମଣିଷ, ସଭ୍ୟତା ସୋପାନରେ ଉଠିଲା ବେଳେ ନିଜ ଶକ୍ତି ବ୍ୟତୀତ ଅନ୍ୟ ଏକ ଶକ୍ତିର ଉପଲବ୍‌ଧି କଲା। ସେ ଶକ୍ତି ସର୍ବତ୍ର ଓ ସଦା ଉପସ୍ଥିତ ରହି ସାରା ଜଗତର ନିୟନ୍ତ୍ରଣ କରୁଥିବାର ସେ ଅନୁଭବ କଲା। ସେ ମହାଶକ୍ତିକୁ ନାରୀଶକ୍ତିର ରୂପ ଦେଇ ତା'ର ପୂଜା ଆରାଧନାରେ ବ୍ୟାପୃତ ରହି ମାନବ ବିଶ୍ୱର ସର୍ବତ୍ର ତା'ର ଉପସ୍ଥିତି ହୃଦୟଙ୍ଗମ କଲା। ଏଇ କଳ୍ପନାର ପ୍ରତିଷ୍ଠିତ ଦେବୀ ପଶ୍ଚିମ ଓଡ଼ିଶାରେ ମୂର୍ତିମତୀ ସମଲେଶ୍ୱରୀ, ପାଟଣେଶ୍ୱରୀ, ସୁରେଶ୍ୱରୀ, ଖମ୍ବେଶ୍ୱରୀ ଓ ମାଣିକେଶ୍ୱରୀ ଆଦି ବିବିଧ ନାମରେ ବହୁଳ ଓ ବହୁଧା ପୂଜିତ ହେଉଥିବାର ଦୃଷ୍ଟିଗୋଚର ହୁଅନ୍ତି।

ଚର୍ଚିତ ମହାଶକ୍ତିର ଅର୍ଚନା ପାଇଁ ଏକ ସ୍ୱତନ୍ତ୍ର ପୂଜା ପଦ୍ଧତି ପ୍ରଣୀତ ତଥା ପ୍ରଚଳିତ ରହିଛି, ଯାହାକୁ କି ଦୁର୍ଗାପୂଜା ପଦ୍ଧତି ନାଆଁରେ ଲୋକେ ଜାଣନ୍ତି। ଏହି ଦୁର୍ଗାପୂଜା ବର୍ଷର ଦୁଇଟି ସମୟରେ 'ଶାରଦୀୟ' ଓ 'ବାସନ୍ତୀକ' ପୂଜା ନାମରେ ଆୟୋଜିତ ହୁଏ, ବିଶିଷ୍ଟ ରୀତି, ନୀତି ଓ ଗତି ଅବଲମ୍ବନରେ। ପ୍ରକୃତି-ପ୍ରଫୁଲ୍ଲିତ ସମୟରେ ଏହି ଶାକାମ୍ବରୀ ଦେବୀଙ୍କର ଉପାସନା ବାସ୍ତବରେ ଶରୀର-ଆହ୍ଲାଦିନୀ ତଥା ଚିତ୍ତ ଉନ୍ମାଦିନୀ ମନେହୁଏ। ପୂଜା ପଦ୍ଧତିରେ କଳ୍ପିତ ଦୁର୍ଗାମୂର୍ତି- ମହାଶକ୍ତି, ମହାଲକ୍ଷ୍ମୀ, ମହାସରସ୍ୱତୀ ତଥା ମହାକାଳୀ ରୂପରେ ବର୍ଣିତ ହୋଇ ସକଳ ଦୈବୀଶକ୍ତିର ଏକ ସୁସଂଚୟନ ଓ ସଂଗଠନର, ବିଶ୍ୱାସର ଭିତ୍ତି ରୂପରେ ପ୍ରତିଷ୍ଠିତ କରାଯାଇଛି। ବିଶ୍ୱ ନାରୀ ଶକ୍ତିର ଅନ୍ୟାୟ ଅପହରଣର ପୁନଃ ସଂରକ୍ଷଣ ପାଇଁ କଳ୍ପିତ ଏକ ଯୁଦ୍ଧଯାତ୍ରାର ଆରମ୍ଭରେ ଏହି ମହାଶକ୍ତିର ଉପାସନାକୁ 'ରଣଜିତା'ର ରୂପ କଳ୍ପନା କରାଯାଇ 'ରଣଜିତା' ନାମକରଣ କରାଯାଇଛି। ଏଣୁ ଏହି ଉପାସନାର କାର୍ଯ୍ୟକ୍ରମକୁ 'ରଣଜିତା' ନାମରେ ଲୋକ ମାନସରେ ଉପସ୍ଥାପିତ କରାଯାଇଛି। ବିଶ୍ୱର ସକଳ ଶକ୍ତିର ସମାହାର ନାରୀ ଶକ୍ତି ବୋଲି ମାନି ମହାଶକ୍ତିର ଆବାହନ ପୂଜାକର୍ମ ସହ ସସମ୍ମାନେ ବିସର୍ଜନ ବିଧି କାଳ୍ପନିକ ଶକ୍ତିରୁ ବିଗ୍ରହାନ୍ୱିତ କରିବାର ପ୍ରଚେଷ୍ଟା ବିଧିବଦ୍ଧ ଓ ନୀତିପୁଷ୍ଟ ମନେହୁଏ।

ଦଶହରା ମାସର ଆରମ୍ଭରୁ ଶକ୍ତିପୂଜା ଉଦ୍ଦେଶ୍ୟରେ ଦେବୀ ବ୍ୟବସ୍ଥିତ ସ୍ଥାନମାନଙ୍କରେ ପଶ୍ଚିମ ଓଡ଼ିଶାର ଲୋକବାଦ୍ୟ- ଢୋଲ, ମହୁରୀ, ତାସା, ନିଶାନ

ଆଦି ଗଣବାଦ୍ୟର ଜନମନ ଭୁଲାଇ ବାଜିବାର ଶୁଭେ। ସମ୍ପୂର୍ଣ୍ଣ ନାରୀଶକ୍ତିର ଜାଗରଣ ପ୍ରତ୍ୟୟକାରୀ ଏ ବାଦ୍ୟକୁ ଲୋକେ କୁମାରୀ କିଶୋରୀ ନାରୀ ଜାତିର ଯୌବନ ଚେତନାର ଉନ୍ମେଷକାରୀ ରୂପେ ଗ୍ରହଣ କରନ୍ତି। ଏ ଅଞ୍ଚଳର ଲୋକେ କୁହାକୁହି ହୁଅନ୍ତି- ନବଯୌବନା ନାରୀ ଶକ୍ତି ଏହି ବାଦ୍ୟର ପ୍ରତୀକ୍ଷାରେ ଥିଲା। ଏବେ କିଶୋରୀ କୁମାରୀ ଯୌବନାଞ୍ଚନା ଯୁବତୀ ଦଶରାର ଢ଼ୋଲକୁ ସତେ ଯେମିତି ଟାକି ଥିଲା। ଏବେ 'ଗାଏଜ୍‌କେ ସୁନ୍ଦର ହେବା' ମାନେ ନାରୀ ତାର ସୌନ୍ଦର୍ଯ୍ୟ ଶିଖରକୁ ଉପନୀତ ହେବ। ଶୁକ୍ଳପକ୍ଷ ଷଷ୍ଠୀ ବା ସପ୍ତମୀ ଦିନ କୁମାରୀ ସମାଜ ନିକାଞ୍ଚନ ନଇ ଝରଣାର କୂଳେ ବାଲି କାଢ଼ି ବିଲ୍ବବରଣ କରିବେ। ମାନେ ପଲ୍ଲବ (ଗଛର କୋମଳ ଡ଼ାଳ) ସଂଚୟନ କରିବାର ପରଦିନ ବା ଅଷ୍ଟମୀ ତିଥିରେ 'କୁମାରୀ ପୂଜା' ଦିନ ଏହି ପଲ୍ଲବ ଉପହାରରେ ଦେବୀ ପୂଜାର ଅୟମାରମ୍ଭ କରିବେ। ଏହି ପଲ୍ଲବମାନ ବର, ପିପ୍ପଳ, ଉଦୁମ୍ବର, ପାଁକେଲ ଓ ପଲାଶ ଗଛରୁ ସଂଗୃହୀତ ହେବାର ବିଧି ବର୍ଣ୍ଣିତ ହୋଇଅଛି। କିଶୋରୀ କୁମାରୀ ସମାଜ ତନୁମନ ଖୋଲା ରଖି ଅପେକ୍ଷିତ ଯୌବନକୁ ତନୁଗତ ଓ ମନୋମତ କରିବାର ପ୍ରସ୍ତୁତିରେ ରହିବେ। ମନ ଖୋଲା ଗୀତ ଓ ତନୁ ଭୁଲା ନୃତ୍ୟ ଅବାଧ ତଥା ସ୍ୱଚ୍ଛନ୍ଦର ସ୍ପଷ୍ଟ ରୂପ ନିଏ, ଯାହାକୁ ଅଶ୍ଳୀଳ ବା ଅମନା କହିବାକୁ ଲୋକେ ପଛାନ୍ତି ନାହିଁ - ତାହା 'ଡାଇଖାଇ' ନାମରେ ସୁପରିଚିତ।

ଯୌବନାନୁଭୂତି କ'ଣ ତନୁ ମନକୁ ବାଧ୍ୟ ବାଧକତାର ବନ୍ଧନରେ ସ୍ୱଚ୍ଛନ୍ଦ, ସ୍ୱଚ୍ଛଳ ତଥା ସୁସ୍ଥ ରଖିବା ସମ୍ଭବ ବା ସମୀଚୀନ ବୋଲି କହିହେବ ? ପ୍ରତିବନ୍ଧକ ପ୍ରତିଦ୍ୱନ୍ଦୀ ଯୌବନର ମନୋବୈଜ୍ଞାନିକ ପ୍ରତିକ୍ରିୟା, ଅନେକତ୍ର ବହୁ ବିଷମୟ ତଥା ବ୍ୟଥାମୟ ପରିଣତିର ସମ୍ମୁଖୀନ କରାଏ। ଫଳରେ ବହୁ ଯୁବକ ଯୁବତୀର ଜୀବନ ହା ହତାଶରେ ପରିଣତ ହେବାର ନଜିର ନଜରକୁ ଆସେ। ପରେ ଦିନାବସାନରେ ଗାଁର କୌଣସି ଦେବାଳୟ- କାଛରେ ବା ଜନବାସର ପ୍ରଶସ୍ତ କୌଣସି ପିଣ୍ଡାରେ ନାରୀ ବିଗ୍ରହର ଚିତ୍ରିତ ମୂର୍ତ୍ତି ମଧ୍ୟରେ 'ଧୁନ୍‌କେଲ୍ ହାଣ୍ଡି'ର ମନୋନୟ ରସମୟ ବାଦ୍ୟ ସାହାଯ୍ୟରେ, ଦେବୀ ସ୍ତୁତିର ଗୀତ ମଧ୍ୟରେ ଦେବୀ ଲୀଳା ଗାନ ସହ ଏକ ଆବହ ସଙ୍ଗୀତର ଧାରା ବହେ ନିଶାନ୍ତ ପର୍ଯ୍ୟନ୍ତ। ଏହି ଅଷ୍ଟମୀ ତିଥିରେ ଦୁର୍ଗା ଦେବୀଙ୍କର ଅଷ୍ଟମୀ ପୂଜା ସହ 'ଭ୍ରାତୃ ଜୀବନ୍ତିକା' ବା 'ଭାଇଜିଉଁତିଆ' ବ୍ରତ ପାଳିତ ହୁଏ। ଜ୍ୟେଷ୍ଠ କନିଷ୍ଠ ନିର୍ବିଶେଷରେ ଭାଇମାନଙ୍କର ଦୀର୍ଘାୟୁ କାମନା କରି ନିଜର ସୁରକ୍ଷା ଆଶା କରନ୍ତି ବ୍ରତୀ ଭଉଣୀମାନେ।

ଆଲୋଚିତ ବିଷୟ ପରିପ୍ରେକ୍ଷୀରେ ଓଡ଼ିଶାର ପଶ୍ଚିମାଞ୍ଚଳ ପ୍ରବାଦ କଥିତ ତାନ୍ତ୍ରିକା ସପ୍ତଭଗିନୀ, ପଟର ପେଣ୍ଡି ପହରାଣୀ, ଲହୁକୁଟୀ ଲୁହୁରାଣୀ ଓ ମାଲୁଣୀ ଆଦିଙ୍କର ସାଧନା କ୍ଷେତ୍ର ରୂପେ ସ୍ୱତନ୍ତ୍ର ରୂପେ ଚିହ୍ନିତ ଏହି ବିରାଟ ଅଞ୍ଚଳ ଶକ୍ତିପୂଜା ବା ଦୁର୍ଗାପୂଜାର ଆଦିସ୍ଥଳ ରୂପେ ଗ୍ରହଣ କରିନେବାର ଏକ ଅବାଧ, ଅକୁଣ୍ଠ ଅବକାଶ ଅର୍ପଣ କରେ।

❖❖❖

-୯-

## 'ସୁଲ୍‌ଖୁନା'ର ଇନ୍ଦିରା ଆବାସ

ଗାଁର ମାଙ୍କେ ଦେଇଥିବା 'ସୁଲକ୍ଷଣା' ନାଆଁଟି ବଢ଼ି ବଢ଼ି କେବେଠାରୁ 'ସୁଲ୍‌ଖୁନା' ହୋଇଗଲାଣି ତାର ମନେ ନାହିଁ। 'ସୁଲ୍‌ଖୁନା' ନାଁରେ ଡ଼ାକିଲେ 'ଓ' ନ କଲେ ତ ଚଳୁନାହିଁ। ନାଆଁଟି ସିନା ଘଷି ମାଜି ହୋଇ ପରପଞ୍ଚ ଆକାର ଧରିଲାଣି, ଦେହଟି ସେମିତି ଅଛି, ଯେମିତି ଥିଲା। ବରଂ ବୟସର ବୋଝ ବା ଖାଦ୍ୟପେୟର ଅସ୍ୱଚ୍ଛଳତା ନାଆଁ ପରି ଦେହଟିକୁ କଦାକାର କରିପାରେ ନାହିଁ। ଜୀବନର ପରିଶ୍ରମ ତାକୁ ଅତୁଟ ରଖିଛି ଏଯାଏଁ- କେବଳ ପେଟଟାକୁ ଛାଡ଼ି। ପେଟ ଟିକିଏ ଓହଳି ପଡ଼ିଛି। 'ଯୁଗୀ' ପାଇଁ ସେ ପେଟଟା ଏ ପର୍ଯ୍ୟନ୍ତ ଖଟ, ଶେଯ ଓ ତକିଆର କାମ କରୁଛି। ଯୁଗୀ ଦଶବର୍ଷର ହେଲାଣି, ତାର ମା'ର 'ବୁ' (ଛାତି) ରାଜ୍ୟରେ ଅଧିକାର ଜମାଇବାର କେହି ନାହାନ୍ତି। ଯୁଗୀ ତାର ମା'ର 'ବୁ' ପିଆ ଛାଡ଼ି ନାହିଁ ବୋଲି ଉଭୟ ମା' ଛୁଆଙ୍କ ଦେହ ଠିକ୍ ଅଛି।

ଯୁଗୀ ଇସ୍କୁଲକୁ ଯାଏ, ପାଠ ପଢ଼େ। ଭଲ ପଢ଼େ କି କମ୍ ପଢ଼େ- ସୁଲ୍‌ଖୁନା ବା ତାର ସାଧୁଆ ପାଧୁଆ ସାଙ୍ଗମାନଙ୍କୁ ଜଣାନାହିଁ। ପଢୁଛି ତ ପଢୁଛି। ଭଲ ପଢୁଥିବାର ସାଙ୍ଗମାନେ କହନ୍ତି, ସୁଲ୍‌ଖୁନା ତାକୁ କାନି ପଣତରେ ଗଣ୍ଠାଇ ଚାଲେ। ସାଥିରେ ତେନ୍ତୁଳି କି ଟମାଟୋ ପୋଡ଼ାଟାଏ ଖୁଆଇ ସ୍କୁଲକୁ ପଠାଏ। ସ୍କୁଲ ଛୁଟି ବେଳକୁ ମା'କୁ ବି ଛୁଟି ମିଳି ସାରିଥାଏ। ମା'ର ପଣତ କାନ ଧରି ଗାଁ ଖୁଲିର ଗିଣ୍ଡାମାନ ବୁଲି କଟିଯାଏ ଦିନ। କେବେ କେଉଁଦିନ ଯୁଗୀର ଦିହ ଖରାପ ହୁଏ, କେବେ ମୁଣ୍ଡ ବଥାଏ କି ପେଟ ବଥା ବା କାନ ଦୁଃଖା ହୁଏ, ସେଦିନ ଯୁଗୀ ସ୍କୁଲ ଯାଏ ନାହିଁ। ଯୁଗୀର ସ୍କୁଲ ଯିବା ବନ୍ଦ ହେଲେ ସୁଲ୍‌ଖୁନାର ମନର ଭାବନା ବି ବନ୍ଦ ହୋଇ

ବସେ। ସୁଲ୍‌ଖୁନା ହୁସିଆର ହୋଇ ଯୁଗୀକୁ କେବେ ବାସି ଡାଲି ଦିଏ ନାହିଁ। ସେଇ ଚଡଲା ଭାତ ମୁଠେ, ଲୁଣ ଲଙ୍କା ସଙ୍ଗେ ଆମ୍ବରୁ ଫାଳେ ବା ତେନ୍ତୁଳିରୁ ମେଞ୍ଚେ। ଅନେକ ଦିନ ଯୁଗୀର ଦିହ ଖରାପ ରହେତ ସ୍କୁଲ ଯାଏ ନାହିଁ। ସୁଲ୍‌ଖୁନାର ନିଶ୍ୱାସ ବନ୍ଦ ହେଲାପରି ଲାଗେ ଯୁଗୀର ସ୍କୁଲ ଯିବା ବନ୍ଦ ହେଲେ।

ସୁଲ୍‌ଖୁନାର ପାଖ ଘରେ ରହେ ମଥୁରା ପୋଢ଼। ସେ ଏବର୍ଷ ସରପଞ୍ଚ ନିର୍ବାଚିତ ହୋଇଛି। ଉଭୟଙ୍କର ଭଲ ପଡ଼େ। କାର୍ତ୍ତିକ, ମାଘ, ବୈଶାଖରେ ପ୍ରଭାତୀ ସ୍ନାନ ପାଇଁ ସାଙ୍ଗ ହୋଇ ଯାଆନ୍ତି। ସରପଞ୍ଚ ମଥୁରା ପୋଢ଼ କହିଲା ସୁଲ୍‌ଖୁନାର ଘରକୁ ଇନ୍ଦିରା ଆବାସଟେ ନ କଲେ ନ ଚଳେ। ଗ୍ରାମ ପଞ୍ଚାୟତରେ ପ୍ରସ୍ତାବ ଗୃହୀତ ହେଲା। ସୁଲ୍‌ଖୁନା ଚ଼ନ୍‌ସନ୍ଦନାର ଘରେ ଏକ ଇନ୍ଦିରା ଆବାସ ତିଆରି ହେବ।

ସ୍ୱାମୀ ଋଷି ଚ଼ନ୍‌ସନ୍ଦା କୁଲି ଭୁତିଆରୀ କରି ଚଳେ। ସେ ଏବେ ପାଖ ଗାଁ ପଣ୍ଡାଘରର ଇଟାଭାଟିରେ ଇଟା ଗଢ଼ୁଛି। ଆଗରୁ ସେ ଇଟା ଗଢ଼ା ବାବଦକୁ ଆଗୁଆ ବଇନା ଆଣିଥିଲା। ପାଞ୍ଚହଜାର ଇଟା ନ ଗଢ଼ିବା ପର୍ଯ୍ୟନ୍ତ ତାର ମୁକ୍ତି ନାହିଁ। ସେ ତ ଅଛି ଇଟାଭାଟିରେ ବନ୍ଧା। ଆଉ ତାର ରହିବା ଘରଖଣ୍ଡିକ ବି କାଗଜପତ୍ରରେ ଲେଖା ହୋଇ ବନ୍ଧା ପଡ଼ିଛି ପଣ୍ଡାଘରର କାଗଜପତ୍ର ବାକ୍ସରେ। ନିୟମ ଅନୁସାରେ ସୁଲ୍‌ଖୁନାର ଘର ଭିତରେ ଇନ୍ଦିରା ଆବାସ ପାଇଁ ଆବଶ୍ୟକ ମାପ ଅନୁସାରେ ଖୁଣ୍ଟ ପୋତା ହୋଇ ନିହ ଖୋଳାଗଲା। ଋଷି ଚାରିଦିନ ପାଇଁ କହି ବୁଲି ନିହ କୋଡ଼ା ସାରି ଇଟା ବାଲି ଦୁଇ ଗାଡ଼ି ଆଣି ପକାଇଲା। ଇଟା ଗଦାରେ ସାପ ଓ ମୂଷା ନୂଆଘର ପାଇଲା ପରି ରହିଲେ। ବର୍ଷିଲା ପାଣି ଜମି ମଶା ଜଗତକୁ ଏକ ଧର୍ମଶାଳା ଯୋଗାଇଲା।

ସାମୟିକ ବିଭିନ୍ନ ଦିହ ଖରାପ ହେତୁ ଯୁଗୀ ସ୍କୁଲକୁ ଗଲା ନାହିଁ; ମାଷ୍ଟ୍ରେ ଆସିଲେ ଯୁଗୀର କ'ଣ ହୋଇଛି ଜାଣିବା ପାଇଁ। ତାଙ୍କ ସାଇକେଲ୍‌ରେ ବସାଇ ଗାଁ ପାଖ ଡାକ୍ତରଖାନାକୁ ନେଇ ଡାକ୍ତରଙ୍କୁ ଦେଖାଇଲେ। ଜାଣିଲେ ଯେ ଯୁଗୀର ଦେହରେ ରକ୍ତ ନାହିଁ, ତା ଉପରେ ମେଲେରିଆ ଜ୍ୱର। ଡାକ୍ତର ସନ୍ଦେହ କଲେ ମସ୍ତିଷ୍କ ମେଲେରିଆ। ରକ୍ତ ଅଭାବ ହେତୁ ତା'ର ଅବସ୍ଥା ଧୀରେ ଧୀରେ ଖରାପ ଆଡ଼କୁ ଯାଉଛି। ଯୁଗୀ ଆଉ ଘରକୁ ଫେରି ନାହିଁ, ସେଇଠି ସେ ଡାକ୍ତରଖାନା ଖଟିଆ ଧରିଲା। ସୁଲଖନା ସେଇଠି ଜଗିରହିଲା। ମାଷ୍ଟ୍ରେ ଦଉଡ଼ା ଦଉଡ଼ି କରି ଔଷଧ ପତ୍ର କଥା ବୁଝୁଥାନ୍ତି। ରକ୍ତର ଅଭାବ କ'ଣ କରାଯିବ। ମାଷ୍ଟ୍ରେ ନିଜର ରକ୍ତ ଦେଲେ; ସୁଲଖନାର ରକ୍ତ ଚଳିଲା ନାହିଁ। ମାଷ୍ଟ୍ରେ ଯୁଗୀର ଖାଇବା ପିଇବା ପ୍ରାୟ ଦେଖୁଥିଲେ

ତ ସେଥିରେ ରକ୍ତ ହେବା ଭଳି କିଛି ନ ଥିଲା। ଗରମ ଭାତ ଗଣ୍ଡେ ଓ ଲୁଣ ଲଙ୍କା ସଙ୍ଗେ ମେଞ୍ଚେ ତେନ୍ତୁଳି। ସୁଲ୍‌ଖୁନା ଭୁତିଆଗୀ କରି ଗଲେ ଶାଗ ଡାଳ କିଛି ଓ ଗେଣ୍ଡା କଙ୍କଡ଼ା କିଛି ଠୁଳେଇ ପାରିଥାନ୍ତା, ହେଲେ ସେଥିଲେ ସମୟ ନଷ୍ଟ ହେବ ତ ମାଲିକ କହିବ। ପୁଣି ଗେଣ୍ଡା କଙ୍କଡ଼ା ଖାଇବାକୁ ହେଲେ ଯୁଗୀକୁ 'ଅ' ଆସେ। ଋଷି ଡନ୍‌ସନା ବି କାହିଁ କେଉଁଠି ମାଛ କଙ୍କଡ଼ା ଯୋଗାଡ଼ କରନ୍ତା ଯେ- ସେ ଏବେ ନିତି ସାହାନ୍ତିରେ 'ଇଠ ନିଶି ପାହିଲା ଏଥର ହେ ବଂଶୀଧର! ଶମ୍ଭୁଆଳେ କମ୍ବୁସ୍ୱନ, ଶୁଭୁଅଛି ଘନ ଘନ- ଉଦି ଆସିଲାଣି ଦିନକର ହେ, ବଂଶୀଧର' ଗାଇବାରେ ଭୁଲ କରେ ନାହିଁ।

ସୁଲ୍‌ଖୁନା, ଯୁଗୀ ଓ ଋଷିର ଜୀବନମାନ ଘଡ଼ି ଘଣ୍ଟାର ଗୋଲ୍ ବୁଲାଣି ରାସ୍ତାରେ ଗଡୁଛି। ଇନ୍ଦିରା ଆବାସ ପାଇଁ ପଇସା ନେବା କଥା ଉଠିଲା। ଋଷି ନ ଆସିଲେ ସୁଲ୍‌ଖୁନା ବି ନେଇପାରିବ। ମାଷ୍ଟ୍ରେ ଶୁଣି କହିଲେ, 'ଯୁଗୀ ଆଣିଲେ ଚଳିବ ନାହିଁ?' ତା' ଶୁଣି ଯୁଗୀ ତା'ର ରଫ୍‌ଖାତାର ସାଦା ପୃଷ୍ଠାମାନ ତା ନିଜ ଦସ୍ତଖତରେ ଭରିଦେଲା। କିନ୍ତୁ ଶେଷରେ ସମିତି ଚେୟାରମ୍ୟାନ୍‌ଙ୍କ ପାଖଲୋକ ଜଣେ ପଇସା ଆଣିଲା। ସେ ଠିକାରେ ତିଆରି କରିଦେବ ଘରଟା- ଯଦିଓ ତାହା ମନା। ଯଦି କିଛି ବଳେ ତେବେ ସମିତି ସଭାପତି ବୁଝିବେ, କ'ଣ କରାଯିବ।

ହେଲେ, ଇନ୍ଦିରା ଆବାସ ହେଲା କି ନାହିଁ କିଏ ବୁଝିବ? ଯୁଗୀର ମସ୍ତିଷ୍କ ମ୍ୟାଲେରିଆରେ ତା'ର ମୁଣ୍ଡ କାମ କରୁନି। ସୁଲ୍‌ଖୁନା ଘରୁ ବାହାରକୁ ଆସିଲେ ଇଟା ଗଦା ଓ ନିହ ଖାଲରେ ଝୁଣ୍ଟି ହୋଇ ପଡୁଛି। ଋଷି ଡନ୍‌ସିନା ପଣ୍ଡା ଘରେ ଅଧିଆ ପଡ଼ିଛି ତାର ଡିହ ଖଣ୍ଡିକ ପାଇଁ, ଯାହା ବନ୍ଧା ପଡ଼ିଛି। ତାକୁ ସେ ମୁକୁଳାଇବ। ପାଖ ପୂଜାରୀ ଘରେ ଚାହୁଁଛନ୍ତି ଡିହଟି ବିକ୍ରି ହେଲେ କିଣନ୍ତେ ଯେ ନିଜ ଡିହର ଦକ୍ଷିଣ ଓ ପଶ୍ଚିମ ପଡୁଛି, କ'ଣ କରିବେ?



# (ସମାପ୍ତ)

(୨୦୦୨-୦୫ରେ ସେ ଓଡ଼ିଆରେ କେତୋଟି ନିବନ୍ଧ ଲେଖିଥିଲେ, ଯାହା 'ସମ୍ବାଦ' ପତ୍ରିକାରେ ପ୍ରକାଶିତ ହୋଇଥିଲା।)

# ପରିଶିଷ୍ଟ

## କବି ହେମଚନ୍ଦ୍ରଙ୍କ ରଚନା ସଂଭାର ଓ ଗାଁ

*ପ୍ରୀତୀଶ ଆଚାର୍ଯ୍ୟ*

-କ-

ହେମଚନ୍ଦ୍ର ଆଚାର୍ଯ୍ୟ (୧୯୨୬-୨୦୦୯) ଜଣେ କବି ଭାବରେ ପଶ୍ଚିମ ଓଡ଼ିଶାରେ ଖୁବ ପରିଚିତ। କୋଶଳି-ସମ୍ବଲପୁରୀ ରାମାୟଣ 'ରାମରାହା' (୨୦୦୧) ର ରଚୟିତା ରୂପରେ ତାଙ୍କୁ 'କୋଶଳ ବାଲ୍ମୀକି' ଉପାଧି ଦିଆଯାଇଥିଲା। ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ସଂସ୍କୃତି ସମ୍ମାନ (୨୦୦୮) ପ୍ରଦାନ କରାଯାଇଥିଲା। ଓଡ଼ିଶା ସାହିତ୍ୟ ଏକାଡ଼େମୀ ପକ୍ଷରୁ ତାଙ୍କୁ ସମ୍ମାନିତ କରାଯାଇଥିଲା। 'ରାମରାହା' ବ୍ୟତୀତ ତାଙ୍କର ଅନେକ ରଚନା ରହିଛି ନାଟକ ମଧ୍ୟରେ ଅଛି 'ଅଭିଶାପ' (୧୯୪୪), 'ବିଶ୍ୱାସ' (୧୯୫୪), 'ପରୀକ୍ଷିତ' (୧୯୪୫), 'ନିର୍ବାସିତା' (୧୯୫୦-୫୧), 'ସଂବରାସୁର ବଧ' (୧୯୬୦-୬୧), 'ମହାରଥୀ କର୍ଣ୍ଣ' (ରଚନା କାଳ ୧୯୪୭; ପ୍ରକାଶନ ୧୯୫୮), 'ପ୍ରତୀକ୍ଷା' (୧୯୬୬), ଦଣ୍ଡ ନାଟିକା 'କୃଷ୍ଣ-କେଳି' (୧୯୭୩), ଓ ସମ୍ବଲପୁରୀ ନାଟିକା 'ମୁଇଁ ମଲେ ଯାଇ' (୧୯୯୩-୯୪)। ଏ ଗୁଡ଼ିକ ମଧ୍ୟରୁ କେବଳ 'ମହାରଥୀ କର୍ଣ୍ଣ' ପ୍ରକାଶକ କଟକ ଟ୍ରେଡ଼ିଂ କଂପାନୀ ପକ୍ଷରୁ ପ୍ରକାଶିତ। ମୁଦ୍ରିତ କପି ବଜାରରେ ଉପଲବ୍ଧ ନୁହେଁ। ଅନ୍ୟ ପକ୍ଷରେ, କେବଳ 'ମୁଇଁ ମଲେ ଯାଇ'କୁ ବାଦ ଦେଲେ ସବୁଗୁଡ଼ିକ ଅଭିମଞ୍ଚିତ। ଅର୍ଥାତ୍ ମୁଦ୍ରଣ ଜଗତର ଦ୍ୱାର ମାଡ଼ିନଥିବା ସତ୍ତ୍ୱେ ନାଟକ ଗୁଡ଼ିକ ମଞ୍ଚସ୍ଥ ହୋଇ ଦର୍ଶକମାନଙ୍କଦ୍ୱାରା ଆଦୃତ ହୋଇଛି। ହେମଚନ୍ଦ୍ର ନିଜେ ନାଟକର ନିର୍ଦ୍ଦେଶକ; ଗାଁ କଳାକାର ମାନେ ଅଭିନେତା। ଅବସୋସର ବିଷୟ ଯେ ହେମଚନ୍ଦ୍ରଙ୍କ ପରି ଅନ୍ୟ କଳାକାରମାନେ ମଧ୍ୟ ଦେହତ୍ୟାଗ କଲା ଉତ୍ତାରୁ ଏବଂ ପାଣ୍ଡୁଲିପିଗୁଡ଼ିକ ମୁଦ୍ରିତ ଓ ପ୍ରକାଶିତ ହୋଇନଥିବାରୁ ବିସ୍ମୃତ ହେବାକୁ ଲାଗିଛି। 'ମହାରଥୀ କର୍ଣ୍ଣ', 'ପ୍ରତୀକ୍ଷା', 'ବିଶ୍ୱାସ', 'ମୁଇଁ ମଲେ ଯାଇ' ଏବଂ 'କୃଷ୍ଣ କେଳି'କୁ ଛାଡ଼ିଦେଲେ ଅନ୍ୟ ହାତଲେଖା ପାଣ୍ଡୁଲିପିଗୁଡ଼ିକ ହାତଛଡ଼ା; ମିଳିବ କି ନାହିଁ କେଜାଣି। ଏହି ପରିପେକ୍ଷୀରେ ହେମଚନ୍ଦ୍ରଙ୍କ ଉଭୟ ପ୍ରକାଶିତ ଓ ଅପ୍ରକାଶିତ ରଚନା ସଂଭାରକୁ ନେଇ ଅନ୍ତତଃ ଏକ ତାଲିକା ପ୍ରସ୍ତୁତ କଲାଭଳି ଆଲୋଚନା ଯଦି ହୁଏ ପଶ୍ଚିମ ଓଡ଼ିଶାରେ ଏହି ସର୍ଜନାକାରଂକ ସୃଷ୍ଟି ବିସ୍ମୃତ

ହେବ ନାହିଁ। ଯେହେତୁ କବି ହେମଚନ୍ଦ୍ର ଆଚାର୍ଯ୍ୟ ମୋର ପିତା, ଏହି ଆଲୋଚନା ଭିତ୍ତିକ ତାଲିକା ପ୍ରସ୍ତୁତି ମୋ ପାଇଁ ବିଶେଷ କଷ୍ଟକର ହେବ ନାହିଁ। ସାଙ୍ଗରେ ଏକଥା ମଧ୍ୟ ସତ ଯେ, ତାଙ୍କ ସହିତ ମୋର ରକ୍ତ ସମ୍ବନ୍ଧ ଯୋଗୁଁ ଆଲୋଚନାର ବସ୍ତୁନିଷ୍ଠତା ମୋର ସମସ୍ତ ପ୍ରୟାସ ସତ୍ତ୍ୱେ ସନ୍ଦେହର ଊର୍ଦ୍ଧ୍ୱରେ ରହିନପାରେ। ସେତେବେଳେ ମୋର ସାହିତ୍ୟ ରୁଚି ଓ ଗବେଷଣା ଦୃଷ୍ଟି ଯେତେ ମାତ୍ରାରେ ସମୀକ୍ଷାତ୍ମକ ହେବା କଥା, ତାହା ହୋଇନାହିଁ ବୋଲି ଅଭିଯୋଗ ହେବାରେ ବି କିଛି ଅସ୍ୱାଭାବିକତା ନାହିଁ। ତେଣୁ, ଏହି ଆଲେଖ୍ୟକୁ ଏକ ବସ୍ତୁନିଷ୍ଠ ଆଲୋଚନା ନ କହି, ସେ ଦିଗରେ ଏକ ସାମାନ୍ୟ ପ୍ରୟାସ ବୋଲି କହିବା ବୋଧହୁଏ ଉଚିତ ହେବ।

ସେ ଯାହାହେଉ, ନାଟକ କୁ ବାଦଦେଲେ କବି ହେମଚନ୍ଦ୍ର ଉଭୟ କୋଶଳି-ସମ୍ବଲପୁରୀ ଏବଂ ଓଡ଼ିଆରେ ଅନେକ ଗୀତ, କାବ୍ୟ, ଗଦ୍ୟ ଓ ସାମୟିକ ଆଲୋଚନାମାନ ଲେଖିଛନ୍ତି; ଅନୁବାଦ କରିଛନ୍ତି। କାବ୍ୟ ଗୁଡ଼ିକ ମଧ୍ୟରେ ଓଡ଼ିଆରେ ରହିଛି : 'ଶବରୀ ସଂଦେଶ' (୧୯୮୫) ଏବଂ 'ଗୀତିଗାଥା' (୨୦୦୮)। 'ନୂନୀ'(୧୯୯୪), 'ସତର ସତି ବୃନ୍ଦାବତୀ' (୧୯୯୨) ଓ 'ସମ୍ବଲପୁରୀ ଗୀତ' (୨୦୦୪)। ଏଗୁଡ଼ିକ କୋଶଳି ସମ୍ବଲପୁରୀରେ ଲିଖିତ। ଅପ୍ରକାଶିତ କୃତି ମଧ୍ୟରେ ରହିଛି କୋଶଳିରେ 'ଉପନିଷଦର ସ୍ୱର' (୧୯୯୮) ଓ ୧୯୫୦-ଦଶକରୁ ମୃତ୍ୟୁ ପର୍ଯ୍ୟନ୍ତ ଲେଖିଥିବା ଅସଂଖ୍ୟ ସଂକୀର୍ତ୍ତନ ଗୀତ। ସଂକୀର୍ତ୍ତନ ଗୀତ ଗୁଡ଼ିକ 'ଶରତ ରାସ', 'ରାଧା ସନ୍ନ୍ୟାସ' ଓ 'କୃଷ୍ଣଜନ୍ମ' ଆଦି ଶୀର୍ଷକରେ ପାଣ୍ଡୁଲିପି ଆକାରରେ ରହିଛି।

୧୯୭୫ରେ 'ଆର୍ନ୍ତଜାତିକ ମହିଳା ବର୍ଷ' ପାଳନ କରାଯାଉଥିଲା। ତାକୁ ଉପଲକ୍ଷ୍ୟ କରି ସେ ଲେଖିଥିଲେ 'ଶବରୀ-ସଂଦେଶ'। 'ରାମାୟଣ'ର ଏକ ଗୌଣ ଚରିତ୍ର 'ଶବରୀ'। ଭକ୍ତି ଓ ପ୍ରେମ ବଳରେ ସେ ପୁରୁଷୋତ୍ତମ 'ରାମ'ଙ୍କୁ ନିଜ ଘରେ ପାଇଥିଲା। ସେତେବେଳେ ତା'ର ଶବରୀ ହେବା, ନିରକ୍ଷର ହେବା କିମ୍ବା ବୌଦ୍ଧିକ ଜ୍ଞାନ ନଥିବା ବାଧକ ହୋଇନଥିଲା। ଏହି କଥାବସ୍ତୁକୁ ଭିତ୍ତିକରି କବି ୨୫ଟି ସର୍ଗରେ 'ଶବରୀ-ସଂଦେଶ' ଲେଖିଥିଲେ। ଏଥିରେ ରୀତି ଯୁଗୀୟ ଧାରାରେ ପ୍ରତ୍ୟେକ ପଦର ଆରମ୍ଭ ଓ ଶେଷ ତାଲବ୍ୟ 'ଶ' ରେ। ଉଦାହରଣ ସ୍ୱରୂପ:

ଶର୍ବରୀ ସରି ନାହିଁ, ପ୍ରାଚୀ ଆକାଶେ
ଶୁଭ୍ର ପ୍ରଭାତୀ ତାରା ଏବେ ବିକାଶେ,
ଶ୍ୱାପଦ ନ ଶୋଇଣ ସ୍ୱଭାବେ ବଶେ
ଶତ ଆରବେ ନିଶା ମାପ ପ୍ରକାଶେ ଯେ।

'ଶବରୀ-ସଂଦେଶ'ର ବିଶେଷତ୍ୱ ହେଲା ଯେ, ଶବର ଏହି କସରତ ସତ୍ତ୍ୱେ ଭାବକୁ ବୁଝିବା ବେଳେ ପାଠକ ଝୁଂଟି ପଡ଼େନା। ବରଂ କବିଙ୍କ ମତରେ, ସାହିତ୍ୟ ଅଧ୍ୟୟନ ଏକ ଶୃଂଖଳା ଯାହାକୁ ଆୟତ୍ତ କରିବା ଲାଗି କୌଣସି 'ସର୍ଟ-କର୍ଟ' ପଦ୍ଧତି ଧ୍ୟେୟ ହେବା ଅନୁଚିତ। ଏକ ଶୃଂଖଳା ଲବ୍ଧ ସାହିତ୍ୟ ଅଧିକ ଦୀର୍ଘସ୍ଥାୟୀ ଏବଂ ଆମୋଦଦାୟୀ ହେବାର ସାମର୍ଥ୍ୟ ରଖେ ବୋଲି ସେ ମତ ଦିଅନ୍ତି। କେବଳ ୪୮ ପୃଷ୍ଠାର ଏହି କାବ୍ୟଟି ପ୍ରକାଶକ ଅଭାବରେ ଲେଖାର ଦୀର୍ଘ ୧୦ ବର୍ଷ ପରେ ୧୯୮୫ ରୁ ବାଲୁଗାଁ (ପୁରୀ)ର 'ଲୋକନାଥ ପ୍ରେସ'ରୁ ଏକ ଚଟି ବହି ଆକାରରେ ପ୍ରକାଶିତ ହୋଇଥିଲା। ଏଥିରେ ପ୍ରକାଶକଙ୍କର ଭୂମିକା ବି ଗାୟବ। ପ୍ରକାଶନ ପଛରେ ବ୍ୟକ୍ତିଗତ ଉଦ୍ୟମ ଥିଲା ବାପାଙ୍କର ସମ୍ମୁଧି ଏବଂ ପଣ୍ଡିଚେରୀ ଶ୍ରୀ ଅରବିନ୍ଦ ଆଶ୍ରମର ସାଧକ ମଧୁସୂଦନ ମିଶ୍ରଙ୍କର। ନିଜର ଜଣେ ପରିଚିତଙ୍କୁ 'ମଧୁଭାଇନା' କାବ୍ୟଟିକୁ ପ୍ରକାଶ କରିବାକୁ ବ୍ୟକ୍ତିଗତ ଅନୁରୋଧ କରିଥିଲେ। 'ଶବରୀ-ସଂଦେଶ' ଥିଲା ହେମଚନ୍ଦ୍ରଙ୍କ ରଚନା ସଂଭାରର ଦ୍ୱିତୀୟ ପ୍ରକାଶନ। ପ୍ରଥମ ପ୍ରକାଶନ 'ମହାରଥୀ କର୍ଣ୍ଣ' ର ଦୀର୍ଘ ୨୬ ବର୍ଷ ପରେ।

ପ୍ରକାଶନ ଜଗତର ଏହି ତିକ୍ତ ଅନୁଭୂତିଠାରୁ ସଂପୂର୍ଣ୍ଣ ନିଆରା ଥିଲା ତାଙ୍କ ଲୌକିକ ପରିଚିତି। ସେ 'ଶବରୀ ସଂଦେଶ' ହେଉ ବା ତାଙ୍କ କୀର୍ତ୍ତନ ଗୀତ ହେଉ ବା ୧୯୪୪ ରୁ ପ୍ରବେଶିକା ପରୀକ୍ଷା ପାସ କଲା ଉତ୍ତାରୁ ମଝିରେ ମଝିରେ ଯଥେଷ୍ଟ ସ୍ୱାଭିମାନର ସହିତ ସେ ରଚନା କରୁଥିବା ସମ୍ବଲପୁରୀ ଗୀତ ହେଉ, ସବୁ ଗୁଡ଼ିକ 'ସଞ୍ଚାର'ରେ କୀର୍ତ୍ତନ ଦଳ ଗୁଡ଼ିକ ମାଧ୍ୟମରେ ନିରନ୍ତର ପରିବେଷିତ ହେଉଥିଲା ଏବଂ ଜନ ଆଦୃତି ଲାଭ କରୁଥିଲା। ବିଶେଷ କରି ବରଗଡ଼ ଜିଲ୍ଲାର ଗଣ୍ଡିଆପାଲିର ସଂଚାର କଳାକାର ଗଜପତି ପଣାୟତ ଏବଂ ବାପାଙ୍କ ଉଦ୍ୟମରେ ଗର୍ଜ୍ଜଣା ଗାଁରେ ଆରମ୍ଭ ହୋଇଥିବା କୀର୍ତ୍ତନ ଦଳ ବାପାଙ୍କ ଉକ୍ତ ଗୀତି କବିତା ଗୁଡ଼ିକୁ ଖୁବ ଜନପ୍ରିୟ କରାଇଥିଲେ। ମୋର ପିଲାଦିନେ ଦେଖିଛି, ଗଜପତି ପଣାୟତ ଏବଂ ଅନ୍ୟ ସଂଚାର କଳାକାରମାନେ ଆସି କହନ୍ତି, "ମୁଗ୍ଧ ଶ୍ରୋତା କାବ୍ୟର ଲେଖକଙ୍କୁ ଏହି ପୁରସ୍କାର ରାଶି ପ୍ରଦାନ କରିଛନ୍ତି।" ସେମିତି କୀର୍ତ୍ତନ ଗାୟକ କୃଷ୍ଣଚନ୍ଦ୍ର ପ୍ରଧାନ ଓ ବାଦ୍ୟକାର କୃଷ୍ଣଚନ୍ଦ୍ର ଭୁଏ ଆସି ମୁଗ୍ଧ ଶ୍ରୋତା କବିଙ୍କ ପାଇଁ ଦେଇଥିବା ପୁରସ୍କାର ରାଶି ଦିଅନ୍ତି। ଏମିତି ପରିମାଣରେ ଦେଖିଲେ ଗ୍ରାମ୍ୟଶ୍ରୋତାମାନେ ଦେଇଥିବା ପୁରସ୍କାର ଦଶ-ପଚାଶ ଟଙ୍କା ମାତ୍ର । ମାତ୍ର ଶ୍ରୋତା ମହଲରେ ଲେଖାର ଏହି ଧରଣର ଆଦୃତି ବାପାଙ୍କୁ ଆହୁରି ଆହୁରି ଲେଖିବା ପାଇଁ ପ୍ରୋତ୍ସାହିତ କରେ, ପ୍ରେରଣା ଦିଏ ! ତେଣୁ ବହୁଦିନ ପର୍ଯ୍ୟନ୍ତ ପ୍ରକାଶନ ଜଗତରେ ଅପରିଚିତ ହେବା ଯେମିତି ହେମଚନ୍ଦ୍ରଙ୍କ ସୃଷ୍ଟି କ୍ଷେତ୍ରରେ

ଏକ ବାସ୍ତବିକତା, ପଶ୍ଚିମ ଓଡ଼ିଶାର ଭୌତିକ ଓ ସାଧାରଣ ଜଗତରେ ଖୁବ ପରିଚିତି ମିଳିବା ସେମିତି ଏକ ସଫଳତା। ଆଶ୍ଚର୍ଯ୍ୟର କଥା ଯେ ଏହାକୁ ଏକ ବିରୋଧାଭାସ ଭାବରେ ନ ନେଇ ସେ ଖୁବ ସ୍ୱାଭାବିକ ଢ଼ଙ୍ଗରେ ନେଇ ପାରୁଥିଲେ ବୋଲି ନିଜ ଅନ୍ତରର ସୃଷ୍ଟିଶୀଳତାକୁ ବଞ୍ଚେଇ ରଖିପାରିଥିଲେ।

୧୯୪୪ରେ ବାପା ବରଗଡ଼ ଜର୍ଜ ହାଇସ୍କୁଲରୁ ମେଟ୍ରିକ ପାସ କରି ଗାଁକୁ ଆସିଥିଲେ। ହାଇସ୍କୁଲରେ ତାଙ୍କ ଶିକ୍ଷକ ଥିଲେ ଶଶିଭୂଷଣ ମିଶ୍ର, ସତ୍ୟନାରାୟଣ ବହିଦାର ଓ ନିତ୍ୟାନନ୍ଦ ଦର୍ଜି। ବାପାଙ୍କୁ ସମ୍ବଲପୁରୀରେ ଲେଖିବା ପାଇଁ ଏହି ମହାନ ଶିକ୍ଷକମାନଙ୍କଠାରୁ ପ୍ରେରଣା ମିଳିଥିଲା। ସମ୍ବଲପୁରୀରେ ଲେଖିବା ସେତେବେଳେ ସାହସର କାମଥିଲା, କାରଣ ବୌଦ୍ଧିକ ଜଗତରେ ସମ୍ବଲପୁରୀ ଲେଖକଙ୍କୁ ମାନ୍ୟତା ମିଳିବାର ପରଂପରା ସୃଷ୍ଟି ହୋଇନଥିଲା। ବାପା ଉଭୟ ସମ୍ବଲପୁରୀ ଓ ଓଡ଼ିଆରେ ଲେଖୁଥିଲେ। ୧୯୪୪ ପରେ ସେ ଚାକିରି କରିଛନ୍ତି। ଚାକିରି ମଧ୍ୟରେ ରହିଛି ଶିକ୍ଷକତା, ଗ୍ରାମ ସେବକ, ବ୍ଲକରେ S.C.O. (ସାମାଜିକ ସାଂସ୍କୃତିକ ସଂଗଠକ) ଏବଂ ଏବିଡ଼ିଓ ଚାକିରି। ଚାକିରି କ୍ଷେତ୍ର ମଧ୍ୟରେ ରହିଛି ବିଜେପୁର, ଭଲୁଙ୍ଗା, ହେମଗିର, ସନ୍ଦରଗଡ଼, ବିନକା, ରାଜଗାଂଗପୁର, ବଣେଇ, ଓ ବିସ୍ରା ଆଦି। ୧୯୬୬ରେ ସେ ସଂଯୁକ୍ତ ସୋସିଆଲିଷ୍ଟ ଦଳର ମେଳଛାମୁଣ୍ଡାରୁ ବିଧାନସଭା ପାଇଁ ପାର୍ଥୀ ହେବା ଉଦ୍ଦେଶ୍ୟରେ ସେ ଗାଇସିଲେଟ (ବରଗଡ଼ ଜିଲ୍ଲା) ବ୍ଲକରୁ ଇସ୍ତଫା ଦେଲେ। ଚାକିରି ଗଲା; ନିର୍ବାଚନରେ ପରାଜିତ ହେଲେ। ତେଣିକି ଗାଁରେ ପୈତୃକ ସଂପତ୍ତିର ରକ୍ଷଣାବେକ୍ଷଣକୁ ଅର୍ଥାତ କୃଷିକୁ ବୃତ୍ତି କରି ରହିଲେ। ୧୯୭୨ରେ ବଡ଼ ପୁଅ ସତୀଶ ସମ୍ବଲପୁର ଜି.ଏମ. କଲେଜରୁ ଦର୍ଶନଶାସ୍ତ୍ରରେ ବି.ଏ. ପରୀକ୍ଷା ଦେବା ପୂର୍ବରୁ ଘର ଛାଡ଼ିଲା; ସଂଭବତଃ ସନ୍ନ୍ୟାସୀ ହେଲା। ବାପାଙ୍କ ବ୍ୟକ୍ତିଗତ ଜୀବନରେ ଏହା ଥିଲା ଏକ ଶକ୍ତ ଧକ୍କା। ଅଣଜଳସେଚିତ ପଦମପୁର ଅଞ୍ଚଳର ଗର୍ଭଣାରେ କୃଷିର ଫଳକୁ ନେଇ ସର୍ବଦା ଅନିଶ୍ଚିତତା ଲାଗି ରହିଥାଏ। ବଡ଼ ପରିବାର, ବ୍ୟକ୍ତିଗତ ଜୀବନର ଝଡ଼ଝଞ୍ଜା, ଆର୍ଥିକ ଦୁସ୍ଥିତି ସତ୍ତ୍ୱେ ତାଙ୍କ ଗ୍ରାମ୍ୟ ଜୀବନ ସହିତ ସାହିତ୍ୟ ସାଧନା ମଧ୍ୟ ନିରନ୍ତର ଚାଲିଥାଏ। ଏହି ନିରନ୍ତରତା ପଛରେ ଯେତିକି ପ୍ରେରଣା ଥାଏ ସେହି ଲୋକାଦୃତିର, ସେତିକି ପ୍ରେରଣା ଥାଏ ତାଙ୍କ ଶିକ୍ଷକମାନଙ୍କର ଆଶୀର୍ବାଦର ! ଯାହା ଫଳରେ ପ୍ରକାଶନ ଜଗତର ଉପେକ୍ଷାକୁ ବିନା କଷ୍ଟରେ ସେ ହଜମ କରି ପାରୁଥିଲେ ! ଅନ୍ୟଥା, ୧୯୪୪ରୁ ୧୯୮୫ ମଧ୍ୟରେ ଯେଉଁ ୪୧ ବର୍ଷର କାଳାଂଶ, ତହିଁରେ ପ୍ରକାଶିତ ହୋଇଛି ସିନା ମାତ୍ର ଦୁଇଟି କୃତି, ଲେଖିଛନ୍ତି କିନ୍ତୁ ସେ ତାଙ୍କର ଅଧିକାଂଶ

ରଚନା। ସେହି ଲୌକିକ ପ୍ରେରଣା ବିନା କି ଏତେ ଗୁଡ଼ିଏ ଲେଖା କେହି ଲେଖି ପାରିବ? ନା କୌଣସି ଆନୁଷ୍ଠାନିକ ନା ସରକାରୀ ସମ୍ମାନ, ନା ପ୍ରକାଶନ, ତା'ସତ୍ତ୍ୱେ ସେ ଲେଖାକୁ ଗୌଣ ମନେ କରି ନାହାନ୍ତି। ସେହି କାଳାଂଶରେ ସମ୍ବଲପୁରୀ ଓ ଓଡ଼ିଆ ମଧ୍ୟରେ କୌଣସି ବାଛ ବିଚାର ନକରି ଉଭୟରେ ଇଚ୍ଛାମତେ ଲେଖିଛନ୍ତି। ବ୍ୟକ୍ତିଗତ ଓ ପାରିବାରିକ ଜୀବନର ଝଡ଼ଝଂଝା ତାଙ୍କ ସୃଷ୍ଟି ଆଗରେ କଦାପି ବାଧକ ହୋଇନାହିଁ! ଜଣେ ଇତିହାସ ପାଠକ ଓ ସାହିତ୍ୟ ପ୍ରେମୀ ଭାବରେ ଆଜି ମୁଁ କହିବି ଏହା ହେମଚନ୍ଦ୍ରଙ୍କର ଦାଂଭିକତା ଓ ଆତ୍ମ-ବିଶ୍ୱାସକୁ ଦର୍ଶାଏ ଏବଂ ଆଗାମୀ ପିଢ଼ି ପାଇଁ ଶିକ୍ଷା ଦେବାର ସାମର୍ଥ୍ୟ ରଖେ।

ହେମଚନ୍ଦ୍ର ପ୍ରଚାର ବିମୁଖ ନ ଥିଲେ। ତାଙ୍କ ରଚନାର କେହି ପ୍ରଶଂସା କଲେ ସେ ସାନ ଶିଶୁର ସ୍ୱାଭାବିକତାରେ ଆନନ୍ଦିତ ହେଉଥିଲେ। ସମ୍ବଲପୁର ବିଶ୍ୱବିଦ୍ୟାଳୟ ୨୦୦୧ରେ ଯେତେବେଳେ 'ରାମରାହା'କୁ ପ୍ରକାଶିତ କଲେ ଏବଂ 'ରୟାଲଟି' ବାବଦକୁ ତାଙ୍କୁ ୨୫୦୦୦ ଟଙ୍କା ପ୍ରଦାନ କଲେ, ସେଥିରେ ସେ କେତେ ଯେ ଖୁସି ହୋଇଥିଲେ, ତା'ର ହିସାବ ନାହିଁ। ୧୯୯୦ ଦଶକରେ ଏବଂ ପରେ ଯେତେବେଳେ ଯାହିଁ ଯେଉଁଠି ତାଙ୍କୁ ସମ୍ମାନିତ କରାଯାଏ ତାକୁ ନେଇ ସେ ବେଶ କିଛି ଦିନ ଖୁସିରେ ରହନ୍ତି। ମାତ୍ର, ସେ ପ୍ରଚାର-ସର୍ବସ୍ୱ ବି ନ ଥିଲେ। ପ୍ରକାଶନ, ପ୍ରଚାର ଓ ସମ୍ମାନର ସଂସାରରେ ତୀବ୍ରଭାବେ ଉପେକ୍ଷିତ ହେବା ସତ୍ତ୍ୱେ ଆତ୍ମବିଶ୍ୱାସର ସହିତ ରଚନା ସଂସାରରେ ବୁଡ଼ି ରହିଥିଲେ ଏବଂ ଅନ୍ୟମାନଙ୍କୁ ବୁଡ଼େଇ ରଖିବାକୁ ପ୍ରୟାସ କରୁଥିଲେ। ଏହି ସୃଷ୍ଟି-ନିଷ୍ଠା ହେବ ସଂଭବତଃ ହେମଚନ୍ଦ୍ରଙ୍କ ବ୍ୟକ୍ତିତ୍ୱର ଏକ ବଡ଼ ବିଶେଷତ୍ୱ।

ଏହି ପ୍ରସଂଗରେ ତାଙ୍କ ରଚନା ସଂଭାର ସହିତ ମୋର ସଂପୃକ୍ତିକୁ ନେଇ ଆଉ ଏକ ଉଦାହରଣ ଦେବା ଉଚିତ ହେବ। ବାପାଙ୍କର ସମ୍ବଲପୁରୀ ଗୀତଗୁଡ଼ିକ ତାଙ୍କ ଟୀପାଖାତା ଓ ଡ଼ାଏରୀରେ ଏପଟ ସେପଟ ହୋଇ ପଡ଼ି ରହିଥିଲା। ୧୯୭୫-୭୬ ରେ ମୁଁ ଯେତେବେଳେ ନବମ ଶ୍ରେଣୀର ଛାତ୍ର, ଭାବିଲି ସେଗୁଡ଼ିକୁ ଏକତ୍ର କରିବି ଏବଂ ସମ୍ବଲପୁର ଆକାଶବାଣୀ କେନ୍ଦ୍ରକୁ ପ୍ରସାରଣ ପାଇଁ ବାପାଙ୍କ ନାଁରେ ପଠାଇଦେବି। ସେତେବେଳେ ମୁଁ ଶୁଦ୍ଧ କରି ଓଡ଼ିଆ ବି ଲେଖି ଜାଣି ନଥାଏ; ହସ୍ତାକ୍ଷର ବି କଦର୍ଯ୍ୟ। ମୋର ସମବୟସ୍କ ଜଣେ 'ବନ୍ଧୁ' ସାଙ୍ଗରେ ୨୫ଟି ଗୀତକୁ ମୁଁ ଗୋଟାଏ ଖାତାରେ ଟିପି ବାପାଙ୍କ ନାଁରେ ସମ୍ବଲପୁର ରେଡ଼ିଓ ଷ୍ଟେସନକୁ ମନୋନୟନ ପାଇଁ ପଠାଇଦେଲି। ବେତାର କେନ୍ଦ୍ର ବାଲା ଅନ୍ୟୂନ ୨୫ଟି ଗୀତ ହେଲେ ଯାଇ ବିଚାରକୁ ନିଅନ୍ତି ବୋଲି ଜାଣିଥିଲି। ତେଣୁ, ୨୫ଟି ଗୀତର ସମାହାର। ମୋର ଏ ବାଲ୍ୟ ଚପଳତା ସଂପର୍କରେ

ବାପା କିଛି ବି ଜାଣି ନଥାନ୍ତି । କିନ୍ତୁ ମୋର ବିଶ୍ୱାସ ଥାଏ, ଗୀତଗୁଡ଼ିକ ମନୋନୀତ ହେବ ଏବଂ ରେଡ଼ିଓରେ ବାଜିବ । ସେ କ୍ଷେତ୍ରରେ ବାପା ମୋର ଏ ଭୁଲ ପାଇଁ ମତେ ଦଣ୍ଡିତ କରିବେ ନାହିଁ । ମାତ୍ର ମାସକ ପରେ ଗୀତର ପାଣ୍ଡୁଲିପିଟି ଅମନୋନୀତ ହୋଇ ଫେରି ଆସିଲା । ବାପା ସେତେବେଳେ ଗାଁ ପୋଷ୍ଟଅଫିସ୍‌ର ଡ଼ାକମାଷ୍ଟର । ମୁଁ ଧରାପଡ଼ିଗଲି; ବର୍ତ୍ତିବାର ବାଟ ନଥିଲା । ମୋ ଉପରେ ସାମାନ୍ୟ ବିରକ୍ତ ହୋଇ ସେ କହିଲେ, "ମତେ ନ ପଚ଼ାରି ତୁ କାହିଁକି ପଠାଇଥିଲୁ? ବିନା ଚ଼ିହ୍ନା ଜଣାରେ କ'ଣ ସେଠି ଗୀତ ମନୋନୀତ ହୁଏ ?" ସେହି ଦୁଇଟି ବାକ୍ୟରୁ ବେଶ ସୁସ୍ପଷ୍ଟ ଥିଲା ତାଙ୍କ ଆତ୍ମବିଶ୍ୱାସ ଓ ପ୍ରକାଶନ ଏବଂ ପ୍ରଚ଼ାର ପଛର ଫମ୍ପାପଣକୁ ବୁଝିପାରିବାର ସାମର୍ଥ୍ୟ । ଫମ୍ପାପଣକୁ ବୁଝିବାର ସାମର୍ଥ୍ୟ ରଖୁଥିଲେ ବୋଲି ଆତ୍ମବିଶ୍ୱାସ ତାଙ୍କର ଅତୁଟ ଥିଲା, ଯାହା ତାଙ୍କୁ ନିରନ୍ତର ଲେଖିବାକୁ ଉତ୍ସାହ ଦେଉଥିଲା ।

ସେତେବେଳେ ବାପା ଅଧିକ ବିରକ୍ତ ହୋଇଥିଲେ ମୋର ବର୍ଣ୍ଣଶୁଦ୍ଧି ଦେଖି, କାରଣ ପାଣ୍ଡୁଲିପିକୁ ହାତରେ ପ୍ରସ୍ତୁତ କଲାବେଳେ ତାହା ସୁଦୃଶ୍ୟ ଥିଲା । କହିଲେ, "ହାଇସ୍କୁଲରେ ଆସି ପାଠ ପଢ଼ିଲୁଣି, ତୋର ଲେଖାରେ ଏତେ ବର୍ଣ୍ଣଶୁଦ୍ଧି? ଲେଖା ଅଶୁଦ୍ଧ ହେଲେ ଲେଖକର ବିଚ଼ାର କ'ଣ ବୁଝା ପଡ଼ିବ?" ଅସଲରେ ଜୀବନର ଶେଷ ପର୍ଯ୍ୟନ୍ତ ବାପା ବର୍ଣ୍ଣଶୁଦ୍ଧି ପ୍ରତି ଏତେ ମାତ୍ରାରେ ସଚ଼େତନ ରହୁଥିଲେ ଯେ, ତାଙ୍କ ହାତଲେଖାରୁ ଆଉ କେହି 'ପାଣ୍ଡୁଲିପି' ପ୍ରସ୍ତୁତ କରନ୍ତୁ ବୋଲି ଚାହୁଁନଥିଲେ । ୨୦୦୪ରେ ସେ ଗୋଡ଼ ଭାଙ୍ଗି ଶଯ୍ୟାଶାୟୀ ହେଲେ । ହାତରେ ଲେଖିବା ତାଙ୍କ ପାଇଁ କାଠିକର ହେଲା । ସେତେବେଳେ ମୁହଁରେ ଡ଼ାକି (dictate କରି) ଲେଖା ଗୁଡ଼ିକୁ ଲେଖିବା କଥା । ମାତ୍ର ବର୍ଣ୍ଣଶୁଦ୍ଧି ହେବା ଭୟରେ ମନା କରନ୍ତି । ମୁଁ ନିଜେ ଯେତେବେଳେ ଗପ ଲେଖିବା ଆରମ୍ଭ କରିଲି, କେବେ କେବେ ମୋ ଅଜାଣତରେ ପାଣ୍ଡୁଲିପି ତାଙ୍କ ନଜରରେ ପଡ଼େ । ସେତେବେଳେ ମୋର ବିଚ଼ାରକୁ ନେଇ ସେ କୌଣସି ମନ୍ତବ୍ୟ ଦିଅନ୍ତି ନାହିଁ । ମାତ୍ର ବର୍ଣ୍ଣଶୁଦ୍ଧିଗୁଡ଼ିକୁ ଠିକ କରି ଦେଇଥାନ୍ତି । କୋଶଳି-ସମ୍ବଲପୁରୀରେ ୧୯୯୦ ଦଶକରେ ଯେତେବେଳେ ସାହିତ୍ୟ ଆନ୍ଦୋଳନ ଖୁବ ବେଗରେ ବୃଦ୍ଧି ପାଇଲା, କିଛି ଲେଖକ କହିଲେ, ଏହି ଭାଷାରେ ବିଭିନ୍ନ 'ଶ' ଓ 'ଷ' ଏବଂ ଦୀର୍ଘ 'ଈ' ଓ ଦୀର୍ଘ 'ଊ' ଆଦିର ପ୍ରୟୋଗ ର ଦରକାର ନାହିଁ । ଅର୍ଥାତ୍ 'ଶ' ଓ 'ଷ' ସ୍ଥାନରେ 'ସ' ର ପ୍ରୟୋଗ ହେବ ଏବଂ କେବଳ ହ୍ରସ୍ୱ 'ଇ' ଓ ହ୍ରସ୍ୱ 'ଉ' ର ବ୍ୟବହାର ହେବ । ବାପା ଏହି ବିବାଦର ଉର୍ଦ୍ଧ୍ୱରେ ରହି ନିଜ କୋଶଳି-ସମ୍ବଲପୁରୀ ରଚ଼ନାରେ ଆବଶ୍ୟକମତେ ତିନୋଟି ଯାକ 'ଶ', 'ଷ' ଓ 'ସ' ର ବ୍ୟବହାର

କରିଛନ୍ତି; ଦୀର୍ଘ 'ଇ' ଓ ଦୀର୍ଘ 'ଉ' ର ପ୍ରୟୋଗ କରିଛନ୍ତି। ତାଙ୍କ ମତରେ ସାହିତ୍ୟ ଏକ ସାଧନା ଏବଂ ତାକୁ ଏହି ଧରଣର ବ୍ୟାକରଣଗତ ସଂଯମ ଓ ଶୃଙ୍ଖଳା ବିନା ଉପଲବ୍ଧି ଓ ଆୟତ୍ତ କରାଯାଇପାରେନା।

ବେତାରକେନ୍ଦ୍ରରେ ହେମଚନ୍ଦ୍ରଙ୍କ ସମ୍ବଲପୁରୀ ଗୀତ ମନୋନୀତ ନ ହେବା ପ୍ରସଙ୍ଗ ଏତିକିରେ ଶେଷ ହେଲା ନାହିଁ। ୧୯୯୦ରେ ଗୀତିକାର ଓ ଲେଖକ ଧନପତି ମହାପାତ୍ର (ବାପାଙ୍କ ସମୁଧି ଏବଂ ମୋର ଶ୍ୱଶୁର) ଥରେ ବାପାଙ୍କୁ ପରାମର୍ଶ ଦେଲେ, "ଆପଣ ସମ୍ବଲପୁରୀ ଗୀତଗଡ଼ିକୁ ସମ୍ବଲପୁର ବେତାର କେନ୍ଦ୍ରକୁ ପ୍ରସାରଣ ପାଇଁ ପଠାନ୍ତୁ।" ବାପାଙ୍କ ଉତ୍ତର, "ଚିହ୍ନା ଜଣା ନଥିଲେ ଗୀତ ମନୋନୀତ ହୁଏନା। ତେଣୁ, ପଠାଇବାକୁ ଅନାଗ୍ରହୀ।" ଏହା ପରେ ଧନପତି ବାବୁ ବେତାର କେନ୍ଦ୍ରର ଦସ୍ତାବିଜରୁ ହେମଚନ୍ଦ୍ର ଥରେ ଗୀତ ପଠାଇବା ଏବଂ ଗୀତ ଫେରସ୍ତ ଆସିଥିବା କଥା ଅବଗତ ହେଲେ। ଅର୍ଥାତ ବାପା ତହିଁରେ ଅକୃତକାର୍ଯ୍ୟ। ଏହି ଘଟଣା ପଛରେ ଯେ ମୁଁ ଥିଲି ଖଳନାୟକ ତାହା ମତେ ଖୁବ ଆହତ କରିଥିଲା। ୨୦୦୪ରେ ବାପାଙ୍କର ଜେଠାପୁଅ ମଙ୍ଗଳଚରଣ ଆଚାର୍ଯ୍ୟ ସଂଗ୍ରହ କରିଥିବା ବାପାଙ୍କର କେତୋଟି ଗୀତ ଓ ବେତାର କେନ୍ଦ୍ରରୁ ଫେରି ଆସିଥିବା ପାଣ୍ଡୁଲିପି କୁ ମିଶାଇ 'ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ସମ୍ବଲପୁରୀ ଗୀତ' ଶୀର୍ଷକରେ ମୋ ଉଦ୍ୟମରେ ଏକ ଛୋଟ ପୁସ୍ତିକା ପ୍ରକାଶିତ ହେଲା। ୨୦୦୯ରେ ବାପାଙ୍କ ମୃତ୍ୟୁପରେ ସମ୍ବଲପୁରୀ ଗୀତ ପୁସ୍ତିକାଟିକୁ ବହୁ ସଂଖ୍ୟାରେ ଛାପି ଶ୍ରାଦ୍ଧକ୍ରିୟାରେ ଯୋଗ ଦେଇଥିବା ବନ୍ଧୁ-ସ୍ୱଜନଙ୍କୁ ବାଣ୍ଟିବାର ବ୍ୟବସ୍ଥା କରାଯାଇଥିଲା। ଏସବୁ ଥିଲା ମୋ ପାପର ପ୍ରାୟଶ୍ଚିତ, ଯାହା ନବମ ଶ୍ରେଣୀରେ ମୁଁ ପଢୁଥିବା ବେଳେ ବାପାଙ୍କୁ ନ ପଚାରି ଗୀତ ଗୁଡ଼ିକୁ ବେତାର କେନ୍ଦ୍ରକୁ ପଠାଇ 'ଅମନୋନୀତ' ହେବାର ଦୁର୍ଯୋଗ ଆଣିଦେଇଥିଲି।

ହେମଚନ୍ଦ୍ରଙ୍କ ପ୍ରାୟ ସମ୍ବଲପୁରୀ ରଚନା ପ୍ରକାଶିତ। ପୌରାଣିକ କାବ୍ୟ 'ସତର ସତି ବୃନ୍ଦାବତୀ' (୧୯୯୩) ଧନପତି ମହାପାତ୍ରଙ୍କ ଉଦ୍ୟମରେ; ସାମାଜିକ କାବ୍ୟ 'ନୁନୀ' (୧୯୯୪) ରାଜନେତା ଓ ବାପାଙ୍କର 'ମିତ ପୁଓ' ପ୍ରକାଶ ଦେବତାଙ୍କ ଆର୍ଥିକ ସହଯୋଗ ଓ ସୋହେଲା କଲେଜର ଅଧ୍ୟାପକ ଟେକଚାନ୍ଦ ଦୁଆନଙ୍କ ଉଦ୍ୟମରେ; ନୀଳମାଧବ ପାଣିଗ୍ରାହୀଙ୍କ ଉଦ୍ୟମ ଓ ସାହଚର୍ଯ୍ୟରେ 'କଥାନି ସତସସନି' (୧୯୯୪); ଦ୍ୱିତୀୟ ଗଳ୍ପ ସଂକଳନ 'କଥାନି ଲେଖେଁ ଲାଗସିଁ' (୨୦୦୨) ରାଜନେତା ଓ ବାପାଙ୍କର ବନ୍ଧୁ ଆନନ୍ଦ ଆଚାର୍ଯ୍ୟଙ୍କ ଆର୍ଥିକ ସହଯୋଗରେ ପ୍ରକାଶିତ; ପ୍ରକାଶକ ସ୍ଥାନରେ ନାଁ ରହିଛି ମୋର ସାନଭାଇ ଦ୍ୟୁତୀଶ ଆଚାର୍ଯ୍ୟର।

୧୯୮୫-୮୬ରେ କିଶନ ପଟ୍ଟନାୟକଙ୍କ ସଂପାଦନାରେ ପ୍ରକାଶିତ 'ଭୂମିପୁତ୍ର' ପତ୍ରିକାରେ 'ବଏଲାରେ' ଶୀର୍ଷକରେ ହେମଚନ୍ଦ୍ର ୧୨ଟି ଲଳିତ ନିବନ୍ଧ ଲେଖିଛନ୍ତି। ସବୁଗୁଡ଼ିକ କୃଷି କୃଷକ ଓ ଗ୍ରାମ୍ୟ ସମସ୍ୟାକୁ ନେଇ ଲିଖିତ। ହଳିଆ ଚାଷୀ କ୍ଷେତ୍ରରେ ହଳ କରୁଥିବା ସମୟରେ 'ବଳଦରେ!' ବା 'ବଏଲାରେ!' ବୋଲି ହଳକୁ ସଂବୋଧନ କରି ଅନେକ କଥା କହେ। ତା' ଦୁଃଖ, କଷ୍ଟ, କଙ୍କାଳ ଓ ଦୁନିଆଁର ରୀତିନୀତି ଆଦି କଥାମାନ ବଖାଣେ। ଏହି ପରଂପରାକୁ ବଜାୟ ରଖି କବି ହଳିଆ ଚାଷୀର ମୁହଁରେ ବିଭିନ୍ନ କୃଷି ଜନିତ ସମସ୍ୟାକୁ ଏଥିରେ ଉତ୍‌ଥାପନ କରିଛନ୍ତି। କେହି ନ ଶୁଣିଲେ ବି ମୂକ ବଳଦ ଯୋଡ଼ିଏ ଚାଷୀର କଥା ଶୁଣିବେ ବୋଲି କବି ଆଶା ପ୍ରକାଶ କରଛନ୍ତି। ଜାଣି, ନିରାଶବାଦର ସଂସାର ଭିତରେ ସେ ଆଶାବାଦର ଝଲକ ଖୋଜିଛନ୍ତି ଓ ତା' ସାଙ୍ଗରେ ନିଜକୁ ପରାସ୍ତ ଘୋଷଣା ନ କରିବାକୁ ହଳିଆ ଚାଷୀକୁ ଆଶାବାଣୀ ଶୁଣାଇଛନ୍ତି।

୨୦୦୨ରୁ ୨୦୦୪ ମଧ୍ୟରେ ହେମଚନ୍ଦ୍ର ମଝିରେ ମଝିରେ 'ସମ୍ବାଦ' ପୃଷ୍ଠାରେ ନିଜର ଅନୁଭୂତି ପ୍ରସୂତ ଲଘୁ ଲେଖୁଥିଲେ। ଏହି ଲେଖାଗୁଡ଼ିକ 'ମୋର ପ୍ରଥମ ଶ୍ରେଣୀ ଆଷ୍ଟା', 'ସୁନ୍ଦର ସାଏ ଓ ସାଇ ଦୁଏଲ', 'ଡ଼ାକୁଆ ବୁଢ଼ାର ଇସ୍କୁଲ', 'ପଇସା ନେଲେ ବିଦ୍ୟା କାଟୁ କରେନାହିଁ' ଇତ୍ୟାଦି ଶୀର୍ଷକରେ ପ୍ରକାଶିତ। 'ସୁନ୍ଦର ସାଏ ଓ ସାଇ-ଦୁଏଲ' ଲେଖାରେ ଏକ ନାମକୁ ଆପତ୍ତି କରି ସୋହେଲା କୋର୍ଟରେ ଜଣେ ମାନହାନି ମୋକଦମା କରିଥିଲେ, ଯାହା ବାପାଙ୍କ ମୃତ୍ୟୁପରେ (୨୦୦୯) ସମାଧିତ ହେଲା। ୧୯୯୬ରେ ସମ୍ବଲପୁର ଆକାଶବାଣୀର ଆମନ୍ତ୍ରଣରେ ବାପା 'ଟିକେ ଶୁନୁନ୍ ତ' ପ୍ରୋଗ୍ରାମ ପାଇଁ ତିନୋଟି ସମ୍ବଲପୁରୀ ଲେଖା ଲେଖି ଶୁଣାଇଥିଲେ। ଏଥିରେ ସାମୂହିକ ସଂପତ୍ତିକୁ ନିଜର ମନେ କରି ଯତ୍ନ ନେବାକୁ ତଥା ନିଜ ଘରେ ସୁଦ୍ଧା ବିଜୁଳି, ପାଣିର ଅପଚୟ ନ କରିବାକୁ ପରାମର୍ଶ ଦିଆଯାଇଛି। କିନ୍ତୁ ତାଠାରୁ ବଡ଼ କଥା, ଠେଠ ସମ୍ବଲପୁରୀ ଶବ୍ଦ ଗୁଡ଼ିକର ପ୍ରୟୋଗ ଲେଖାକୁ ମାର୍ମିକ କରିଛି। ୧୯୭୩ ଆଡ଼କୁ ତାଙ୍କର ଆଗ୍ରହ ହେଲା ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ହିନ୍ଦିରେ ଲିଖିତ 'ଭାଗବତୀ କଥା'ର ଓଡ଼ିଆ ପଦ୍ୟାନୁବାଦ କରିବେ। ଦୁଇଖଣ୍ଡ ଅନୁବାଦ କଲେ ମଧ୍ୟ। ବିଜେପୁରର ପ୍ରାକ୍ତନ ଜମିଦାର ତୁଳସୀ ପ୍ରସାଦ ଗଡ଼ତିଆ ଏହାର ପ୍ରକାଶନ ଭାର ନେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ପରେ ତୁଳସୀ ବାବୁଙ୍କ ପ୍ରକାଶନ-ପ୍ରତିଶ୍ରୁତି ଫଳବତୀ ନ ହେବାରୁ ଦୁଇ ଖଣ୍ଡ ଅନୁବାଦ ପରେ ତାହା ବନ୍ଦ ରହିଲା।

ହେମଚନ୍ଦ୍ରଙ୍କ ରଚନା ସଂଭାରକୁ ଦେଖିଲେ ଅନୁମାନ କରି ହୁଏ ଯେ ଲେଖିବା ପାଇଁ ଉତ୍ସାହ ମିଳିଲେ ସେ ଖୁବ ଲେଖିବାର ସାମର୍ଥ୍ୟ ରଖୁଥିଲେ। 'ରାମରାହା'

ଲେଖାର ପ୍ରକାଶନର ଯଥେଷ୍ଟ ପୂର୍ବରୁ ସେ ଗାଁରେ ସନ୍ଧ୍ୟାରେ 'ଭାଗବତ ଗୁଡ଼ି'ରେ ତାଙ୍କ 'ରାମରାହା' ଲେଖାକୁ ପାଠ କରନ୍ତି ଏବଂ ଶ୍ରୋତା ବର୍ଗର ପ୍ରତିକ୍ରିୟାକୁ ଭିତ୍ତି କରି ନୂଆଁ ପାଉଚ (ସର୍ଗ) ଲେଖନ୍ତି। ସେହି ଗ୍ରାମୀଣ ଶ୍ରୋତାମଣ୍ଡଳୀ ବିନା ଯେ ସେ ଆଗକୁ ଲେଖିପାରିନ ଥାନ୍ତେ, କାବ୍ୟଗୁଡ଼ିକୁ ସଂପୂର୍ଣ୍ଣ କରି ପାରିନଥାନ୍ତେ, ଏହା ଅନସ୍ୱୀକାର୍ଯ୍ୟ। ଦ୍ୱିତୀୟତଃ, ସେହି ଅଶିକ୍ଷିତ, ନିରକ୍ଷର ଶ୍ରୋତାମଣ୍ଡଳୀର ଆଦର ମିଳୁଥିଲା ବୋଲି ପ୍ରକାଶନ ଜଗତର ଉପେକ୍ଷାକୁ ସେ ଦମ୍ଭର ସହିତ ହଜମ କରି ପାରିଥିଲେ। ପୌରାଣିକ ପ୍ରସଙ୍ଗକୁ କୃତିର ବିଷୟ କରିବା ପଛରେ ମଧ୍ୟ ଗାଁ ସମାଜ ଏକ କାରଣ। ଅନ୍ୟଥା ସାମାଜିକ ବିଷୟକୁ ହୁଏତ ଜଣେ ସମାଜବାଦୀ ଚିନ୍ତକ ଭାବରେ ଗ୍ରହଣ କରିଥାନ୍ତେ। ସେହି ପୌରାଣିକତା ଭିତରେ କବି ସାମାଜ୍ୟ ଓ ସଂସ୍କାର କଥା କହିବାକୁ ପ୍ରୟାସ କରିଛନ୍ତି। 'ସତର ସତି ବୃନ୍ଦାବତୀ' ରଚନା ପରେ ସମାଜବାଦୀ ନେତା ବନ୍ଧୁ କିଶନ ପଟ୍ଟନାୟକଙ୍କ ପ୍ରେରଣାରେ 'ନୂନୀ' ନାମରେ ଏକ ସାମାଜିକ କାବ୍ୟ ଲେଖିଥିଲେ, ଯାହାକୁ ତାଙ୍କ ଗ୍ରାମ୍ୟ ଜୀବନ ସହିତ ଏକାତ୍ମ ହେବାର ପ୍ରୟାସ ରୂପରେ ଦେଖିହେବ। ମୋର ଦୃଢ଼ ମତ, ହେମଚନ୍ଦ୍ର କେବଳ ଯଦି ପ୍ରକାଶନକୁ ଆଶ୍ରୟ କରିଥାନ୍ତେ ଏବଂ ଶ୍ରୋତାମଣ୍ଡଳୀର ଆଦରକୁ ଅପେକ୍ଷା ରଖିନଥାନ୍ତେ, ଏହି ସବୁ କାଳଜୟୀ କୃତି ଗୁଡ଼ିକୁ ହୁଏତ ସଂପୂର୍ଣ୍ଣ କରିପାରିନଥାନ୍ତେ। ଯେହେତୁ ସେ ଗାଁରେ ରହୁଥିଲେ, ଯାହା ଆଜିକାଲିର ପ୍ରାୟ ଲେଖକ ଲେଖିକାଙ୍କ ପାଇଁ ସହଜ-ସମ୍ଭବ ନୁହେଁ, ଗାଁର ସମାଜ ଥିଲା ତାଙ୍କ ଜଗତ। ସେହି ଜଗତ ତାଙ୍କୁ ନିରନ୍ତର ଜଗତ-ଦୃଷ୍ଟି ଦେଉଥିଲା। ଗାଁ ତାଙ୍କୁ ଲେଖିବା ପାଇଁ ପ୍ରେରଣା ସହିତ ପ୍ରସଙ୍ଗ ଦେଉଥିଲା। ତାକୁ ଲକ୍ଷ୍ୟରେ ରଖି ସେ ଲେଖିଥିଲେ ବୋଲି ଅନେକ ଲେଖା ତାଙ୍କର ଗାଁ ସହିତ ଅପରିଚିତ ଓ ଅଧାପରିଚିତ ବର୍ଗକୁ ପୁରୁଣାକାଳିଆ ଲାଗିପାରେ। ସେ ଯାହାହେଉ, ସେହି ଗ୍ରାମ୍ୟ-ଜଗତର ଆଦର ମିଳିନଥିଲେ ଯେ ହେମଚନ୍ଦ୍ରଙ୍କ ଦୃଷ୍ଟି ଓ ସୃଷ୍ଟି ବ୍ୟାହତ ହୋଇଥାନ୍ତେ, ଏହା ନିଶ୍ଚିତ କଥା।

## -ଖ-

କବି ହେମଚଂଦ୍ର ଆଚାର୍ଯ୍ୟଙ୍କ ଜନ୍ମ ଗାଁରେ; ମୃତ୍ୟୁ ବି ଗାଁରେ; କର୍ମସ୍ଥଳୀ ଗାଁ; ତାଂକ ରଚନାର ପାତ୍ର-ପାତ୍ରୀ ବି ଗ୍ରାମିଣ। ଛଅ ନଂବର ଜାତୀୟ ରାଜପଥରେ ବରଗଡ଼ରୁ ରାୟପୁର ଯିବା ରାସ୍ତାରେ କୋଡ଼ିଏ କି.ମି. ଉତ୍ତାରୁ ଗର୍ଗଣା ଗାଁ। ସେହି ହେମଚଂଦ୍ରଂକ ଗାଁ, ଜନ୍ମଭୂମି। ବାପା ଚୋଲାମଣି ଆଚାର୍ଯ୍ୟ ଅଂଚଳର ପ୍ରସିଦ୍ଧ ପଣ୍ଡିତ;

ବୃତ୍ତି ପ୍ରାଥମିକ ଶିକ୍ଷକ; ଯଜମାନି। ମା' କମଳା ଦେବୀ ବରଗଡ଼ ଜିଲ୍ଲା ଚାଇଁଶ୍ରିଗିଡ଼ା ତାଂଙ୍କ ବାପ ଘର। ସାତଟି ଭାଇ ଭଉଣୀଂକ ମଧ୍ୟରେ ହେମଚଂନ୍ଦ୍ର ପଂଚମ; ତାଂକ ଉପରକୁ ଦୁଇ ଭାଇ ଉମାଚରଣ ଓ ଚିତ୍ତରଂଜନ ତଥା ଦୁଇ ନାନୀ ଶକ୍ରାବତୀ ଓ ସାଏବାନି; ତଳକୁ ଦୁଇ ଭଉଣୀ ସୀତା ଓ ଶାରଦା। ହେମଚଂନ୍ଦ୍ରଂକ ମୃତ୍ୟୁ ବେଳକୁ କେବଳ ସବା ସାନ ଭଉଣୀ ଶାରଦା ଜୀବିତ। ବାପା ଢ଼ୋଳାମଣିଂକ ମୃତ୍ୟୁ ହେଲା ୧୯୬୧ରେ; ମା' କମଳା ଦେବୀ ଗଲେ ୧୯୬୮ରେ। ଢ଼ୋଳାମଣିଂକ ସନ୍ତାନମାନେ ଅବସର ପାଇ ସୁଦ୍ଧା ଗାଁ ଛାଡ଼ି ନାହାନ୍ତି। ଦୀର୍ଘ ୨୧ ବର୍ଷର ଚାକିରିରୁ ଇସ୍ତଫା ଦେଇ ହେମଚଂନ୍ଦ୍ର ୧୯୬୭ ମସିହାରୁ ଗ୍ରାମବାସୀ । ତାଂଙ୍କର ବଡ଼ ଦୁଇ ଭାଇ ଚାକିରିରୁ ଅବସର ନେଲା ପରେ ଆସି ଗାଁରେ ରହିଲେ। ଅଜା, ପଣ-ଅଜା ପିଢ଼ିରୁ ଉତ୍ତରାଧିକାରରେ ମିଳିଥିବା ଗାଁ-ଘର ହେମଚଂନ୍ଦ୍ରଂକ ପିଢ଼ିଯାଏଁ ଲୋକଶୂନ୍ୟ ହୋଇ ନାହିଁ। ଆଚାର୍ଯ୍ୟ ପରିବାର ବାସ୍ତୁହରା ହୋଇ ନାହାନ୍ତି। ଏହା ତାଂକ ପରିବାରର ଶକ୍ତି ଓ ବିଶେଷତ୍ୱ ।

ଭୂମିଷ୍ଟ ହେବା ପରେ ଶିଶୁ ହେମଚଂନ୍ଦ୍ର କୁଆଡ଼େ ଚାରିଆଡ଼କୁ ଅନାଇଁଥିଲେ। ସେହି ଆଧାରରେ ନାଁ ପଡ଼ିଲା- 'ଚତୁର୍ଭୁଜ'। ପରେ ତାହା ଅପଭ୍ରଂଶ ହୋଇ ହେଲା 'ଚତୁର'। ଗାଁ ନାଁ 'ଚତୁର'; ଶୁଦ୍ଧ ନାଁ 'ହେମଚଂନ୍ଦ୍ର'। ସ୍କୁଲ୍ ସରକାରୀ ନଥିପତ୍ର ଓ ସାହିତ୍ୟ ମହଲରେ 'ଶୁଦ୍ଧ' ନାଁର ହିଁ ପ୍ରୟୋଗ ହୁଏ। ଗାଁ ନାଁ ସହରିଆଂକ କାନକୁ ଅବାଗିଆ ଲାଗେ ! ସିଲା ଦିନେ ମତେ ବି କିଏ 'ଚତୁରର ପୁଅ' ବୋଲି ପରିଚୟ କରାଇଲେ, ଇଛା ହୁଏ ସୁଧାରିବାକୁ 'ହେମଚଂନ୍ଦ୍ର ଆଚାର୍ଯ୍ୟଂକ ପୁଅ।' ହେଲେ ଆଜି ପଛକୁ ଚାହିଁଲେ ଲାଗୁଛି, ପ୍ରକାଶନ, ପ୍ରସିଦ୍ଧି, ସମ୍ମାନ ଓ ମାନପତ୍ର ଆଦି ପାଇବା ଆଗରୁ ହେମଚଂନ୍ଦ୍ରଂକ ସୃଷ୍ଟିଶୀଳତାକୁ ସଂଗୋଳି ରଖିଥିଲା ସେହି ଗାଁ ନାଁ- ଚତୁର। ସେ ଗାଁଆଁର ନାଁ, ମା' ଦିଆ ନାଁ। ଅତି ଆପଣାର ତାଂକର। ଆତ୍ମୀୟତା ଓ ଅକୃତ୍ରିମତାର ସେ ନାଁ ! ଯେମିତି ଏକ କୋଠଘର ଡାହାନାଁ ଧରି ଡ଼ାକୁଥିବା ଗାଁ ଲୋକ ଓ ନିକଟ ପରିଚିତଂକ ପାଇଁ ତଥା ଡ଼ାକ ଶୁଣୁଥିବା ସୃଷ୍ଟିଶୀଳ କବିଂକ ପାଇଁ !

'ହେମଚଂନ୍ଦ୍ର ଆଚାର୍ଯ୍ୟ, ଗର୍ଭଣା' । ଦୁଇଟି ଭିନ୍ନ ଶବ୍ଦ ହେଲେ ବି ବାପାଂକ ନଜରରେ ସେ ଗୋଟାଏ ନାଁ। ସେଇଥିପାଇଁ ହେମଚଂନ୍ଦ୍ର ଲେଖାଟିଏ ଲେଖି ସାରିଲେ ଲେଖକ ସ୍ଥାନରେ ସେତିକି ମାତ୍ର ଲେଖନ୍ତି। ବେଶୀ ହେଲେ ଯୋଡ଼ିବେ-୭୬୮୦୩୩, ସୋହେଲା ଉପ-ଡ଼ାକଘରର ପିନ୍। ମନେହୁଏ, ଯେମିତି ଗାଁ ଓ ନିଜ ନାଁ ମଧ୍ୟରେ ତାଂକର ସିଧା ଓ ସରଳ ସଂବଂଧ; ମଝିରେ କେହି ରହନ୍ତୁ ବୋଲି ସେ ଚାହାନ୍ତି ନାହିଁ।

ଅନେକ ସଭା ସମିତିରେ ଭାବପ୍ରବଣ ହୋଇ କହିଛନ୍ତି, 'ମୋର ପୁନର୍ଜନ୍ମରେ ବିଶ୍ୱାସ ଅଛି। ଭଗବାନଂକଠାରେ ମୋର ପ୍ରାର୍ଥନା। ପର ଜନ୍ମରେ ମତେ ଯେଉଁ ରୂପରେ ହେଉ ପଛେ ଗର୍ଭଣାରେ ଜନ୍ମ ଦିଅନ୍ତୁ।' ଗାଁ ପ୍ରତି ଆକୃଷ୍ଟ ହୋଇ ସେ ୧୯୬୬ରେ ଚାକିରି ଛାଡ଼ିଛନ୍ତି। ଚାକିରି ସମୟରେ ମଧ୍ୟ ଗାଁ ସହ ବେଶ୍ ସଂପର୍କିତ ସେ। ୧୯୪୮ରୁ ତାଂକରି ତଥା ତାଂକ ବଂଧୁମାନଂକ ଉଦ୍ୟମରେ ଗାଁରେ ପ୍ରତିବର୍ଷ ଦଶହରା ପୂଜା ପାଳିତ ହୋଇଛି; ଦଶହରାରେ ଗାଁ କଳାକାରଂକୁ ନେଇ ନାଟକ କରେଇଛନ୍ତି, ନାଟକ ଲେଖିଛନ୍ତି- ମହାରଥୀ କର୍ଣ୍ଣ (୧୯୫୮) ତଥା ଅନ୍ୟ ନାଟକ ଗୁଡ଼ିକ ସେହି ପ୍ରକ୍ରିୟାରେ ସୃଷ୍ଟ। ଗାଁ ଲୋକଂକ ଆତ୍ମ-ମନୋରଂଜନ ପାଇଁ ସଂକୀର୍ତ୍ତନ ବି ହେମଚଂଦ୍ରଂକ ଉଦ୍ୟମରେ ନୂଆଁ ରୂପ ପାଇଛି। ବଂଗଳା ଗୀତ ସ୍ଥାନରେ ଓଡ଼ିଆ ଭାଷାରେ ଭଜନ ଆଦି ସେ କୀର୍ତ୍ତନ ପାଇଁ ଲେଖିଛନ୍ତି। 'ଶରତ୍ ରାସ', 'ରାଧା ସନ୍ୟାସ' ଆଦି ରଚନାକୁ 'କୀର୍ତ୍ତନ ଗୀତ' କହି ଆଜି କେହି ଉପେକ୍ଷା କରି ନ ପାରେ। ପ୍ରତ୍ୟେକଟିରେ ଅପୂର୍ବ ପ୍ରକୃତି ବର୍ଣ୍ଣନା ରହିଛି, ଆତ୍ମା ଓ ପରମାତ୍ମା ମଧ୍ୟରେ ମିଳନର କଥା ରହିଛି, ସାଂଗରେ ପଢ଼ା-ଅପଢ଼ା, 'ତଳ' 'ଜାତି'- 'ଉପର'ଜାତି, ଧନି-ଗରିବ ଆଦି ମଣିଷକୃତ ଭେଦ ଭାବକୁ ଅସ୍ୱୀକାର କରି ସମସ୍ତେ ବାଉଁଶ ବୁଦା ପରି ଏକାକାର ହୋଇ ଯିବାକୁ ଶାନ୍ତ, ସୁଧୀର ଦିବ୍ୟବାଣୀ ରହିଛି। ଜାତି, କୃତି, ତଳ, ଉପର ନିର୍ବିଶେଷରେ ଗର୍ଭଣାରେ କୀର୍ତ୍ତନ ଯେତେବେଳେ ଲୋକଂକୁ ସାନ ପିଲାଂକ ପରି ନାଚିବା, ଗାଇବା, ହସିବା, କାଂଦିବା ପାଇଁ ଉତପ୍ରେରିତ କରେ, 'ଆତ୍ମା', 'ପରମାତ୍ମା' ଭଳି ଦାର୍ଶନିକ ତତ୍ତ୍ୱସବୁ ଅବୁଝା ହୋଇ ରହି ପାରନ୍ତିନି। ସରଳ, ତରଳ ହୋଇ ବୋହିଯାଆନ୍ତି। ସେହି ଦୃଷ୍ଟିରୁ ହେମଚଂଦ୍ରଂକ କୀର୍ତ୍ତନ ଗୀତ 'ମହାନ' ଲୋକ ସାହିତ୍ୟ ହେବାର ସାମର୍ଥ୍ୟ ରଖେ ।

ଚାକିରିରୁ ଇସ୍ତଫା ଦେଲା ପରେ- ବାପା ୧୯୬୭ ନିର୍ବାଚନରେ ସଂଯୁକ୍ତ ସୋସିଆଲିଷ୍ଟ ପାର୍ଟି ପକ୍ଷରୁ ମେଇଛାମୁଣ୍ଡା ବିଧାନସଭା ପାଇଁ ପ୍ରାର୍ଥୀ ହେଲେ। ପରେ ପରେ ସୋହେଲା ପଂଚାୟତ ସମିତି ଚେଆରମେନ ପଦ ପାଇଁ ମଧ୍ୟ ପ୍ରାର୍ଥୀ ହେଲେ। ମାତ୍ର ବିଜୟ ପ୍ରାପ୍ତ ହୋଇ ନାହାନ୍ତି। ଚାକିରି ଛାଡ଼ିବା ପଛରେ ତାତ୍କାଳିକ କାରଣ ଥିଲା ସମାଜବାଦୀ ଦଳ ପକ୍ଷରୁ ନିର୍ବାଚନ ଲଢ଼ିବା। ମାତ୍ର ଏହା ଏକମାତ୍ର କାରଣ ନୁହେଁ। ଗାଁରେ ଚାଷବାସର ବିକଳ୍ପ ରହିଥିଲା, ଯାହା ପିତୃବ୍ୟ ପରମେଶ୍ୱର ଆଚାର୍ଯ୍ୟ ବୃଦ୍ଧାବସ୍ଥା ଯୋଗୁଁ ସଂଭାଳି ପାରୁ ନ ଥିଲେ। ବାପା ସ୍ପଷ୍ଟବାଦୀ ଥିଲେ ବୋଲି ଚାକିରିରେ ବି ସେ ଅସୁବିଧାର ସମ୍ମୁଖୀନ ହେଉଥିଲେ। ଏସବୁ ବ୍ୟତୀତ ଥିଲା ଗାଁର ଆକର୍ଷଣ। ଅନ୍ୟଥା

ଏକାଧିକ ଘରୋଇ ଓ ଅର୍ଦ୍ଧସରକାରୀ ସଂସ୍ଥା ପକ୍ଷରୁ ପରେ ଯେତେବେଳେ ନୂଆଁ କରି ଆଉଥରେ ଚାକିରି କରିବା ପାଇଁ ଡାକରା ଆସୁଥିଲା ପ୍ରତିଥର ସେ ମନା କରୁ ନ ଥାନ୍ତେ ! ଡ଼ାକରା ଆସିବ, ଦିନେ ଦୁଇ ଦିନ ଦୋଦୁଲ୍ୟମାନ ଅବସ୍ଥାରେ ରହିବେ; ଆର୍ଥିକ ଅବସ୍ଥା ସୁଧୁରିବାର ଆଶାରେ ଆମେ ଛୁଆମାନେ ଭଗବାନଂକ ପାଖରେ ଗୁହାରି ହେଉଥିବୁ, 'ବାପା ପୁଣି ଚାକିରି କରିବାକୁ ରାଜି ହୁଅନ୍ତେ କି ? ଶେଷରେ ଗାଁର ଜଣେ କେହି ସାଂଗର ପରାମର୍ଶରେ ନିଷ୍ପତ୍ତି ନେବେ - ନା; ଏତେ ବର୍ଷ ଚାକିରି ଛାଡ଼ିଲା ପରେ, ଆଉ ପୁଣି ଚାକିରି କରିବି ? ସେ ଯେଉଁ ନିଷ୍ପତ୍ତି ନିଅନ୍ତି, ଆଉ ପଛକୁ ଦେଖିବାର ନାହିଁ। ପରେ ଅନୁତାପ କରିବାର ନାହିଁ। ଏହି କାରଣରୁ ୨୧ ବର୍ଷ ଚାକିରୀର ପେନ୍‌ସନ୍ ପାଇବା ପାଇଁ ଆବେଦନ କରି ନାହାନ୍ତି; 'ଚାକିରି କରିଥିଲେ ମତେ ଏତେ ସବୁ ପ୍ରମୋଶନ ମିଳିଥାନ୍ତା' ବୋଲି ପସ୍ତେଇ ହୋଇ ନାହାନ୍ତି। ସାଂଗରେ, ଏକଥା ବି ସତ ଯେ ଆମ ମାନଂକୁ ନିଶ୍ଚୟ ଚାକିରି କର ବୋଲି ଉପଦେଶ ଦେଇଛନ୍ତି। "ଆର୍ଥିକ ଦୁର୍ଗତି ମଣିଷକୁ ଫଂଗୁ କରିଦିଏ ! ନୂଆଁ କିଛି ଚିନ୍ତା କରିବା କଠିନ ହୋଇ ପଡ଼େ ! ଚାକିରିରେ ରହି ସୁଦ୍ଧା ତୁ ସମାଜ କାମ କରି ପାରିବୁ। ଅନ୍ୟଥା ମନ ସାନ ହୋଇଯିବ। କଳେ ବଳେ ଅର୍ଥ ରୋଜଗାର କଥା ମନକୁ ଆସିବ।" ମୋର ଉପାଧ୍ୟାୟଙ୍କରୁ ଶିକ୍ଷା ବେଳେ ଏହାହିଁ ଥିଲା ତାଂକର ମୋତେ ଉପଦେଶ। ବୋଧହୁଏ ସେ ଜାଣିଥିଲେ ଯେ ତାଂକ ଭଳି ଆର୍ଥିକ ଅନଟନକୁ ସମ୍ମୁଖୀନ ହେବାର ଧୈର୍ଯ୍ୟ ମୋ ପାଖରେ ନାହିଁ। ଚିର ମରୁଡ଼ି ପ୍ରପୀଡ଼ିତ ପଦମପୁର ସବ୍‌ଡିଭିଜନ (ବର୍ତ୍ତମାନ ପଦମପୁର ସବ୍‌ଡିଭିଜନର ଅଂଶ)ର ମେଘକୁ ଭରସା କରି ଚାଷ, ଛଅଟି ଛୁଆର ତାଂକ ବିରାଟ ପରିବାର ! ଅସୀମ ଧୈର୍ଯ୍ୟ ବିନା ଯେ ଗୃହକର୍ତ୍ତା ଭାବରେ ବାପା ହିଆ ହାରି ଦେଇଥାନ୍ତେ - ଏହା ନିଶ୍ଚିତ କଥା। ସେହି ହିଆ ନ ହାରିବା ପଛରେ ଗାଁକୁ ଭଲ ପାଇବା ଓ ଗାଁର ତାଂକୁ ଭଲ ପାଇବା ବି ପୂର୍ଣ୍ଣତଃ ଦାୟୀ- ଏହା ଅନସ୍ୱୀକାର୍ଯ୍ୟ।

କବି ହେମଚଂଦ୍ରଂକ ଗାଁ ପ୍ରେମର ଏକ ଅପୂର୍ବ ନିଦର୍ଶନ ହେବ ତାଂକ ସଂବଲପୁରୀ ଗୀତ "ମତେ ବନେ ଲାଗସି ମୋର ଗାଁରେ।" ଏଥିରେ ସେ ଗାଇଛନ୍ତି :

ମତେ ବନେ ଲାଗସି ମୋର ଗାଁରେ
ଛପା ଅକ୍ଷରେଁ ନାଇଁ ଥାଉ ପଛେ
କାହିଁ ହେଲେଁ ତା'ର ନାଁରେ।

'ବନେ' ଲାଗିବାର କାରଣ ଉଲ୍ଲେଖ କରି କବି କହନ୍ତି :

ଇନର୍ ମୁନୁଷ ପିଲେ ଯାହା ଅଛନ ଅଜା କକା ଭାଏ
ଆପଦ ଆଏଲେଁ ଦଉଡ଼ି ଆଏସନ ଡ଼କା ନାଇଁ ଲାଗେ ଯାଏ
ମାଏଝି ଟୁକେଲ ଯାହା ଅଛନ ସଭେ ବହେନ ମାଁରେ ।।

ଗାଁର ପରସ୍ପର ପରିପୂରକତା ଭଳି ଗାଁର ଅକୃତ୍ରିମ ସୌନ୍ଦର୍ଯ୍ୟ ମଧ୍ୟ କବିଙ୍କୁ ମୁଗ୍ଧ କରିଛି । ତାଙ୍କ ଭାଷାରେ :

ଇନ ଲାଲ ଚହଚହ ବେଲ ଉଦସି ବୁଡ଼ସି ହସି କରି
ଡ଼ୁଂଗର ମେଚାଲ ମହଲ ନାଇଁନ ଦେବା ପୂଚାକେ ଘେରି
ବିନ ଧୂକନାର ଧୂକା ଆଏସି ଦିନ ରାଏତ ବଁ ବାଁରେ ।।
ଇନର ଗାଁ ଭୂଇଁ ଡୁଡ଼ା ନଲିଆ ଝାର ପତରା ବନେ
ଘୁଲି ଢଁକରା ଗୁଏ ଗୁନଡ଼ା ଦେସନ ଚାହେଁଲେ ଝନଏ,
କବାର କଲେଁ ଯାହା କେ ଯେତେ ଧାନ ଗୁନଜି ସୁଆଁରେ ।।

*(ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ସମ୍ବଲପୁରୀ ଗୀତ, ୨୦୦୪)*

ହେମଚନ୍ଦ୍ରଙ୍କ ଗ୍ରାମ୍ୟ ବର୍ଣ୍ଣନା ଆଉ କେତେ ଯେ ଗୀତ ଓ ଗଳ୍ପରେ ରହିଛି- ତା'ର ହିସାବ ନାହିଁ । 'ସୁରୁ ସୁରୁ କୁରିଆ ଉପରେଁ ଦୁରା ଦୁରା ପୁଆଲ' ଗୀତରେ 'ସୁରୁ ସୁରୁ କୁରିଆ' ପରିବେଷ୍ଟିତ ଗାଁର୍ 'ଗଂଧାଘର' ଓ 'ଗୁହାଲ' ମଧ୍ୟରେ ପାର୍ଥକ୍ୟ ନାହିଁ ବୋଲି ସେ କରୁଣ ସ୍ୱରରେ କହିଛନ୍ତି; ସାଂଗରେ ସେ ଆନନ୍ଦିତ ଯେ, 'କେନ ଛାନି ବସି ପରୁଆ ଦୁଇଟା ହେସନ ଲାଡ଼ ଖିଆଲ ।' ତାଂକ 'ଗାଁ'ରେ କାରୁଣ୍ୟ ଅଛି, ମାତ୍ର ସେହି କାରୁଣ୍ୟ ମଝିରେ ବି ଛୋଟ ଛୋଟ ହସ ଖୁସି ରହିଛି, ଯାହା ଉକ୍ତ କାରୁଣ୍ୟକୁ ଗିଳି ଯିବା ପାଇଁ ଗାଁ ମଣିଷଟିକୁ ନିରନ୍ତର ଜୀବନୀ ଶକ୍ତି ଯୋଗାଉଥାଏ । ଏଇଥିପାଇଁ କବିଂକର ଆଶାବାଦିତା କେବେ ଊଣା ହୁଏ ନାହିଁ । ଗାଁଟା ଯାକ କୁରିଆରୁ 'ସାଂଖଲି' ନେଇ ଉଚ୍ଚରୁ ଉଚ୍ଚତର ହେଉଥିବା ଗାଁ ମୁଣ୍ଡର ସେହି ଏକମାତ୍ର 'ପକା ମହଲା' ଓ ଗାଁର ଅସଂଖ୍ୟ କୁରିଆ ମଧ୍ୟରେ କେତେ ଦିନ ଧରି 'ଜବାବ-ସୁଆଲ' ବା ସଂଘର୍ଷ ଚାଲିବ ବୋଲି ସେ ଆକୁଳ ହୋଇ ପ୍ରଶ୍ନ କରନ୍ତି ।

ହେମଚନ୍ଦ୍ର ଗର୍ଭଣାରେ ଜନ୍ମ ହୋଇଥିଲେ ସତ, ମାତ୍ର ତାଂକ ଗାଁ ବା ଗାଁ ପ୍ରେମ ଗୋଟାଏ ଗାଁ ଯାକେ ସୀମାବଦ୍ଧ ନ ଥିଲା । ଅଜା (କେକେ) ବିଦ୍ୟାଧର ଆଚାର୍ଯ୍ୟଙ୍କର ସାତୋଟି ପୁଅ । ଜ୍ୟେଷ୍ଠ ପୁଅ ଡ଼ୋଳାମଣିଙ୍କ ସହାୟତାରେ ସେ ପୁଅମାନଂକ ପାଇଁ ଚାଷଯୋଗ୍ୟ ଜମି ଗର୍ଭଣା ବାହାରେ ମରେକେଲ, ବୁରୋମାଲ ତଥା ବରମୁଣ୍ଡାରେ

(ବିଜେପୁର ଥାନା ସ୍ଥିତ) ମଧ୍ୟ କିଣିଥିଲେ। ତନ୍ମଧ୍ୟରୁ ମରେକେଲରେ ଶେଷ ସମୟରେ ବିଦ୍ୟାଧର, ତାଂକ ପତ୍ନୀ ଓ ବାଲ୍ୟ ବିଧବା ଝିଅ ରହୁଥିଲେ। ପୁଅମାନେ ଭାଗ ହେଲା ଉତ୍ତାରୁ ସେଠାରେ ପଂଚମ ପୁଅ (ହେମଚଂଦ୍ରଂକ କାକା) ନଂଦିକିଶୋର ଓ ସାନ ପୁଅ ଶେଷଦେବଙ୍କ ପରିବାର ରହନ୍ତି। ବୁରୋମାଲରେ ହେମଚଂଦ୍ରଂକ ଆଉ ଦୁଇ କାକା ମନୋହର ଓ ନୃସିଂହ ଚରଣଙ୍କ ପରିବାର ରହନ୍ତି। ସାହିତ୍ୟ ଲେଖିବା ପାଇଁ ମନୋହର ତାଂକରି ଅନ୍ୟତମ ପ୍ରେରଣାଦାତା। ସେହି ଆଧାରରେ ବାଲ୍ୟ କାଳରେ ହେମଚଂଦ୍ର ମରେକେଲ ଓ ତା'ର ଅନତି ଦୂରରେ ଥିବା ବୁରୋମାଲରେ ମାସ ମାସ ଧରି ରହିଛନ୍ତି। ସେ ବି ତାଂକ ଗାଁ। ଗର୍ଷଣାରେ ସ୍କୁଲ୍ ନ ଥିଲା ବୋଲି ପ୍ରଥମ ଶ୍ରେଣୀରୁ କନଗାଁ ଓ ମଧ୍ୟ ଇଂରାଜୀ ସ୍ତରରେ ସୋହେଲାରେ ପଢ଼ିଛନ୍ତି। ବିଶେଷ କରି କନଗାଁ, ତାଂକ ପ୍ରିୟ ଗାଁ। ଅଧା ଆଚାର୍ଯ୍ୟ ପରିବାର ସେଠାରେ; କନଗାଁ ପ୍ରଧାନ ଘର ଢୋଳାମଣିଂକ ଆର୍ଥିକ ଅନଟନ ବେଳେ ଆଶ୍ରୟସ୍ଥଳ । ଜାତି ଭିନେ ହେଲେ ବି ଦୁଇ ପରିବାର ମଧ୍ୟରେ ପାରିବାରିକ ସଂପର୍କ। ଏତଦ୍‌ବ୍ୟତୀତ ହେମଚଂଦ୍ର ଚାକିରି ଆରଂଭ କରିଥିଲେ ଗ୍ରାମସେବକ ଭାବରେ; ପରେ ପଦୋନ୍ନତି ପାଇ ହେଲେ ସାମାଜିକ ଶିକ୍ଷା ଅଧିକାରୀ। ଗାଁ ବୁଲିବା ତାଂକ କାମର ଅପରିହାର୍ଯ୍ୟ ଅଂଗ। ସୁଂଦରଗଡ଼, ହେମଗିରି, ବିସ୍ରା, ପଦମପୁର, ନୂଆପଡ଼ା ବିନକା ତଥା ଭଲୁଣ୍ଡା, ଯେଉଁ ବ୍ଲକରେ ବି ଚାକିରି କରିଛନ୍ତି, ସବୁଠାରେ ମୁଖ୍ୟ କାମ ହୋଇଛି ଗାଁ ବୁଲା। ଏହି ଦୃଷ୍ଟିରୁ କୌଣସି ଏକ ନିର୍ଦ୍ଦିଷ୍ଟ ଗାଁ ନୁହେଁ, ବରଂ ସମଗ୍ର ଗାଁ ସମାଜ ସାଂଗେ ଘନିଷ୍ଠ ପରିଚୟ ଓ ତା' ପ୍ରତି ତାଂକର ଆକର୍ଷଣ ରହିଥିଲା। ଯନ୍ତ୍ରାରୁଢ଼ ସହରି ସମାଜ, ଆଧୁନିକତା ନାଁରେ ଅସମତା ଓ ବିଷମତାର ଅମାପ ଖାଇ ସୃଷ୍ଟି କରୁଥିବା ସହରର ବଜାର ସଂସ୍କୃତି ଏବଂ ଗାଁରେ ତା'ର ଅଂଧ ଅନୁକରଣ ! ଏସବୁ ବିରୁଦ୍ଧରେ କବିଂକର ଯେଉଁ ବିକର୍ଷଣ, ତା'ର ସକାରାତ୍ମକ ପ୍ରତିଫଳନ ଭାବରେ ତାଂକର ଗ୍ରାମ୍ୟ ପ୍ରେମକୁ ଦେଖାଯାଇ ପାରେ। ପରିଣତ ବୟସରେ ସୁଦ୍ଧା ଏ ପ୍ରେମ ତାଂକର ଊଣା ହୋଇ ନାହିଁ। ସେଥିପାଇଁ ୧୯୯୧ରେ ମୋ ସାଂଗରେ ଦିଲ୍ଲୀ ଗଲେ; ୧୯୯୭ରେ ଅରୁଣାଚଳର ରାଜଧାନୀ ଇଟାନଗରରେ ଦେଢ଼ମାସ ରହିଲେ; ପରେ ୨୦୦୧ରୁ ୨୦୦୭ ମଧ୍ୟରେ ଚାରିଥର ଭୁବନେଶ୍ୱର ଆସି ରହିଲେ। ହେଲେ, ସବୁଥର ସେ ଗାଁକୁ ଫେରିଯିବାକୁ ଛଟପଟ ହୁଅନ୍ତି। ବିରକ୍ତ ହେଲେ କରୁଣ ସ୍ୱରରେ କହନ୍ତି, "ମତେ ତୁ ଗାଁରେ ଛାଡ଼ିଦେ। ଆଉ ମୋର କିଛି ଦରକାର ନାହିଁ।" ତାଂକର ବଡ଼ ଡର- ଗାଁ ବାହାରେ ତାଂକର ମୃତ୍ୟୁ ନ

ହେଉ । ସେତେବେଳେ ଲାଗେ, ସହରି ସୁବିଧା ଦେବା ଉଦ୍ଦେଶ୍ୟରେ ତାଂକୁ ଗାଁରୁ ନେଇ ଆଣି ମୁଁ ଯେମିତି ତାଂକ ଉପରେ ଅତ୍ୟାଚାର କରିଛି ।

ହେମଚଂଦ୍ରଂକ ସ୍ୱପ୍ନର ଗାଁ ଏକ ଆଦର୍ଶ ଗାଁ; କୁସଂସ୍କାରର ସେଠି ସ୍ଥାନ ନାହିଁ; ସଭ୍ୟ ବୋଲାଇବା ଲାଗି ସେ (ଗାଁ) କଦାଚିତ ସହରର ଅଂଧାନୁକରଣ କରି ନ ପାରେ। ମିଥ୍ୟା ପାରଂପାରିକତା ଓ ଆଡ଼ମ୍ବରପୂର୍ଣ୍ଣ ଧର୍ମ... ନାଁରେ ସେଠି ସାଧାରଣ ମଣିଷର ଶୋଷଣ ହୋଇ ନ ପାରେ ! 'ମୋର କଥାଟା କଥାନି ଥାଏ' (କଥାନି ସତ୍‌ସଜାନି-୧୯୯୪)ରେ ଗାଁର ସାନ ଚାଷୀ ମଂଗଲୁ ଟମାଟୋ ବିକା ପଇସାକୁ ତେଲ ଲୁଣରେ ଖର୍ଚ୍ଚ କରିବାକୁ ଚାହେଁ, ପୂଜା ଚାଂଦା ଦେବାକୁ ଚାହେଁନା। ତା' ପାଇଁ ପ୍ରାଥମିକତା ଭୋଜନ; ପୂଜା ନୁହେଁ। 'ବିଶ୍ୱାସ' (୧୯୫୪-ଅପ୍ରକାଶିତ) ନାଟକରେ ଗାଁ ସ୍ୱାବଲଂବୀ, ଶୁଚିସଂପନ୍ନ, ସୁସଭ୍ୟ। ଗାଁର ଏହି ସଂସ୍କାର ପଛରେ ସହରର ଅଂଧାନୁକରଣ ନୁହେଁ, ବରଂ ରହିଛି ଅନ୍ତଃଶକ୍ତିର ଅନ୍ୱେଷଣ। ସଭ୍ୟତା ଗାଁକୁ କଦାପି ସହରରୁ ଆମଦାନି ହୋଇ ନପାରେ । ମାଗିବାକୁ ଆସୁଥିବା ଅପାରୁ 'ନରିହେନ ବୁଢ଼ୀ' ଭିତରେ କବି ଦେବୀ 'ମହାଲକ୍ଷ୍ମୀ'ଙ୍କୁ ଦେଖିଛନ୍ତି। ତାଂକ ପାଇଁ ମୂର୍ତ୍ତି ମହାଲକ୍ଷ୍ମୀ ଅପେକ୍ଷା ଏହି ଜୀବିତ 'ନରିହେନ'ର ଯଥୋଚିତ ସମ୍ମାନ ଅଧିକ ଅର୍ଥପୂର୍ଣ୍ଣ ! (ମହାଲକ୍ଷ୍ମୀ ବସିଛନ-କଥାନି ଲେର୍ଶେ ଲାଗସି-୨୦୦୩)

ମଣିଷର ଏକ ଥୋକ ସମୂହ ହେଲା କବି ହେମଚଂଦ୍ରକ ଗାଁ। ସେହି ଆଦର୍ଶ ଗାଁରେ ସ୍ନେହ, ସଦ୍‌ଭାବ ଅଛି, ସମଭାବ ଅଛି, ସଂପ୍ରୀତି ରହିଛି। ଭେଦଭାବ ନାହିଁ, ଶୋଷଣ ନାହିଁ। ମିଥ୍ୟା ପାରଂପାରିକତା ନାହିଁ, ଧର୍ମ ନାଁରେ ଅତ୍ୟାଚାର ନାହିଁ। ସହରକୁ ସଭ୍ୟତାର ସହରକୁ ସଭ୍ୟତାର 'ମଡ଼େଲ' ମନେ କରୁଥିବା ତଥା ଗାଁରେ ହିନିମାନରେ ବାଧ୍ୟରେ ରହିଥିବା ଥୋକେ ଲୋକ କଦାପି ହେମଚଂଦ୍ରଂକ ଆଦର୍ଶ ତଥା ସ୍ୱପ୍ନର ଗାଁର ଅଧିବାସୀ ହୋଇ ନ ପାରନ୍ତି ! ତାଂକ କଳ୍ପିତ ଭାରତ ଦେଶର ଏହି ଗାଁ ହେବ ଏକ କ୍ଷୁଦ୍ର କଳେବର। ଅନ୍ୟ ଅର୍ଥରେ କହିଲେ, ଏଭଳି ଶହ ଶହ ଆଦର୍ଶ ଗାଁର ବିସ୍ତାରିତ ରୂପ ହେବ 'ଭାରତ ଦେଶ', ଯାହା ପାଶ୍ଚାତ୍ୟର ଅଂଧାନୁକରଣରେ ଗଠିତ 'ଇଣ୍ଡିଆ' ନୁହେଁ ଅଥବା ଲିଂଗ ବୈଷମ୍ୟ, ବର୍ଣ୍ଣ ବୈଷମ୍ୟର ଦୁର୍ବଳ ଭିତ୍ତି ଉପରେ ଗଠିତ ଅତୀତର ତଥାକଥିତ 'ଦେବ ଭୂମି ଭାରତ' ବି ନୁହେଁ। ଏହାକୁ ସୁସ୍ପଷ୍ଟ କରି 'ମୁଇଁ ଭାରତ ଦେଶର ପିଲା' ଗୀତରେ ସଦା ଆଶାବାଦୀ କବି ଗାଇଛନ୍ତି :

"ଆମର ଦେଶେଁ ଆମେ ରଜା ଆମେ ପରଜା ପୁଓ
ଆମର ଡାକକେ ଆମେ ଶୁନି ଆମେ କରସୁଁ ଓ
ଆମର ଦେଶକେ ଆମେ ଗଢ଼ିଛୁଁ, ସେଥିଁ କାହାର
ସାହାଜ ଥିଲା, ମୁଁଇ ଭାରତ ଦେଶର ପିଲା ।।
ଦିନ ଆଏବା ଫେର ଫଲବା ଆମର ଦେଶେଁ ସୁନା
ଦୁଖେଁ ମରବାର ଭୁଖେଁ ମରବାର କଥା ହେବା ଜୁହ୍ନା
ଆମର ନୀତିଥିଁ ଚାଲଲେଁ ସଂସାର ନାଇଁ ହୁଏ
ଗୁଲଗୁଲା, ମୁଇଁ ଭାରତ ଦେଶର ପିଲା ।।"

*(ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ସମ୍ବଲପୁରୀ ଗୀତ-୨୦୦୪)*

'ସଂସାର'କୁ 'ଗୁଲଗୁଲା'ରୁ ମୁକ୍ତି ଦେବାର ସାମର୍ଥ୍ୟ ରଖିଥିବା ତାଂକ 'ଭାରତ ଦେଶର ପିଲା' ସ୍ଥାନୀୟ ନଦୀ-ନାଳ, ଝାର-ଜଂଗଲ ଓ ସାଧାରଣ ପଶୁ-ପକ୍ଷୀଂକୁ ଅଚିହ୍ନା ମନେ କରେନି । ସମସ୍ତଙ୍କୁ ସେ ଓତଃପ୍ରୋତ ଭାବେ ଜାଣେ; ପ୍ରତ୍ୟେକ ତା' ସୃଷ୍ଟିର ଜଣେ ଜଣେ ପାତ୍ର । ମଣିଷ ଅପେକ୍ଷା ସେମାନେ କମ୍ ମହତ୍ତ୍ୱପୂର୍ଣ୍ଣ ହୋଇ ନ ପାରନ୍ତି । ଏହି କାରଣରୁ, 'ନୂନୀ' କାବ୍ୟରେ (୨୦୦୨) 'ଭେଢ଼େନ', 'ମାଇତୀ', 'ଅଂଗ', 'ଶୁଂଗୀ', 'ଜୋଁକ', 'ଘେଁସାଲି', 'ଜୀରା' ଆଦି ସବୁ ନଦ-ନଦୀ ଆସନ୍ତି 'କଅ', 'କୁଁଭି', 'କେଂଦୁ', 'ଜର୍ଣ୍ଣା', 'କୁର୍ଲୁ', 'କଏଥ', 'କେକଟ' ଆଦି ଗଛ ପତ୍ର ବି ଆସନ୍ତି ଏବଂ ଆହୁରି ଆସନ୍ତି 'ପାରା', 'ପଣକା', 'କୁକରା', 'ଗାମି', 'ମଏନା', 'ଚଟିଆ', 'ଗୁଲିହା', 'ଖରହା' ଓ 'କୁମ୍ଭାଟି' ଆଦି ପଶୁ-ପକ୍ଷୀ । କେହି ଗାଁର ଆଦର୍ଶ ଝିଅ, କାବ୍ୟର ନାୟିକା 'ନୂନୀ' ଅପେକ୍ଷା କମ୍ ସମ୍ମାନର ଅଧିକାରୀ ନୁହଁନ୍ତି । ଏହି ଦୃଷ୍ଟିରୁ ଦେଖିଲେ ହେମଚଂଦ୍ରଂକ ଗାଁ ବିଶାଳ ପ୍ରକୃତିର କେବଳ ଏକ ଭିନ୍ନ ନାଁ ହୁଏ, ଅନ୍ୟ ରୂପ ହୁଏ ! ଅସୀମ ତା'ର ପରିଧି । ତାଂକ ଜୀବନ ଦୃଷ୍ଟିକୁ ଗାଁ କଦାପି ସଂକୀର୍ଣ୍ଣ କରେନା, ବରଂ ଜୀବନ ଓ ଜଗତର ବିସ୍ତାରିତ ସ୍ୱରୂପକୁ ଅକୃତ୍ରିମ ଢ଼ଂଗରେ ଦେଖିବା ଲାଗି ତାହା ଝରକା ହୁଏ, ପାଠକ ଆଖିରେ ସେ (ଗାଁ) ଚଷମା ପିନ୍ଧାଏ ।

ପ୍ରଶ୍ନ ଉଠେ, କ'ଣ ଏକା କବି ହେମଚଂଦ୍ର ଭଲ ପାଉଥିଲେ ଗାଁକୁ ? ନଦୀ-ନାଳ, ପଶୁ-ପକ୍ଷୀ, ଗଛ-ପତ୍ର ଓ ମଣିଷ ସମୂହକୁ ? ସେତେବେଳେ ସ୍ୱତଃ ଉତ୍ତର ହୁଏ-ନା । ହେମଚଂଦ୍ରଂକ ଭଳି ଅସଂଖ୍ୟ ଗାଁ ଓ ପ୍ରକୃତିକୁ ଭଲ ପାଉଥିବା ମଣିଷ ଆଜି ବି ଅଛନ୍ତି । ତନ୍ମଧ୍ୟରୁ କିଏ କବି ତ ଆଉ କିଏ ମାଟି-ପାଣିର ସାଦାସିଧା ମଣିଷଟିଏ ।

ଗାଁ ପ୍ରେମୀଂକ ମଧ୍ୟରୁ ଅନେକ ପୁଣି ଶ୍ମଶାନରେ ଖାର ପାଉଁଶ ହୋଇଗଲେଣି। ଅସଂଖ୍ୟ ଏହି ଗାଁ ପ୍ରେମୀଂକର ଜଣେ ପ୍ରତିନିଧି ସର୍ଜନାକାର ଭାବରେ ଯଦି କବି ହେମଚଂଦ୍ରକୁ ଆଜି ଦେଖାଯାଏ, ସେ କି କବିଂକର ଅସମ୍ମାନ ହେବ ? ଯେତେବେଳେ କବି ନିଜେ ଚାହୁଁଥିଲେ ଗାଁ ଲୋକଂକ ସାଂଗରେ 'ଏକାକାର' ହୋଇଯିବାକୁ, ନା ବଡ଼ ନା ସାନ, ତାଂକୁ ଅଲଗା କରି ଗଢ଼ି ଥୋଇଲେ କି କବିଂକ ଉଚିତ ମୂଲ୍ୟାଂକନ ହୋଇ ପାରିବ ? ଆଜିର ଯନ୍ତ୍ରାରୂଢ଼ ସମାଜରେ ଯେତେ ଲୋଡ଼ା କଳକାରଖାନା ଏବଂ ସହରି ମଣିଷର, ତା'ଠାରୁ ଢ଼େର ଅଧିକ ଲୋଡ଼ା ମଣିଷ ପଣିଆଁ ଶିଖାଇବାକୁ ପ୍ରୟାସ କରୁଥିବା ଗ୍ରାମ୍ୟ ପ୍ରେମୀ, ସୃଷ୍ଟିଶୀଳ ମଣିଷର, ଯିଏ କହିଲା- ଲେଖିଲା ବେଳେ ହେମଚଂଦ୍ରଂକ ଭଳି ଭାବ ପ୍ରବଣ ହୋଇ ଆଖିରୁ ଲୁହ ଗଡ଼ାଇବା ପାଇଁ କଦାପି କାର୍ପଣ୍ୟ କରୁ ନ ଥିବ। ହେମଚଂଦ୍ରଂକୁ 'ଅପହଂଚ', 'ମହାନ' କରି ଗଢ଼ିଲେ କି ଆମରି ପିଢ଼ିରେ ସେଭଳି ସୃଷ୍ଟିଶୀଳ ନୂଆଁ ନୂଆଁ ହେମଚଂଦ୍ରର ନିର୍ମାଣ ଅସହଜ ହେବ ନାହିଁ?

କବି ହେମଚଂଦ୍ର ଆଚାର୍ଯ୍ୟ ମୋର ବାପା ! ତାଂକୁ ନେଇ ମୋର ଆଲୋଚନା ବସ୍ତୁନିଷ୍ଠ ହେବା ସହଜ ନୁହେଁ। ହେମଚଂଦ୍ରଂକ ସାହିତ୍ୟ ସଂଭାରକୁ ଆଉ ମାନେ ପଢ଼ନ୍ତୁ, ବିଚାର କରନ୍ତୁ ତଥା ସେ ନେଇ ନିଜସ୍ୱ ଦୃଷ୍ଟି ତିଆରନ୍ତୁ। ଏହାହିଁ ମୋର ଆଶା ଓ ନିବେଦନ। ଏତିକି ହୋଇ ପାରିଲେ, ସେ କେବଳ କବି ହେମଚଂଦ୍ରଂକ ପ୍ରକୃତ ମୂଲ୍ୟାଂକନ ହେବ ନାହିଁ, ସାଂଗରେ କୋଶଳି-ସଂବଲପୁରୀ ଏବଂ ଓଡ଼ିଆ ଭାଷା-ସାହିତ୍ୟ ଆଂଦୋଳନକୁ ମଧ୍ୟ ବଳ ଦେବ- ଏଥିରେ ସଂଦେହ ନାହିଁ। ଯେମିତି କେବଳ 'ଗର୍ଭଣା' ମଧ୍ୟରେ ସୀମାବଦ୍ଧ କରି କବିଂକୁ ଦେଖାଯାଇ ନ ପାରେ, ସେମିତି କେବଳ 'ରାମରାହା'ର କବି ବା 'କୋଶଳ କବି'ର ସୀମିତ ପରିଧି ମଧ୍ୟରେ ତାଂକୁ ଢ଼ାଂକି ଦିଆଯାଇ ନ ପାରେ ! ପ୍ରତ୍ୟେକ ସୃଷ୍ଟିଶୀଳ ମଣିଷ ଭଳି ବିଶାଳ ସୃଷ୍ଟି ତାଂକରି ଚରାଭୂଇଁ; ପ୍ରତ୍ୟେକ 'ମଣିଷ' ତାଂକର 'ରାମ', 'କୃଷ୍ଣ' ଓ 'ପରମାତ୍ମା'! ସେହି 'ମଣିଷ' ସାଂଗରେ ତାଂକୁ ଯୋଡ଼ି ଦେଖିଲେ ହିଁ ସେ ପ୍ରତ୍ୟକ୍ଷ ହେବେ- ଏହା ନିଶ୍ଚିତ କଥା।



# ହେମଚନ୍ଦ୍ରଙ୍କ ପାରିବାରିକ ପୃଷ୍ଠଭୂମି

***ଅନ୍ତର୍ଯ୍ୟାମୀ ଆଚାର୍ଯ୍ୟ***

ଏମିତି ସାହିତ୍ୟ ଫାହିତ୍ୟ ଓ ନାଟକବାଜୀ କରିବାଟା ଗୋଟେ ପ୍ରକାର ପାଗଳାମି ବା ବିଡ଼ମ୍ବନାପନ ନୁହେଁ କି ? ଏଥିରେ ପେଟ ପୂରେ ନାହିଁ କି ଅଣ୍ଟା ଭରେ ନାହିଁ। କେବଳ ନିଶାଗ୍ରସ୍ତ ପରି ଅନବରତ ଲେଖିଯିବା କଥା ବା ବାୟା ଭଳି ମଞ୍ଚ ଉପରେ ତାଥୈୟା ତାଥୈୟା କରି ନାଚି ଯିବା କଥା। ପଢ଼ିବା ଲୋକ ଦେଖିବା ଲୋକ କେବେ ନା କେବେ ତାଳି ମାରିବେ ହିଁ ମାରିବେ। ଏହି ପାଗଳାମି ଆମ ପରିବାରର ଅନେକଙ୍କ ପାଇଁ ଏକ ଆନୁବଂଶିକ ଉପସର୍ଗ ହୋଇ ଗଲାଣି।

କାକା ହେମଚନ୍ଦ୍ରଙ୍କର ପୂର୍ବ ପ୍ରଜନ୍ମର କଥା କହୁଛି ପହିଲେ।

ଆମ ଜେଜେ ପଣ୍ଡିତ ଡ଼ୋଳାମଣି ଆଚାର୍ଯ୍ୟ ହେରିକା ସାତ ଭାଇ ଏବଂ ଜେଜେ ସବୁଠୁ ବଡ଼। ଜେଜେ ମୋର ମାଷ୍ଟ୍ର ବି ଥିଲେ। ତେଣୁ ସ୍କୁଲ୍‌ରେ ତାଙ୍କଠୁ ମାଡ଼ ଖାଇ ପିଠିରେ ଲୋଳା ଉଠିବା ବା ଅତ୍ୟନ୍ତ ଭୟାତୁର ହୋଇ ପେଣ୍ଟ ଭିଜେଇବା ଓ ଚଟାଣ ଓଦା କରେଇବା ମୋ ପାଇଁ ଏକ ନିତିଦିନିଆ କଥା। ଘରକୁ ଆସିଲେ ଜେଜେ ମା' ଦେଖନ୍ତି ଏବଂ ଜେଜେଙ୍କୁ ଗାଳି କରନ୍ତି। ମୋତେ ଖୁସି ଲାଗେ। ଏବେ ମୋତେ ଖୁସି ଲାଗେ ଯେ ଜେଜେଙ୍କ ସେଇ ମାଡ଼ ଓ ନିଜସ୍ୱ ଶିକ୍ଷା ପ୍ରଣାଳୀ ମୋତେ ନିର୍ଭୁଲ ଭାବେ ଓଡ଼ିଆ ଲେଖିବାର ମୌକା ଦେଇଛି।

ଜେଜେ ଆମ ପିଲାମାନଂକୁ ନେଇ ଛୋଟ ଛୋଟ ଗୀତ ବନେଇ ଥିଲେ। ସେଥିରେ ବଡ଼ ହେଲେ କିଏ କ'ଣ ହେବ ତା'ର ଆଭାସ ବା ପ୍ରାକ୍ ସୂଚନା ବି ଦେଇଥିଲେ ତାଙ୍କର ଜ୍ୟୋତିଷ ବିଦ୍ୟାକୁ ଆଧାର କରି। ବଂଗାଳୀ ଲିପିରେ ଲିଖିତ ଏକ ମୀରା ଭଜନ ସଂକଳନରୁ ଗୋଟେ ଭଜନକୁ ଓଡ଼ିଆରେ ଲିପ୍ୟନ୍ତର କରି ମୋତେ ଓ ମୁନୁକୁ ନାନୀ (ବଡ଼ କାକାଙ୍କ ବଡ଼ ଝିଅ)କୁ ବଂଗାଳୀ ଶିଖିବାରେ ସାହାଯ୍ୟ କରିଥିଲେ। ମୁଁ ସୁନାବେଡ଼ା (କୋରାପୁଟ)ରେ ରହି ବଂଗଳା ଭାଷା ଭିତରେ ପୁନଃ ପ୍ରବେଶ କରି ତାକୁ ଆୟତ୍ତ କରି ନେଲି। ମୁନୁକୁ ନାନୀ ବାହା ହେଇ ଗଲାପରେ ବଂଗଳା ଭୁଲିଗଲା। ଜେଜେ ଯେ ଜଣେ ପୂର୍ଣ୍ଣମାତ୍ରାରେ କବି ଥିଲେ ତାହା ବହୁତ ପରେ ଜାଣିଲି ଯେତେ ବେଳେ ଆମେ ଛୁଟୀରେ ଗଲେ ତାଙ୍କର ନିର୍ମୀୟମାନ 'ଛନ୍ଦୋବଦ୍ଧ ଭାଗବତ'ର ଛାନ୍ଦମାନଙ୍କୁ rough copyରୁ fair copyକୁ ଉତାରିବାକୁ ଦେଉଥିଲେ। ପରେ ବାପାଙ୍କଠାରୁ ଜାଣିଲି ଯେ ଜେଜେ ହାସ୍ୟରସାତ୍ମକ ଗୀତିନାଟ୍ୟ ବି ଲେଖି ଗାଁରେ ମଞ୍ଚସ୍ଥ କରାଉଥିଲେ ଆଗେ। ସେଥିରୁ ବ୍ୟଙ୍ଗାତ୍ମକ ପଦ ଗୋଟେ ଦି'ଟା ବାପା ମୋତେ

ଶୁଣାଇଥିଲେ ବି। ମୋର ସେଗୁଡ଼ା ଏବେ ମନେ ନାହିଁ ପୂରା। ଜ୍ଞାନ ଗମ୍ଭୀର ପଣ୍ଡିତ ଜେଜେ ସାଧାରଣ ଲୋକଙ୍କ ପାଇଁ ହସି ମଜାର ଗୀତଟେ 'ଦୂତ' ନାମକ ଏକ ହାସ୍ୟ ଚରିତ୍ରର ମୁହଁରେ ଶୁଣାଇବେ, ମୁଁ ସେତେବେଳେ ବିଶ୍ୱାସ କରି ପାରୁ ନ ଥିଲି।

ଯଦିଓ କେହି ନିଜର ଜେଜେଂକୁ ଡରନ୍ତିନି, ମୁଁ କିନ୍ତୁ ଡରୁଥିଲି। ଶିକ୍ଷା ବର୍ଷର ଅଧେ ଦିନ ବାପା ମା'ଙ୍କ ସାଂଗରେ ସମ୍ବଲପୁରରେ ଏବଂ ଅବଶିଷ୍ଟ କାଳ ଜେଜେ ବାପା ଜେଜେ ମା'ଙ୍କ ସହ ଗାଁରେ। ପଢ଼ାପଢ଼ିଟା ଢିଲା ରହିବ ତ ରହିବ, ତା' ସାଂଗେ ସାଂଗେ ଜୀବନଟା ଅନୁଶାସନ ବିହୀନ ହେବାଟା ବି ସ୍ୱାଭାବିକ। ଏବେ ଉତ୍ତର ବୟସରେ ଜେଜେଙ୍କୁ ଖୋଜୁଛି, ପିଠିର ସେ ମାଡ଼ ଚିହ୍ନକୁ ଖୋଜୁଛି, ଜେଜେ ମା'ଙ୍କ ସ୍ନେହବୋଳା ହାତ ଯାହାକୁ ବ-ହୋ-ତ୍ ଆଗରୁ ଲିଭାଇ ଦେଇଛି।

ଏ ତ ଗଲା ସପ୍ତରଥୀ ମଧ୍ୟରୁ ପ୍ରଥମ ରଥୀଙ୍କ କଥା। ଦ୍ୱିତୀୟ ରଥୀଟି ଥିଲେ ତାଙ୍କ ତଳ ଭାଇ ମନୋହର ଆଚାର୍ଯ୍ୟ। ତାଙ୍କ ଆଗରେ ରାମାୟଣର ଭ୍ରାତୃଭକ୍ତ ଭରତ ବି ହାର ମାନି ଯିବେ। ସେ ବୃତ୍ତିରେ ଶିକ୍ଷକ ତ ଥିଲେ ; ତା' ସାଙ୍ଗକୁ ଦକ୍ଷ କବିରାଜ ବି। ଖାଲି ସେତିକି ନୁହେଁ, ସେ ଏକ ନାଟ୍ୟକାର ବି ଥିଲେ। ଛପା ଅକ୍ଷର ପରି ଅତି ଗୋଲ ଗୋଲ ଅକ୍ଷରରେ ଲିଖିତ 'ନଳ ଦମୟନ୍ତୀ' ନାଟକର ପାଣ୍ଡୁଲିପି ଆମ ଘରେ ଦେଖିଥିବାର ମୋର ସ୍ପଷ୍ଟ ମନେ ପଡୁଛି। ତାଙ୍କର ହସ୍ତାକ୍ଷର ପ୍ରତି ମୁଁ ବିଶେଷ ଭାବେ ଆକର୍ଷିତ ହୋଇ ପଡ଼ିଥିଲି। ତାଙ୍କର ଚେହେରା ମୋର ସ୍ପଷ୍ଟ ମନେ ପଡୁନାହିଁ। ମହାମାରୀ ହଇଜା ତାଙ୍କୁ ନେଇଗଲା। ସେତେବେଳେ ମୋର ବୟସ ସାଢ଼େ ତିନିରୁ ଚାରି ବର୍ଷ ମଧ୍ୟରେ।

ଅନ୍ୟ କାହା କଥା ନ କହିଲେ ବି ମୁଁ ଯଦି ପଞ୍ଚମ ରଥୀଙ୍କକଥା ନ କହୁଛି ତେବେ ପୂରା କାହାଣୀଟା ଅଧୁରା ରହିଯିବ। ସେ ହେଉଛନ୍ତି ନନ୍ଦୀକିଶୋର ଆଚାର୍ଯ୍ୟ। ସେ ମଞ୍ଚ ଉପରେ ଅତର୍କିତ ଭାବରେ ପହଞ୍ଚି ଦର୍ଶକ ମାନଂକୁ ହସେଇ ହସେଇ ସେମାନଂକର ପେଟ ଫଟେଇ ଦେବେ। ତାଂକ ପାଇ ରିହାର୍ସାଲ ଦରକାର ନାହିଁ, ସଂଳାପର ପ୍ରୟୋଜନ ନାହିଁ, ନିର୍ଦ୍ଦେଶନାର ବି ଆବଶ୍ୟକତା ପଡ଼େନା। ତାଂକର ସବୁ କିଛି ସ୍ୱତଃସ୍ଫୂର୍ତ୍ତ। ନାଟକର ଯେ କୌଣସି ଦୃଶ୍ୟ ଚାଲି ଥାଉ ତାଙ୍କର ପରବାୟ ନାହିଁ, ଯେମିତି ସେଇଠି ପ୍ରବେଶ କରି ତାଙ୍କର କଳା କୌଶଳ ଦେଖାଇ ଚାଲିଯିବେ। ଏମିତି ସାଧାରଣ କଥାବାର୍ତ୍ତା ବେଳେ ବି ତାଙ୍କ ମୁହଁରୁ ସ୍ୱୟଂସୃଷ୍ଟ ଢଗଢମାଳି ବାହାରି ପଡ଼ିବ। ତାଂକ ମୁହଁରୁ ଦି'ପଦ କଥା ଶୁଣିଲେ ଯେ କୌଣସି ଦୁଃଖୀ ଲୋକ ତା' ଦୁଃଖ ଭୁଲିଯିବ।

ଏମାନଙ୍କ ମଧ୍ୟରୁ ତୃତୀୟ ରଥୀ ଉପେନ୍ଦ୍ର ଆଚାର୍ଯ୍ୟ ଟିକେ ଭିନ୍ନ ଥିଲେ। ତାଙ୍କ ବାପା ତାଙ୍କୁ ଇଂରାଜୀ ଶିକ୍ଷା ପ୍ରଦାନ କରିବାର ଯୋଜନା କରି ସମ୍ବଲପୁର ଜିଲ୍ଲା

ସ୍କୁଲ୍‌ରେ ଦାଖିଲା ଦେଲେ ଏବଂ କୌଣସିମତେ ମେଟ୍ରିକ କରେଇଲେ। ସେ ଆମ ଗାଁର ପ୍ରଥମ ମେଟ୍ରିକୁଲେଟ୍। ସେ ବରଗଡ଼ ସମବାୟ ବ୍ୟାଙ୍କ୍‌ରେ ଅଡ଼ିଟର ଥିଲେ ଏବଂ ପରେ ଅଳ୍ପ ଦିନ ପାଇ ମେଲଛାମୁଣ୍ଡା ମି.ଇ. ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ। ଏହି ଜେଜେ ଗଂଗାଧରଂକ ଚେହେରା ବିଷୟରେ ଆମ ପାଖରେ ବର୍ଣ୍ଣନା କରୁଥିଲେ। ତାଂକ କହିବା ଅନୁସାରେ ଗଂଗାଧରଂକ ମୁଣ୍ଡ ଓ ମୁଖମଣ୍ଡଳ ଯେମିତି ପରିପୁଷ୍ଟ, ସେ ତୁଳନାରେ ଦେହଟା ନ ଥିଲା। ଗଂଗାଧର ପୋଖରୀରୁ ଗାଧୋଇ ଫେରୁଥିବା ବେଳେ, ସେ ତାଙ୍କୁ ଦେଖିଥିଲେ। ତାଙ୍କର ଧୋତି ଓ ଗାମୁଛା କୁଆଡ଼େ ବେଶ୍ ଧୋବ କ୍ଷୀର-କ୍ଷୀର ଥିଲା।

ଢ଼େଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିଲା ଭଳି ମାଷ୍ଟ୍ରିଆମି କରୁଥିବା ଲୋକ ସବୁଠି ମାଷ୍ଟ୍ରିଆମି କରେ ଆଉ ବିଶେଷ କରି ମୋ ଭଳି ଛୋଟ ଛୋଟ ବକରା ଦେଖିଲେ ତ କଥା ଶେଷ। ସେମାନଙ୍କ ବନାନ ଓ ମାନସାଙ୍କ ପ୍ରଶ୍ନ ସାମନାରେ ବାଧ୍ୟ ହୋଇ ବେକଟା ଦେଖାଇବାକୁ ପଡ଼େ। ଆଉ ଆମର ଏଇ ତୃତୀୟ ରଥୀଟି କେବଳ ଇଂରାଜୀ ଅନୁବାଦ ଉପରେ ପ୍ରଶ୍ନ କରୁଥିଲେ। ଆମର ଷଷ୍ଠ ରଥୀ ନରସିଂହ ଆଚାର୍ଯ୍ୟ ଏମିତି ପୂର୍ଣ୍ଣପ୍ରାଣରେ ମାଷ୍ଟିରିଆ ହୋଇ ଯାଇଥିଲେ ଯେ ତାଙ୍କ କଥାରେ ଟିକେ ବି ସମ୍ବଲପୁରିଆ ଆଭାସ ମିଳୁ ନ ଥିଲା। ସେ ପରେ ଆମମାନଂକ ମଧ୍ୟରେ 'କଟକିଆ ଦାଦା' ବୋଲି ଅଭିହିତ ହେଲେ।

ଏହାଂକର ପୂର୍ବ ପ୍ରଜନ୍ମ ମାନଙ୍କରେ କେହି ସାହିତ୍ୟିକ, ନାଟୁଆ କି ଗବୈୟା ଥିଲେ କି ନାହିଁ ମୁଁ କହି ପାରିବି ନାହିଁ। ଥାଇ ପାରନ୍ତି, ତହିଁର କୌଣସି ଐତିହାସିକ ତଥ୍ୟ ମୋ ପାଖରେ ନାହିଁ। କେବଳ ଜେଜେଙ୍କ ପର୍ଯ୍ୟନ୍ତ ମୋର ଗତି। ସଂସ୍କୃତ, ଓଡ଼ିଆ ଓ ହିନ୍ଦୀରେ ଜେଜେ ବଡ଼ି ପ୍ରଭାତୁ ଭଜନ ଗାଇବା ମୁଁ ଶୁଣିଛି। ମୋତେ ବହୁତ ଭଲ ଲାଗିଛି। ସେତେବେଳେ ମୁଁ ଭାବୁଥିଲି ମୁଁ ବି ଏମିତି ଗାଇ ପାରନ୍ତି କି ? ମୋ ଦ୍ୱାରା ହେଲା ନାହିଁ। ଏପରିକି ତୃତୀୟ ଶ୍ରେଣୀ ପଢ଼ା ବହିର କବିତାଟେ ବି ମୁଁ ଠିକ୍ ଭାବେ ଗାଇ ପାରୁ ନ ଥିଲି। ମୋର ମାଷ୍ଟ୍ର ଜେଜେ ବିରକ୍ତ ହୁଅନ୍ତି ମୋ ଉପରେ ଗାନା ବାଜଣାଠୁ ଦୂରରେ ରହିଗଲି ସବୁଦିନ ପାଇଁ । ବାପା ବଂଶୀ ବଜାଉଥିଲେ ଭଲଭାବେ ଫିଲ୍ମୀ ଗୀତର ସୁରରେ । ମୁଁ ବଂଶୀଟେ ପାଇଲେ ମୁହଁରେ ପେଁକାଳୀ ଭଳି ଫୁଙ୍କୁଥିଲି ସିନା ଆଉ କିଛି କରିପାରୁନଥିଲି ।

ଜେଜେଙ୍କ ସହ ଗଂଗାଧରଙ୍କ ସାହିତ୍ୟିକ ସଂପର୍କ ବେଶ୍ ସୁଦୃଢ଼ ଥିଲା। ଜେଜେ ଯେତେବେଳ ପଦ୍ମପୁରରେ ଶିକ୍ଷକତା କରୁଥିଲେ ସେତେବେଳେ ଗଂଗାଧର ପଦ୍ମପୁର ଜମିଦାରଂକ ଦେବାନ୍ ଥିଲେ। ଆମର ଏବେ ଯେମିତି ସାମୟିକ ସାହିତ୍ୟ ଆସର ହେଉଛି ସେତେବେଳେ ବି ହେଉଥିଲା। ଗାଂଗାଧର ସେତେବେଳେ କିଛିଟା ପ୍ରତିଷ୍ଠିତ

ହୋଇ ପାରିଥିଲେ । ତେଣୁ ତାଙ୍କ କଥାକୁ ସେହି ସାହିତ୍ୟ ସଭାରେ ଅନ୍ୟମାନେ ଗୁରୁତ୍ୱ ବି ଦେଉଥିଲେ । ଜେଜେଙ୍କ ସଂସ୍କୃତ ସାହିତ୍ୟରେ ବେଶ୍ ପ୍ରବେଶ ଥିଲା । ତେଣୁ ଆଲୋଚନା ଛଳରେ ବେଳେ ବେଳେ ସଂସ୍କୃତ ଗ୍ରନ୍ଥ ମାନଂକରୁ ଉଦ୍ଧୃତ ଶ୍ଳୋକଗୁଡ଼ିକ ମୁହଁରୁ ବାହାରି ପଡୁଥିଲା । କିନ୍ତୁ ସଭାସୀନ ଅନ୍ୟ ପଣ୍ଡିତମାନେ ଏହାକୁ ସହଜ ଭାବେ ଗ୍ରହଣ କରି ପାରୁ ନ ଥିଲେ । ସେମାନେ କହୁଥିଲେ : ଆଚାର୍ଯ୍ୟ ମହାଶୟଙ୍କର ଏସବୁ ନିଜ ମୁହେଁ ମୁହେଁ ବନେଇ ଥିବା ଶ୍ଳୋକ ; ବାସ୍ତବରେ କୌଣସି ଗ୍ରନ୍ଥରେ ଏ ପ୍ରକାର ଶ୍ଳୋକ ନ ଥିବ । ସେତେବେଳେ ଉପସ୍ଥିତ ବୃଦ୍ଧି ଗଂଗାଧର ଜେଜେଙ୍କୁ ରକ୍ଷା କରିବାକୁ ଯାଇ କହନ୍ତି : ଏତ ଆହୁରି ଚମତ୍କାରିକତାର କଥା । ମୋତେ ଓଡ଼ିଆରେ ପଦଟେ ଲେଖିବା ପାଇଁ କମ୍ କଷ୍ଟ ହେଉ ନାହିଁ । ଆଉ ଆଚାର୍ଯ୍ୟ ମହାଶୟ ଯଦି ମୁହେଁ ମୁହେଁ ସଂସ୍କୃତ ଶ୍ଳୋକ ବନେଇ ପାରୁଛନ୍ତି, ତେବେ ଏହା ତ ଅତୀବ ଆଶ୍ଚର୍ଯ୍ୟର କଥା । - ସଭାସଦ୍‌ବର୍ଗ ସମସ୍ତେ ଚୁପ୍ ।

ଗଂଗାଧରଙ୍କ ଏଇ କଥାଟା କେତେଦୂର ସତ ମୁଁ କହିପାରିବି ନାହିଁ; ତେବେ ତାଙ୍କର ଦୁଇଜଣ ଜୀବନୀକାର ଶ୍ରୀ ଭରତ ନାୟକ ଓ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କ ମତରେ 'ତପସ୍ୱିନୀ'ର ଚତୁର୍ଥ ସର୍ଗ 'ମଂଗଳେ ଅଇଲା ଉଷା'ର ରଚନା ସମୟରେ ଗଂଗାଧର ଆଦୌ କିଛି କଟାକଟି କରି ନାହାନ୍ତି ଏବଂ ଏକ ସୁନ୍ଦର ସାବଲୀଳ ଛନ୍ଦମୟୀ ଝର୍ଣ୍ଣଟେ ପରି ବହି ଚାଲିଛି କ୍ଳିଷ୍ଟ ଚୋଖି ରାଗର ସେଇ ସର୍ଗଟି । ଗଂଗାଧରଙ୍କ ପାଇଁ ସତେ ଯେମିତି ସେଇଟା ଗୋଟେ ବାଁ ହାତର ଖେଳ । ଆମ କ୍ଷେତ୍ରରେ ରଫ୍ ଖାତାରୁ ପୃଷ୍ଠା ପରେ ପୃଷ୍ଠା ଚିରା ହୁଏ ସିନା ସଫଳ ଗଦ୍ୟଟେ କି ଗଦ୍ୟକବିତାଟେ ଠିକ୍ ଭାବେ ଜନ୍ମ ନେଇ ପାରେ ନା ।

ହଁ, ଆଉ ଗୋଟିଏ କଥା । ମୋର ଜେଜେଙ୍କ ବାପା ଅର୍ଥାତ୍ ମୋର ପରଦାଦା ବା ପ୍ରପିତାମହ ବିଦ୍ୟାଧର ଆଚାର୍ଯ୍ୟଂକ ବିଷୟରେ ଶୁଣିଥିଲି ମୋର ଅଜା ଗୋପୀନାଥ ଶତପଥୀଙ୍କଠୁ । ଅଜା ରେଭେନ୍‌ସାରେ ଏଫ୍.ଏ. ପଢୁଥିଲେ । ପାରିବାରିକ କନ୍ଦଳ ହେତୁ ତାହା ସଂପୂର୍ଣ୍ଣ କରି ନ ପାରି କଟକରେ ସି.ଟି.କଲେ ଏବଂ ସେଠୁ ଫେରି ଆମ ଗାଁ ପାଖ ସହର ସୋହେଲା ଏମ୍.ଇ. ସ୍କୁଲ୍‌ରେ ପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଲେ । ଜେଜେ ଥିଲେ ତାଂକ ଅଧୀନସ୍ଥ ସହକାରୀ ଶିକ୍ଷକ । ଏହି କାର୍ଯ୍ୟାଳୟିକ ସଂପର୍କ ବାହାରେ ବି ତାଙ୍କ ଘର ଓ ଆମ ଘର ମଧ୍ୟରେ ପାରିବାରିକ ବନ୍ଧୁତା ଥିଲା, ଅଜା ମୋ ବାପାଙ୍କ ଶ୍ୱଶୁର ହେବାର ବହୁ ପୂର୍ବରୁ । ଅଜା ଜେଜେଙ୍କ 'ବସ୍' ହେଲେ ବି ବୟସରେ କନିଷ୍ଠ ଥିବାରୁ ସେ ଜେଜେଙ୍କୁ ସମ୍ମାନ ଦେଉଥିଲେ । ସେ କହୁଥିଲେ, ଜେଜେଙ୍କର ବାପା ବିଦ୍ୟାଧର ଆଚାର୍ଯ୍ୟ ନିରପେକ୍ଷତାର ଏକ ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ଅତି ସ୍ପଷ୍ଟବାଦୀ ଓ ସତ୍ୟନିଷ୍ଠ ଥିଲେ । ଗାଁରେ କୌଣସି ନ୍ୟାୟ ନିଶାପ ବେଳେ ନିଜର

ପୁଅ, ଭାଇ ବା ଅନ୍ୟ ଆତ୍ମୀୟ ସ୍ୱଜନ କାହାରି ପକ୍ଷ ନେଉ ନ ଥିଲେ। ସେ ଆଦେଶାତ୍ମକ ସ୍ୱରରେ ବର୍ଷୁଥିଲେ ଏବଂ ପୁଅମାନେ ବିଶେଷ କରି ଜେଜେ ତାଙ୍କର ଆଜ୍ଞାବହ ପୁତ୍ର ଥିଲେ । ଜେଜେ ବି ପ୍ରାୟ ତାଙ୍କରି ପରି ଥିଲେ । କେବଳ ତଫାତ୍ ଏତିକି ଯେ ତାଙ୍କ ସ୍ୱର ଆଦେଶାତ୍ମକ ନ ଥିଲା ଓ ତାଙ୍କ ତର୍ଜନୀ ଆଂଗୁଳି ସର୍ବଦା ଅନୁତ୍ତୋଳିତ ରହୁଥିଲା।

ଜେଜେଙ୍କ ବଡ଼ ପୁଅ ଉମାଚ୍ଚରଣ ଆଚ୍ଚାର୍ଯ୍ୟ ମୋର ବାପା। ଆଗରୁ କହିଛି ସେ ଭଲ ବଂଶୀ ବାଦନ କରୁଥିଲେ। ତାଙ୍କର ଇଂରାଜୀ ଓ ଇତିହାସ ଭୂଗୋଳ ଭଲ ହେଉଥିଲା। ଅଙ୍କରେ ସାମାନ୍ୟ ଦୁର୍ବଳ ଥିଲେ। ସେ ବାସ୍ତବବାଦୀ ଥିଲେ ତେଣୁ କାଳ୍ପନିକତା ଭିତ୍ତିକ ଗଳ୍ପ ଉପନ୍ୟାସ ଓ ନାଟକ ଆଦିକୁ ଭଲ ପାଉ ନ ଥିଲେ। ବାସ୍ତବ ଘଟଣାବଳୀ ଓ ଦୁଃସାହସିକତାରେ ଭରା ରୋମାଞ୍ଚକର କାହାଣୀ ପଢ଼ିବାକୁ ଭଲ ପାଉଥିଲେ। ତାଂକ ପ୍ରିୟ ଲେଖକ ଥିଲେ Jim Corbett। ତାଙ୍କ ରଚ୍ଚିତ ପ୍ରାୟ ସମସ୍ତ ବହି ସେ ପଢ଼ି ଦେଇଥିଲେ। Career ଭିତ୍ତିକ ପତ୍ରିକା careers & courses ଏବଂ Competition Master ଆଦି ମୌଁକୁ ମୋ ପାଇଁ ଆସେ, ହେଲେ ବାପା ସବୁ ପଢ଼ନ୍ତି। careers & coursesରେ ଯେତେବେଳେ ବଡ଼ ବଡ଼ ବୁଦ୍ଧିଜୀବୀଙ୍କ ପ୍ରବଂଧ ବାହାରୁ ଥାଏ ଯାହାର ବିନ୍ଦୁ ବିସର୍ଗ ମୋ ମୁଣ୍ଡ ଭିତରକୁ ପୂକୁ ନ ଥାଏ। ବାପାଙ୍କର ଇଂରାଜୀ ଓ ଓଡ଼ିଆ ଅକ୍ଷର ପ୍ରାୟ ଏକା ପରି। କାରଣ ସେ ଉଭୟଟା ଏକା Speedରେ ଲେଖନ୍ତି। ମା'ଟା କିଂତୁ ଠିକ୍ ଓଲଟା। ତା'ର ଅକ୍ଷର ଗୋଲ। ସେ ଅଙ୍କ ଓ ଡ୍ରଇଁରେ ବେଶ୍ ଧୂରନ୍ଧର ଥିଲା। ତା'ର ଇତିହାସକୁ ବଡ଼ ଭୟ। ଏପରିକି ଇତିହାସ ବହିରେ ଥିବା ଆଉରଂଗଜେବ ଆକବର ଆଦିଙ୍କ ଛବିକୁ ଦେଖିଲେ ବି ସେ ଡ଼ରିଯାଏ ବୋଲି ମା' ନିଜେ କହୁଥିଲା। ବାପାଙ୍କର ଆଉ ଗୋଟେ କାମରେ ବେଶ୍ ଦକ୍ଷତା ଥିଲା। ସେଇଟା ହେଲା ଲକ୍ଷ୍ୟଭେଦ। ତାଙ୍କ ବଂଧୁମାନେ କହନ୍ତି ପିଲାବେଳେ ସେ ଯଦି କୋଉଠି ଧଣ୍ଡ ସାପଟେ ଦେଖୁଥିଲେ ଏମିତି ଲକ୍ଷ୍ୟ କରି ଟେକାଟେ ମାରୁଥିଲେ ଯେ ତାହା ଠିକ୍ ତା'ର ମୁଣ୍ଡରେ ବାଜୁଥିଲା ଏବଂ ଧଣ୍ଡଟି ମରି ଯାଉଥିଲା । ସେ ତାଙ୍କର ଉତ୍ତର ବୟସରେ ବି ଏହି ଦକ୍ଷତା ପ୍ରତିପାଦନ କରି ପାରୁଥିଲେ। ସେ ସଂଧ୍ୟାରେ କ୍ଷେତକୁ ବୁଲିବାକୁ ଗଲେ ସାଂଗରେ ଗୋଟେ ଗୁଲେଟ୍ (catapult) ନେଇ ଯାଉଥିଲେ ଏବଂ ତା' ସାହାଯ୍ୟରେ ହନୁ ମାଙ୍କଡ଼ ମାନଙ୍କୁ ତଡୁଥିଲେ।

ବାପାଙ୍କ ତଳ ଭାଇ ଅର୍ଥାତ୍ ମୋର ବଡ଼ କାକା (ଚ୍ଚିଉରଂଜନ ଆଚ୍ଚାର୍ଯ୍ୟ ଯାହାଙ୍କୁ ଆମେ ପିଲାମାନେ 'ସୁରୁବା' ବୋଲି ଡ଼ାକୁଥିଲୁ) ବି ଜଣେ ଭଲ ନାଟୁଆ ଥିଲେ। ତାଙ୍କ ରଚ୍ଚିତ ହାସ୍ୟ ରସାତ୍ମକ ନାଟକ 'ପରିବାର' ପାଇଁ ସେ ବେଶୀ ପରିଚ୍ଚିତ। ତାଙ୍କ ରଚ୍ଚିତ ପୌରାଣିକ ନାଟକ 'ତରଣୀସେନ' ବି ବେଶ୍ ଲୋକପ୍ରିୟ

ହୋଇଥିଲା । ଥରେ ପିଲାବେଳେ ଆମର ପୁରୁଣା ପୋଥିପତ୍ର ମାନଙ୍କ ମଧ୍ୟରୁ ତାଙ୍କର ଏକ ଐତିହାସିକ ନାଟକ 'ସୁଲେମାନ'କୁ ଆବିଷ୍କାର କରି ଥିଲି । ସେଥିରେ ଯୁକ୍ତିଯୁକ୍ତ ଭାବେ ପ୍ରୟୋଗ କରା ହୋଇଥିବା ଉର୍ଦ୍ଦୁ ଓ ମୋଗଲ ଶବ୍ଦ ଗୁଡ଼ିକ ବେଶ୍ ଭଲ ଲାଗୁଥିଲା । ଅବଶ୍ୟ ସେତେବେଳେ ଠିକ୍ ଭାବେ ବୁଝି ପାରୁ ନ ଥିଲି ସେ ଗୁଡ଼ା, ତଥାପି ଓଡ଼ିଆ ଭାଷା ଉପରେ ଏକ ପ୍ରକାର ଆଳଙ୍କାରିକ ସଜାବଟ ଭଳି ମନେ ହେଉଥିଲା । 'ହିନ୍ଦୁପିଲା' ତାଙ୍କର ଅନ୍ୟ ଏକ ନାଟକ ।

ଏଥର କାକାଙ୍କ ପ୍ରସଙ୍ଗକୁ ଆସିବା ।

କାକାଙ୍କ ଡ଼ାକ ନାଁ ଥିଲା 'ଚତୁର' । ବନ୍ଧୁ ବାନ୍ଧବ, ପ୍ରତିବେଶୀ ସମସ୍ତେ ଏହି ନାଁରେ ବେଶୀ ଜାଣିଥିଲେ । ଅନେକ ଥର ଡ଼ାକରେ ଆସିଥିବା ନିମନ୍ତ୍ରଣ ପତ୍ର ଓ ଚିଠି ଆଦିରେ ତାଙ୍କ ନାଁ 'ଚତୁର୍ଭୁଜ ଆଚାର୍ଯ୍ୟ' ବୋଲି ଲେଖା ହୋଇଥିବା ମୁଁ ଦେଖିଛି । ମୁଁ ନାଁଟା ପଢ଼ି ବିସ୍ମିତ ହେଉଥିଲି ଏବଂ ମନେ ମନେ ହସୁଥିଲି ବି । ବାପା ଓ ବଡ଼ କାକାଙ୍କ ବି ଗୋଟେ ଗୋଟେ ଡ଼ାକ ନାଁ ଥିଲା, ହେଲେ ତାଙ୍କ ବାପା ମା' ଏହି ନାଁରେ ଡ଼ାକିବାଟା ମୁଁ କେବେ ଶୁଣି ନାହିଁ । ଗାଁ ଲୋକେ ବି ଖୁବ୍ ଶୀଘ୍ର ସେମାନଙ୍କ ଡ଼ାକ ନାଁ ମାନଙ୍କୁ ଭୁଲି ଗଲେ । ସେମାନେ କାକାଙ୍କର ସରକାରୀ ନାଁଟା ବି ବହୁତ ଦିନ ପର୍ଯ୍ୟନ୍ତ ଜାଣି ନ ଥିଲେ ।

କାକା କେବେ ଲେଖିବାଟା ଆରମ୍ଭ କଲେ ସେ କଥା ତ ମୁଁ କହି ପାରିବି ନାହିଁ । ମୋର ହେତୁ ହେଲା ଦିନଠୁ ତାଙ୍କ ଲେଖିବାଟା ମୁଁ ଦେଖି ଆସୁଚି, ମୋତେ ସେତେବେଳେ ତାଙ୍କର ନାଟକ ଭଲ ଲାଗୁଥିଲା । ନାଟକ ଲେଖିବା ଓ କରେଇବାଟା ନିଶ୍ଚିତ ଭାବେ ସେତେବେଳେ ଗୋଟେ କଷ୍ଟକର ବ୍ୟାପାର । ଏବେକାର ଫିଲମ୍ ପରି ତ ସେତେବେଳେ ହେଉ ନ ଥିଲା । ଯେମିତି କାହାଣୀ ଲେଖିବ ଜଣେ, ଚିତ୍ରନାଟ୍ୟ ଲେଖିବ ଅନ୍ୟକେହି, ଗୀତ ରଚନା କରିବ ଆଉ ଜଣେ ଏବଂ ସଂଗୀତ ପରିଚାଳନା ପାଇଁ ଅନ୍ୟ ଦଳଟେ ପ୍ରସ୍ତୁତ ହୋଇ ରହିଥିବେ । କିନ୍ତୁ କାକାଙ୍କର ନାଟକ ମାନଙ୍କରେ ସେ ନିଜେ ହିଁ ସବୁ କିଛି । ନାଟକଟିଏ ପ୍ରସ୍ତୁତ ହେଲା ମାନେ ତା' ଭିତରେ ଥିବା ଗୀତ ବି ସେ ଲେଖିବେ, ସୁର ବି ସେ ଦେବେ, ସଂଗୀତ ପରିଚାଳନା ବି ସେ କରିବେ । ନିର୍ଦ୍ଦେଶନା ବି ସେ ହିଁ ଦେବେ । ଗାଁ ଲୋକ । ଅନ୍ନପୂର୍ଣ୍ଣା ଥିଏଟର କି ଜନତା ରଙ୍ଗମଞ୍ଚର କଳାକାର ପରି କେହି ପୋଖତ କଳାକାର ନ ଥିବେ, ଶିକ୍ଷାଗତ ଯୋଗ୍ୟତା ବି ଅନେକଙ୍କର କମ୍ ଥିବ । ତା'ପରେ ସମ୍ବଲପୁରୀ dialect ରେ ଅନବରତ କଥା ହେଉଥିବା ଲୋକଙ୍କ ମୁହଁରେ ଓଡ଼ିଆରେ ସଂଳାପ କୁହେଇବାଟା କ'ଣ କମ୍ କାଠିକର ପାଠ ? ଯଦି ପୌରାଣିକ ନାଟକ ହେଲା ତ ସରିଗଲା କଥା । ତା'ର ସଂଳାପ ଗୁଡ଼ିକ ତ ଆହୁରି କ୍ଲିଷ୍ଟ, ଆହୁରି ଦୁର୍ବୋଧ୍ୟ । କାକା ଏହି ସବୁ ଅସାଧ୍ୟ ସାଧନ କରୁଥିଲେ ।

ସେତେବେଳେ ଆଜି ପରି ଏମିତି ବିବିଧ ବାଦ୍ୟ ଯନ୍ତ୍ର ନ ଥିଲା। ତୁବି ତବଲା, ହାରମୋନିୟମ ଓ କ୍ଲେରିଓନେଟ୍-ବାସ୍। ନାଟକରେ ସେଣ୍ଟ୍ସାର୍ଟ ପିନ୍ଧା ଚରିତ୍ର ଥିଲେ ସେମାନଙ୍କ ପୋଷାକ ପରିଚ୍ଛଦ କାକା ନିଜେ ଯୋଗାଉ ଥିଲେ। ସେଠି ନା ଥିଲା ବିଦ୍ୟୁତ୍ ଆଲୋକର ଚମକ, ନା ଥିଲା ମାଇକ୍ରୋଫୋନର ଢ଼ାଇଁ ଢ଼ାଇଁ ଶବ୍ଦ। ଦି' ଚାରିଟା ପେଟ୍ରୋମାକ୍ସ୍ ଲାଇଟରେ ଚଳି ଯାଉଥିଲା। ପରିବେଶ ବେଶ୍ ଶାନ୍ତ, ଦର୍ଶକ ନିଶ୍ଚୁପ୍।

ମୁଁ କାକାଙ୍କର ଅଲକ୍ଷ୍ୟରେ ତାଙ୍କର ନାଟକ ମାନଙ୍କୁ ଆମୂଳ ଚୂଳ ପଢ଼େଁ, ଆଖଡ଼ାରେ ନିୟମିତ ବସି ସମସ୍ତଙ୍କର ଅଭିନୟ ଓ କାକାଙ୍କର ନିର୍ଦ୍ଦେଶନା ବି ଦେଖେ। ଅଭିନୟରେ ଭୁଲଭ୍ରାନ୍ତି କରୁଥିବା କଳାକାର ମାନଙ୍କ ଉପରେ ବଡ଼ ପାଟିରେ ଗାଳି ବର୍ଷଣ କରିବା ବି ଦେଖେ। ସେତିକି ଗାଳି ଖାଇ ବି କେହି ରାଗନ୍ତି ନାହିଁ କି ଦୁଃଖ କରନ୍ତି ନାହିଁ। ଏବକାର ଆଖଡ଼ା ହୋଇଥିଲେ ସମସ୍ତଙ୍କୁ ଚା' ସିଙ୍ଗଡ଼ା ନିଶ୍ଚୟ ମିଳୁ ଥାଆନ୍ତା। ସେତେବେଳେ କେବଳ ବିଡ଼ି ପିଆ ବିରଚିଟେ ମିଳୁଥାଏ ମଝିରେ। କାକାଙ୍କର ସେଇ ନାଟକରେ ଗୋଟେ କଥା ମୋତେ ବେଶୀ ଅଡୁଆ ଅଡୁଆ ଲାଗୁଥାଏ। ସେଇଟା ହେଲା, କଣେ ପୁରୁଷ କଳାକାର ଗୋଟେ ନୃତ୍ୟାଙ୍ଗନାର ଗେଟ୍ ଅପ୍‌ରେ ମଞ୍ଚରେ ଶାସ୍ତ୍ରୀୟ ନୃତ୍ୟ ପରିବେଷଣ କରିବାଟା। ଅବଶ୍ୟ କଦାଚିତ୍ କେବେ ସମ୍ବଲପୁରରୁ ନାଚ୍ ମାଷ୍ଟର ଆସୁଥାଆନ୍ତି, କିନ୍ତୁ ସବୁବେଳେ ନୁହଁ। ବଡ଼ କାକାଙ୍କର ନାଟକର ରିହାର୍ସାଲ ଗୁଡ଼ିକ ବି ଏମିତି ଏଟେଣ୍ଡ କରେ। ସେ ବି ମତେ ମନା କରନ୍ତି ନାହିଁ। ମୁଁ ପିଲାବେଳେ ସମ୍ବଲପୁର ଚେରୁଆପଡ଼ାରେ ଥିବାବେଳେ ତାଙ୍କର ଦୁଇଟି ନାଟକ 'ପରିବାର' ଓ 'ତରଣୀସେନ' ସେଇଠି ମଞ୍ଚସ୍ଥ ହୋଇ ଥିବାର ମୋର ସ୍ପଷ୍ଟ ମନେ ଅଛି। ଆଖଡ଼ା ସେଠିକାର ରାମଜୀ ମନ୍ଦିରରେ ହେଉଥିଲା।

ସତ କହିବାକୁ ଗଲେ ମୋତେ ଏମିତି ସାହିତ୍ୟ ଫାହିତ୍ୟ ଆସେନି। ଗଳ୍ପଟିଏ ଲେଖିଲେ ଲୋକେ ପତ୍ରିକାରେ ପଢ଼ି ବା ରେଡ଼ିଓରୁ ଶୁଣି ଖୁସି ହୁଅନ୍ତି ବା ଖୁସି ହେବାର ଛଳନା କରନ୍ତି। ବାଃ ଚମତ୍କାର ହୋଇଛି ବୋଲି କହନ୍ତି କେହି କେହି। କେହି କେହି ମୋ ଗଳ୍ପର କଟୁ ସମାଲୋଚନା ବି କରନ୍ତି ମୋ ଅଲକ୍ଷ୍ୟରେ। କଥା ହେଉଛି, ସଂପୂର୍ଣ୍ଣ ଓଡ଼ିଆମି ଖୋଜନ୍ତି ସେମାନେ। ପାଆନ୍ତି ନି। ମୋ ଗଳ୍ପ ଗୁଡ଼ିକ ବାସ୍ତବରେ ଆତ୍ମକଥା ମୂଳକ। କୋଉଥିରେ ନାୟକ ନାୟିକା ହୋଇ ମୁଁ ଓ ମୋର ଧର୍ମ ପତ୍ନୀ ଥିବୁ ତ ଆଉ କୋଉଠି ମୋର ବନ୍ଧୁ ଓ ବନ୍ଧୁ ପତ୍ନୀ ମାନେ ଥିବେ। ବନ୍ଧୁମାନେ ପଢ଼ନ୍ତି ମୋର ଗଳ୍ପ ଗୁଡ଼ିକ। କେହି ଖପ୍‌ପା ହୁଅନ୍ତିନି କି କୋର୍ଟ କଚେରୀ ଦଉଡ଼ନ୍ତି ନି। ଅନେକେ ଆମୋଦିତ ବି ହୁଅନ୍ତି। କେତେ ପାଠକ ମୋ ଗଳ୍ପର କେତେକାଂଶକୁ ଆଦୌ ହଜମ କରି ପାରନ୍ତି ନାହିଁ। ମୋ ଧର୍ମ ପତ୍ନୀଙ୍କୁ ମୁଁ ମାଡ଼ାମ୍ ବୋଲି ସମ୍ବୋଧନ କଲି ତ କାହାର କ'ଣ ଗଲା ? ମୁଁ କେନ୍ଦ୍ର ସରକାରଙ୍କ ଏକ ଶିଳ୍ପ ସଂସ୍ଥାରେ କାର୍ଯ୍ୟରତ। ଶିଳ୍ପ ବିପ୍ଳବ

ସହିତ ସାହିତ୍ୟରେ ବିପ୍ଳବ ତ ଆସିବ ହିଁ ଆସିବ। ବିନା ଖାଦରେ କୌଣସି ବଣିଆ ଗହଣା କରି ପାରେ ନାହିଁ। ଅନ୍ୟ ଭାଷାର ବିନା ସହାୟତାରେ ମୁଁ କେମିତି ସାହିତ୍ୟ ବନେଇବି ଯେ। ଏବେ ପାଟି ଖୋଲିଲେ ଇଂରାଜୀ ହିନ୍ଦୀ ଫଟାଫଟ୍ ବାହାରି ପଡୁଛି, ତାକୁ ରୋକିବି କେମିତି ? ସେଇଥି ପାଇଁ ତ କହୁଛି, ମତେ ସାହିତ୍ୟ ଫାହିତ୍ୟ ଆସେ ନାହିଁ।

ଆମ ଘରର ପୁରୁଣା ପୋଥିପତ୍ର ଭିତରୁ ଥରେ ସଚ୍ଚି ରାଉତରା'ଙ୍କ 'ପାଣ୍ଡୁଲିପି'କୁ ପାଇଥିଲି। ନିଶ୍ଚିତ ଭାବେ ତାହା କାକାଙ୍କର ହିଁ ଥିଲା। ମୁଁ ସେତେବେଳେ କଲେଜରେ ପଢୁଥିଲି। 'ପାଣ୍ଡୁଲିପି' ବିଷୟରେ ଆଗରୁ ଶୁଣିଥିଲି। ତାକୁ ଆମୂଳଚୂଳ ପଢ଼ିଲି। ବହୁତ ଖୁସି ଲାଗୁଥିଲା। କାକା ଆଧୁନିକ କବିତାମାନଙ୍କୁ ବି ଭଲ ପାଆନ୍ତି ବୋଲି ସେତେବେଳୁ ଜାଣି ଥିଲି। କିନ୍ତୁ କାକାଙ୍କର ସାହିତ୍ୟର ଅଧିକାଂଶ ପ୍ରଶଂସକ ଆଧୁନିକତାର ଘୋର ବିରୋଧୀ। ମୁଁ ସେଇ ଦିନଠୁ ଆଧୁନିକତା ଆଡ଼କୁ ଢ଼ଳିଲି। ମାୟାଧର ମାନସିଂହଙ୍କ ସନେଟ ସଂକଳନ 'କୁଣ' ବି ସେଇ ସ୍ତୁପ ମଧ୍ୟରୁ ପାଇ ପଢ଼ିଥିଲି। ମୁଁ ତ ଆଧୁନିକ କବିତାରେ ସେମିତି ପଣ୍ଡିତ ନୁହେଁ। ଆଗ କିଛି ବୁଝି ପାରୁ ନ ଥିଲି ସେ ଗୁଡ଼ା। ପରେ କିଛି କିଛି ବୁଝିଲି ମୋର ଜଣେ କବି ବନ୍ଧୁଙ୍କ ସହାୟତାରେ। ମୋ ନିଜ ରଚିତ କବିତା ବି ଟିକିଏ ପୁରୁଣା ହୋଇଗଲେ ବୁଝି ପାରେ ନାହିଁ। ସେଇ ଷଷ୍ଠ/ସପ୍ତମ ପଢୁଥିବା ବେଳର କଥା ମନେ ପଡ଼େ ଯେତେବେଳେ ପଦ ଯୋଡ଼ି ଗୀତ ଲେଖୁ ଥିଲି ଏବଂ ପର ମୁହୂର୍ତ୍ତରେ ଲାଜରେ ତାକୁ ଚିରି ଦେଉଥିଲି କୌଣସି ଅବୈଧ ସନ୍ତାନକୁ ମାରି ରାସ୍ତା କଡ଼ରେ ଫୋପାଡ଼ି ଦେଲା ପରି। ମୁଁ ସେତେବେଳେ କାକାଙ୍କ ସହ ପଦ୍ମପୁରରେ ଥିଲି। ତାଙ୍କର ନିର୍ମାଣମାନ ନାଟକ 'ବିଶ୍ୱାସ' ସେତେବେଳେ ଚୂଡ଼ାନ୍ତ ରୂପ ନେଉଥିଲା ଏବଂ ମୁଁ କ୍ରମଶଃ ଗୀତଟିଏ ଲେଖି ପାରିବାର ବିଶ୍ୱାସ ହରାଉ ଥିଲି। ତା'ର ବହୁତ ଦିନ ପରେ ମୁଁ ଆମ ନାଟକ ପାଇଁ ଗୋଟେ ଭଜନ ଲେଖି ଥିଲି ଯାହା ଆମ ଗାଁର ଗାୟକ କୃଷ୍ଣ ପ୍ରଧାନ ଗାଇଥିଲେ।

ତା'ପରେ ଜାଁ ଭାଁ କେତୋଟି ଆଧୁନିକ କବିତାରେ ଉପଧାମିଳନକୁ ସନ୍ନିବେଶିତ କରିଛି ସିନା ନିର୍ଦ୍ଦିଷ୍ଟ କୌଣସି ଗୀତି କବିତା ଲେଖି ନାହିଁ। ତା'ର ଅନେକ କାରଣ ଅଛି। ପ୍ରଥମ କଥା ହେଲା ମୋତେ ଗୀତ ଗାଇ ଆସେ ନାହିଁ। ଗୀତର ସୁର ଲୟ ତାଳ ମୋତେ ଜଣା ନାହିଁ। ତେବେ ବିସ୍ମୟର କଥା ଏହି ଯେ ମୋତେ ଘୋର ଜବରଦସ୍ତି ଭାବେ ତା' ମଧ୍ୟରେ ପ୍ରବେଶ କରେଇ ଦିଆ ହୁଏ। ଥରେ ଜଣେ ଗୀତି କବି ତାଙ୍କର ଆକାଶବାଣୀର ନା-ପାଶ୍ ହୋଇ ଫେରି ଆସିଥିବା ଗୀତ ବଣ୍ଡଲଟେ ଧରି ମୋର ଦ୍ୱାରସ୍ଥ ହେଲେ। ମୋର ଅନିଚ୍ଛା ସତ୍ତ୍ୱେ ତାଙ୍କ ଲେଖା ଉପରେ ଆବଶ୍ୟକୀୟ ସଂଶୋଧନ କଲି ଏବଂ ସେଥର ସେ ଆକାଶବାଣୀ ଗୀତିକାର ରୂପେ ସ୍ୱୀକୃତି ପାଇଲେ।

ଏବେ ମନେ ମନେ ଭାବେ, କାକାଙ୍କ ସହ ଆଉ କେତେ ବର୍ଷ ରହିଥିଲେ ମୁଁ ହୁଏତ ଗୀତିକାରଟେ ବା ଗାୟକଟେ ହୋଇପାରି ଥାନ୍ତି।

ଏପରି ଅନିଚ୍ଛା ସତ୍ତ୍ୱେ ଗୁଡ଼ିଏ କାମ କରିବାକୁ ପଡ଼େ। ମଞ୍ଚ ଉପରେ କୌଣସି ଠାକୁର ବା ମହାମନିଷୀଙ୍କ ଫଟୋ ସାମନାରେ ଦୀପ ଜାଳିବାକୁ ପଡ଼େ। ଏ କାମଟା ସେତେ କଷ୍ଟକର ନୁହେଁ, ଚଳିବ। ମୁଖ୍ୟ ଅତିଥିର ଭାଷଣଟା ବି ସଂକ୍ଷିପ୍ତ କରି ଚଳେଇ ଦେଇ ହେବ। ହେଲେ ବକ୍ତା ବା ମୁଖ୍ୟ ବକ୍ତା ହେବାଟା ଗୋଟେ କାଠିକର ପାଠ। ତାହା ପୁଣି ଏକ ସାହିତ୍ୟ ମଞ୍ଚରେ। ସାହିତ୍ୟ ଭିତରେ ପୂର୍ଣ୍ଣ ପ୍ରାଣରେ ପ୍ରବେଶ କରି ନ ଥିବା ମୋ ଭଳି ଲୋକକୁ। ତା' ମଧ୍ୟକୁ ଲୋକେ ଟାଣନ୍ତି, ମଞ୍ଚରେ ଛିଡ଼ା କରାନ୍ତି। ବେଳେବେଳେ ପୃଷ୍ଠପୋଷକତା ପାଇଁ ରାଜନୀତିଆଙ୍କୁ ବି ଡ଼ାକନ୍ତି। ସେଇଠି ମୋର କିଛି ଅସୁବିଧା ହୁଏ ନାହିଁ। ଗଂଗାଧର ଇଲାକାର ଲୋକ ବୋଲି ଗଂଗାଧର ଜୟନ୍ତୀରେ ହିଁ ବେଶୀ ଡ଼ାକନ୍ତି। ବ୍ରେକ୍ ସମୟରେ ଅନେକ ଅଧ୍ୟାପକ ବନ୍ଧୁ ମୋତେ ସାହିତ୍ୟର ନିଗୂଢ଼ ତତ୍ତ୍ୱ ମାନଙ୍କ ଭିତରକୁ ନେଇ ଯାଆନ୍ତି। ବୋଧେ ଭାବନ୍ତି, ମୁଁ ବି ସେମାନଙ୍କ ଶ୍ରେଣୀର ହୋଇଥିବି। ଠିକ୍ ଅଛି ଚଳିଯିବ, ଯେହେତୁ ସାହିତ୍ୟ ମୋର ଅବସର ବେଳର ଖୋରାକ। ଆଉ ଏ ଧର୍ମ ଫର୍ମ ? ମୋ ଭିତରେ ଧର୍ମୀୟ ଚେତନା ଏଯାବତ୍ ଉଦ୍ରେକ ହୋଇ ନାହିଁ। ଏ ଉତ୍ତର ବୟସରେ ବି ନିଜକୁ କେମିତି ବିଧର୍ମୀ ବିଧର୍ମୀ ଲାଗେ। ମୋ ଭିତରେ ଏକ ସ୍ୱଚ୍ଛ ଆଧ୍ୟାତ୍ମିକତା ଥିବା ବି କେବେ ଉପଲବ୍ଧି କରି ନାହିଁ। ଏପରି ଅନୁଷ୍ଠାନ ମାନଙ୍କୁ ଥରେ ଥରେ ଯିବାକୁ ପଡ଼େ ଏବଂ 'ଯାହା ଜାଣ କହ' ଭିତ୍ତିରେ ଆଧ୍ୟାତ୍ମିକ ତତ୍ତ୍ୱ ଉପରେ ଦି ପଦ ବକିବାକୁ ହୁଏ। ସେ ଦିନର କଥା ଗୁଡ଼ିକ ଏବେ ମନେ ପଡ଼ିଲେ ହସ ମାଡ଼େ। ପୃଥିବୀଟା ଗୋଟେ ରଂଗମଞ୍ଚ ବୋଲି ଯିଏ କହିଥିଲେ ବାସ୍ତବରେ ଠିକ୍ କହିଥିଲେ। ଆମେ ସଭିଏଁ ଗୋଟେ ଗୋଟେ ଅଭିନେତା ଅଭିନେତ୍ରୀ। ଆମର କହିବା, କାମ କରିବା ବା ଅନ୍ୟକୁ ଉପଦେଶ ଦେବା- ସବୁ ଗୁଡ଼ା ଯେମିତି ମୁଖସ୍ଥ କରି ନେଇଥିବା ସଂଳାପ ଭଳି। କୌଣସିଟା ହୃଦ୍‌ଗତ ନୁହେଁ। କାକାଙ୍କର ଧର୍ମୀୟ ଚେତନା ବି ପ୍ରାୟ ସେ ରକମ ଥିଲା। ଧର୍ମକୁ ସେ ବୈଜ୍ଞାନିକ ପୃଷ୍ଠଭୂମିରେ ବିଚାର କରି ଯେତିକି ଗ୍ରହଣୀୟ ସେତିକି ମାତ୍ର ହିଁ ଗ୍ରହଣ କରୁଥିଲେ। ତଥାପି ସେ ଧର୍ମସଭା ମାନଙ୍କରେ ଭାଷଣ ଦେଉଥିଲେ ଏବଂ ରାମାୟଣ ଆଦି ଗ୍ରନ୍ଥ ଉପରେ ପ୍ରବଚନ ବି ଦେଉଥିଲେ। ମୋଟାମୋଟି କହିବାକୁ ଗଲେ ତାଙ୍କର ଧର୍ମୀୟଚେତନା ମଧ୍ୟରେ ଧର୍ମାନ୍ଧତା ନା ଥିଲା। କେଜେଙ୍କର ବି ଧର୍ମାନ୍ଧତା ନ ଥିଲା। ତାଙ୍କର ଧର୍ମୀୟ ଚେତନା ଅପେକ୍ଷାକୃତ ବେଶୀ ଥିଲା ଏବଂ ଯାହା ଶାସ୍ତ୍ର ସମ୍ମତ ଓ ବିବେକ ଅନୁମୋଦିତ ତାକୁ ସେ ଗ୍ରହଣ କରୁଥିଲେ। ଧର୍ମ ସମ୍ବନ୍ଧୀୟ ଯେ କୌଣସି ପ୍ରଶ୍ନ

ପାଇଁ ଶାସ୍ତ୍ରୀୟ ଭିତ୍ତିରେ ପ୍ରଥମେ ତାକୁ ବିଶ୍ଳେଷଣ କରୁଥିଲେ ଏବଂ ତାଙ୍କ ବିବେକ କ'ଣ କହୁଛି ତାକୁ ଉପସ୍ଥାପନ କରୁଥିଲେ ।

ଏକ ସମ୍ବାଦ ପତ୍ରରେ ମୋର ଏକ ପ୍ରକାଶିତ ପ୍ରବନ୍ଧ ପଢ଼ି ଏକ ଧାର୍ମିକ ପତ୍ରିକାର ସଂପାଦକ ମୋ ପାଖକୁ ଗୋଟେ ପତ୍ର ଲେଖିଲେ ତାଙ୍କୁ ଏକ ପ୍ରବନ୍ଧ ଦେବାକୁ । ମୁଁ ଅଡୁଆରେ ପଡ଼ିଗଲି । ମାତ୍ର ପ୍ରତିଶ୍ରୁତିଟେ ଦେଇ ଚୁପ୍ ରହିଗଲି । ସେ ଆଉ ଥରେ ମନେ ପକାଇ ଦେଲେ । ମୁଁ ଆଉ ଟାଳି ପାରିଲି ନାହିଁ । ଐଶ୍ୱରିକ ସତ୍ତା ଉପରେ ଯାନ୍ତ୍ରିକତାର ଏକ ପୁଟ ଦେଇ କଷ୍ଟେମଷ୍ଟେ ପ୍ରବନ୍ଧଟେ ତିଆରି କରି ପଠାଇଲି । ଏକ ଭିନ୍ନ ସ୍ୱାଦର ପ୍ରବନ୍ଧ । ସେ ଖୁସି ହେଲେ । କିନ୍ତୁ ପତ୍ରିକାର ପାଠକ ମାନେ ମୋ ଠାରୁ ରାମାୟଣ, ମହାଭାରତ ଆଦିର ପୌରାଣିକ କଥାବସ୍ତୁରୁ କୌଣସି ଚାଞ୍ଚଲ୍ୟକର ତଥ୍ୟ ଜାଣିବା ପାଇଁ ଉତ୍ସୁକ ଥିଲେ । ମୁଁ ସେମାନଙ୍କୁ ଠକି ଦେଲି ଭଳି ମୋର ମନେ ହେଲା । ଯେଉଁମାନେ ବେଶୀ ପଢ଼ନ୍ତି ନାହିଁ, ବେଶୀ ତଥ୍ୟ ସାମଗ୍ରୀ ସଂଗ୍ରହ କରି ପାରନ୍ତି ସେମାନେ ମୋ ଭଳି ଠକିବେ ହିଁ ଠକିବେ । କେବଳ ଅନୁଚିନ୍ତନକୁ ଆଧାର କରି ମଣିଷ କେତେ ବା ପୃଷ୍ଠା ମଣ୍ଡନ କରି ପାରିବ ?

ଏ କ୍ଷେତ୍ରରେ କାକାଙ୍କ କଥା ଅଲଗା । ସେ ଚାକିରିରେ ଥିବା ବେଳେ ନାଟକ, ଗଳ୍ପ, କବିତା ଆଦି ଲେଖିଛନ୍ତି । ବହୁତ ଦିନ ପରେ ସେ କେବଳ ରାଜନୀତି କରିବା ପାଇଁ ଚାକିରି ଛାଡ଼ିଲେ । ରାଜନୀତି ପାଇଁ କ୍ଷେତ୍ର ମଧ୍ୟ ପ୍ରସ୍ତୁତ କଲେ । ସଫଳ ହୋଇ ପାରିଲେ ନାହିଁ । ସେ ଯଦି ସଫଳ ରାଜନୀତିଜ୍ଞ ହୋଇ ଥାଆନ୍ତେ ତେବେ ଏକ ସ୍ୱନାମଧନ୍ୟ ଲେଖକ ବା କବି ହୋଇ ପାରି ନ ଥାନ୍ତେ । ତାଙ୍କର ପ୍ରସିଦ୍ଧ କାବ୍ୟଗ୍ରନ୍ଥ 'ରାମ ରାହା' ଏମିତି ରାତାରାତି ତିଆରି ହୋଇନାହିଁ । ପୂର୍ବରୁ ଏଥିପାଇଁ ତାଙ୍କୁ ଅନେକ ଗ୍ରନ୍ଥ ଅଧ୍ୟୟନ କରିବାକୁ ପଡ଼ିଥିଲା । ଏହି ଅଧ୍ୟୟନ କାଳ ମଧ୍ୟରେ ତାଙ୍କର ସାହିତ୍ୟ ସର୍ଜନା ବି ଟିକିଏ ଧୀମେଇ ଯାଇଥିଲା । ସେ ଯଦି ଚାକିରିରେ ନିଜକୁ ସଂପୂର୍ଣ୍ଣ ନିୟୋଜିତ କରି ରଖି ଥାଆନ୍ତେ ତେବେ ହୁଏତ 'ରାମ ରାହା'ର ସୃଷ୍ଟି ହୋଇ ପାରି ନ ଥାନ୍ତା । ତେଣୁ ତାଙ୍କର ଚାକିରି ଛାଡ଼ିବା, ରାଜନୀତିରେ ବିଫଳ ହେବା- ଏ ସବୁ ତାଙ୍କ ପାଇଁ ଗୋଟେ ଗୋଟେ ଆଶୀର୍ବାଦ । ସାଧାରଣ ଜୀବନର ବିଫଳତା ତାଙ୍କ ସାହିତ୍ୟିକ ଜୀବନ ପାଇଁ ଏକ ଅମସୃଣ ସଫଳ ସ୍ତମ୍ଭ ।



# ପ୍ରିୟତମ ହେମଚନ୍ଦ୍ର ବାବୁ

*ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା*

ମୋର ପ୍ରାଣଭରା ଆଶୀର୍ବାଦ ନେବେ ଆପଣଙ୍କ ସୁସ୍ୱାସ୍ଥ୍ୟ ପାଇଁ ତଥା ଆପଣଙ୍କ ଲେଖନୀର ପରବର୍ତ୍ତୀ ଜୟଯାତ୍ରା ନିମିତ୍ତ। 'ରାମ୍‌ରାହା'ର ଆଦ୍ୟକାଣ୍ଡ ପଢ଼ି ମୋର ଲେଖା ପାଇଁ କିଛି ଉପାଦାନ ନୋଟ କରିଥିଲି। ଧନପତିବାବୁଙ୍କ (ଧନପତି ମହାପାତ୍ର) ଅନୁରୋଧ ପତ୍ରରେ ଅଯୋଧ୍ୟାକାଣ୍ଡର ଉଲ୍ଲେଖ ଦେଖି ମୁଁ ଆଦ୍ୟ ଓ ଅଯୋଧ୍ୟା ପଠାଇ ଦେଇଥିଲି। ପ୍ରକୃତରେ ଅଯୋଧ୍ୟା ପଢ଼ି ନାହିଁ। ଆପଣ ପୁରସ୍କାର ପାଇଲେ, ଦ୍ୱିତୀୟ ସଂସ୍କରଣ ପାଇଲେ। ତା'ପରେ ଯେଉଁ ଚିଠି ଦେଇଥିଲେ ତାହା ମୋ ଉପରେ ଏକ ପ୍ରଚଣ୍ଡ ବୋଝ ପରି ଲଦି ହୋଇଥିଲା। ଏଣେ ସବୁତକ ପଢ଼ିବାର ସମୟ ମିଳିଲା ନାହିଁ ମୋର ଅତ୍ୟନ୍ତ ଅଶାନ୍ତ ଜୀବନରେ। ଆପଣ ମୋତେ ଅନନ୍ତକାଳ ମଂଜୁର କରିଛନ୍ତି, କିନ୍ତୁ ଅର୍ଥାଗମ ପରେ ଅନାବଶ୍ୟକ ବିଳମ୍ବ କର୍ତ୍ତବ୍ୟ ନୁହେଁ। ଧନପତିବାବୁ ପୁଣି ଲେଖିଲେ, "ଆଦ୍ୟକାଣ୍ଡର DTP ପରେ ସେମାନେ ବ୍ୟସ୍ତ କରୁଛନ୍ତି ମୁଖବନ୍ଧ ଲାଗି। ତାଙ୍କୁ ଚିଠିରେ ସାତଦିନ ସମୟ ମାଗିଲି।

ସବୁ ତ ପଢ଼ି ହେବ ନାହିଁ। ମୋର କିନ୍ତୁ ଖୁବ୍ ଆଗ୍ରହ ଥିଲା ଉତ୍ତରକାଣ୍ଡରେ ଆପଣ ଶୈଳିକ ଧାରାକୁ କିପରି ନିରବଚ୍ଛିନ୍ନ ରଖିବେ ତାହା ଦେଖିବା ଲାଗି। ବାସ୍ତବରେ ଆପଣଙ୍କ ଯାଦୁକରୀ ପ୍ରତିଭା ଗଙ୍ଗାଧରୀ ଶୈଳୀରେ କିଛି ଅନୁପସ୍ଥିତିର ବ୍ୟବସ୍ଥା କରି ଯେଉଁ ଅଭିନବ ଗୁମ୍ଫନ କରିଛି ତାହା ଏକାନ୍ତ ମୌଳିକ ଓ ଅଭିନବ। 'ରାମ୍‌ରାହା'ର ଆଦ୍ୟ ପରିକଳ୍ପନା ସହିତ ତାହାର ପରିସମାପ୍ତିର ଏ ମନୋହର ଆୟୋଜନ ସମଗ୍ର କାବ୍ୟକୁ ଏକାନ୍ତଭାବେ ଅପୂର୍ବ ଓ ଅନନ୍ୟ କରିଛି। ବସ୍ତୁତଃ, କଳ୍ପନା, କବିତ୍ୱ, ପଦପ୍ରୟୋଗଚାତୁରୀ, ପ୍ରକୃତି ବର୍ଣ୍ଣନା, ପ୍ରଭୃତିର କେତେକ ଦୃଷ୍ଟାନ୍ତ ମଧ୍ୟରେ ମୁଖବନ୍ଧ ଲେଖିବାକୁ ମୁଁ ପଶ୍ଚାତ୍‌ପଦ ହେଉଥିଲି। ନୀଳମାଧବ ପାଣିଗ୍ରାହୀ ବାବୁ ବିଷୟବସ୍ତୁ କ୍ଷେତ୍ରରେ ଅନୁସରଣ କରିଛନ୍ତି ବ୍ୟାସଙ୍କ ମହାଭାରତକୁ। ପରିବେଶ, ପ୍ରକୃତି ଓ ଜୀବନଧାରା ତଥା ଚରିତ୍ରର (ପଶ୍ଚିମୋଡ଼ିଶୀୟ ଢଙ୍ଗରେ ମାନବାୟନ ସହିତ ଭାଷାଚାତୁରୀ, ଛନ୍ଦସଂଗୀତ ତାଙ୍କ କାବ୍ୟର ବୈଶିଷ୍ଟ୍ୟ। ଉଦାହରଣ ମୁଖରେ ତାହା ଦର୍ଶାଇବା ପୂର୍ବରୁ ଓଡ଼ିଆ-ସଂବଲପୁରୀ ଭାଷାଦ୍ୱୟର ସଂବନ୍ଧ ଦୃଷ୍ଟିରୁ ଗତ ପାଞ୍ଚଶହ ବର୍ଷର ବିକାଶ ଉପରେ ମୋର ଯେଉଁ ସମ୍ଭାବନା ମନକୁ ଆସିଲା ତାହା ଥିଲା ସେହି ଗ୍ରନ୍ଥ ପ୍ରବେଶର ପ୍ରଥମ ଅର୍ଦ୍ଧ। ତାହା ମୋତେ ଖୁବ୍ ଉତ୍ସାହିତ କରିଥିଲା। ସେହି

ପ୍ରଥମାର୍ଦ୍ଧକୁ ସେ ଛପାଇ ପାରିଲେ ନାହିଁ; ତେଣୁ ସେହି ଅଂଶ ସହିତ ଉତ୍ତର କାଳର ବିକାଶକୁ ମିଶାଇ ଏକ ନୂଆ ରଚନା ଲେଖି ମୁଁ ଦେଲି ଝଙ୍କାରକୁ। ଆପଣଙ୍କ କାବ୍ୟର ମୁଖବନ୍ଧ ପାଇଁ ବିଷୟବସ୍ତୁ ଚୟନ ଏବଂ ତାହାର ଉପସ୍ଥାପନ କାଳରେ ଆପଣ ଯେଉଁ ଅନନ୍ୟ ମୌଳିକତା ଦର୍ଶାଇଛନ୍ତି ତାହା ମୋତେ ବିମୁଗ୍ଧ କରିଛି। ଏହା ଏକ ମୌଳିକ ତଥା ଅପୂର୍ବ ଶୈକ୍ଷିକ ସାଫଲ୍ୟ। ସାଧାରଣ ଦୃଷ୍ଟାନ୍ତ ମଧ୍ୟରେ କବି ପ୍ରତିଭା ଖୋଜିବା ଦର୍ଶାଇବା ଅବଶ୍ୟ ମହତ୍ତ୍ୱପୂର୍ଣ୍ଣ, କିନ୍ତୁ ତାହା ଅପେକ୍ଷା ବହୁଗୁଣରେ ମୂଲ୍ୟବାନ ବିଷୟ ଚୟନ ଯୋଜନାଗଣ ମୌଳିକତାର ବିଚାର ଆଲୋଚନା। ତେଣୁ ମୁଁ ଯେଉଁ ଉଦାହରଣତକ ଖୋଜି ନୋଟ୍ କରିଥିଲି ତାହା ରଖି ନେଇଗଲି। ମୋର ସାଂପ୍ରତିକ ଲେଖାକୁ ମୁଁ ଏକ ଗ୍ରନ୍ଥପ୍ରବେଶର ଆକାର ଦେଇ କାବ୍ୟର ବିବିଧ ବୈଶିଷ୍ଟ୍ୟ ମାତ୍ର ସୂଚାଇ ମୋର କାର୍ଯ୍ୟ ସାଙ୍ଗ କରିଛି। ଅବଶ୍ୟ ଏହା ସହିତ ସେହି ଦୃଷ୍ଟାନ୍ତଗୁଡ଼ିକର ଚର୍ଚ୍ଚା ମଧ୍ୟ କରାଗଲେ କ୍ଷତି ନ ଥିଲା। କିନ୍ତୁ ତହିଁରେ ଲେଖାଟି ଅତିଶୟ ଦୀର୍ଘ ହୋଇଥାନ୍ତା ଏବଂ ହୁଏ ତ ଆଦ୍ୟକାଣ୍ଡର ମୁଖବନ୍ଧ ରୂପେ ଅନାବଶ୍ୟକ ବିବେଚିତ ହୋଇଥିଲେ ଲେଖା ସ୍ୱୟଂ ଏକ ସମସ୍ୟା ହୋଇଥାନ୍ତା। ତେଣୁ ବିରତ ହେଲି।

ଅବ୍‌ଶୋଷ ରହିଗଲା, ସମଗ୍ର କାବ୍ୟଟି ନ ପଢ଼ି ଫେରାଇ ଦେଉଛି। ମୁଁ ଆଖି ବୁଲାଇଲା ଭଳି ପଢ଼ି ଜାଣେ ନାହିଁ। ଏହା ମୋର ଦୁର୍ବଳତା। ଅଳ୍ପ ହେଉ ପଛେ ଯାହା ପଢ଼ିବି ତାହା ଯତ୍ନ କରି ହୃଦୟଙ୍ଗମ କରିବି। ଏଭଳି ଲୋକ ବଳଦଗାଡ଼ିରେ ହିଁ ଚାଲେ, ଦ୍ରୁତଗାମୀ ଉଡ଼ାଜାହାଜରେ ତା'ର ଶ୍ୱାସରୁଦ୍ଧ ହେବା ସ୍ୱାଭାବିକ। ଅବଶ୍ୟ, ବର୍ତ୍ତମାନ ମୋ ପାଖରେ ପାଣ୍ଡୁଲିପି ରହିଲେ ବି ଚଳନ୍ତା ବୋଧହୁଏ। କିନ୍ତୁ ମୁଁ ଅନ୍ୟ କାର୍ଯ୍ୟରେ ହାତ ଦେବାକୁ ନିଷ୍ପତ୍ତି କରିଛି। ତେଣୁ ଏବେ ଯାଇଥାଉ, ଛପା ହେଲେ ପଢ଼ିବି।

କବିର ଅଧିକାର ନିଜ ସୃଷ୍ଟି ଉପରେ, ଏହା ମୁଁ ସର୍ବାନ୍ତଃକରଣରେ ସ୍ୱୀକାର କରୁଥିଲେ ହେଁ ଧୃଷ୍ଟତା କରି ଏହି ଉତ୍ତରକାଣ୍ଡର ଗୋଟିଏ ଦୁଇଟି ସ୍ଥାନରେ ସାମାନ୍ୟ ଅଧିକ ସଂଯୋଗର ପ୍ରସ୍ତାବ ଦେଉଛି। ଆପଣ ବିଚାର କରିବେ ଏବଂ ଆବଶ୍ୟକ ମନେ କଲେ ଗ୍ରହଣ କରିପାରନ୍ତି।

(୧) ଖାତା-୧/୭୯ ପୃଷ୍ଠା, ୮୦ ପଦ, ୮୫ ପଦ- spelling

(୨) ଖାତା -୪/ ଏ ସଭା ସେହି ଦିନର ଦ୍ୱିତୀୟ ଅଧିବେଶନ। ସୀତା ବୁଝିଗଲେ, ତେଣୁ ଅନୁପସ୍ଥିତ ରହିଲେ। କିନ୍ତୁ ଲବକୁଶଙ୍କ ବିଷୟରେ ଆପଣ ନୀରବ। ସେମାନେ ବି ଏହି ଅଧିବେଶନରେ ଅନୁପସ୍ଥିତ ରହିବା ଆବଶ୍ୟକ; ନହେତ୍

ସେମାନଙ୍କ ପରିଚୟ ଜଣା ପଡ଼ିଯିବ। ପାଉଚ-୩ ଶେଷରେ ମୁନି ସେମାନଙ୍କୁ ଉପରବେଳା ତାଙ୍କର ଅସ୍ତ୍ରଶସ୍ତ୍ରାଦି ମଜାଘଷା କରିନେବା ଲାଗି ଆଦେଶ ଦିଅନ୍ତୁ ଏବଂ ସଭାକୁ ନ ଆସିବାକୁ କହନ୍ତୁ। ଅଥବା ଆପଣ ଅନ୍ୟ କୌଣସି ଏକ କାରଣ ଦର୍ଶାଇ ସେମାନଙ୍କ ଅନୁପସ୍ଥିତିର ବ୍ୟବସ୍ଥା କଲେ ସୁସଂଗତ ହୁଅନ୍ତା ବୋଲି ମୋର ମତ।

(୩) ପାଉଚ୍ ୫- ରାମାୟଣ ପରଂପରାରେ ଶୀତପରେ ବସନ୍ତରେ ସୀତା ନିର୍ବାସନ- ଶ୍ରାବଣରେ ପୁତ୍ରଜନ୍ମ- ଆପଣ ୩୪ ପଦରେ ସୂଚନା ଦେଇଛନ୍ତି ଯେ ବସନ୍ତକାଳରେ ଲବଣାସୁର- ଦମନ ଉଦ୍ଦେଶ୍ୟରେ ଶତ୍ରୁଘ୍ନ ଆସି ବିଶ୍ରାମ କଲାବେଳେ ବାରବର୍ଷ ପୂର୍ବେ ପୁତ୍ରଜନ୍ମ। ସୀତାଙ୍କ ପ୍ରସବ କାଳ ଓ ଶତ୍ରୁଘ୍ନଙ୍କ ବିଶ୍ରାମଦିନ ସମନ୍ୱିତ ହେବା ଆବଶ୍ୟକ ନୁହେଁ କି ? ତାହାହେଲେ ବସନ୍ତକାଳରୁ ଶତ୍ରୁଘ୍ନଙ୍କ ମଥୁରା ଅଭିଯାନ ସଙ୍ଗତ ହେବ କି ? ଯଦି ତାହା ହୁଏ, ତାହା ହେଲେ ୩୪ ପଦ ପରେ ପଦେ ଦିପଦରେ ସଂକ୍ଷେପରେ ବର୍ଷା ବର୍ଣ୍ଣନା ଦେଲେ ଚଳିଯାଇପାରେ। ନହେତ୍ ପଦ ୨୫-୨୬ର ଲୋଭନୀୟ ବସନ୍ତ ବର୍ଣ୍ଣନା ଉଠାଇ ଦେବା ଏବଂ ତା' ସ୍ଥାନରେ ବର୍ଷା ବର୍ଣ୍ଣନା ଦେବା କଥା ବିଚାର କରିବେ। ତଥ୍ୟ ସଂଗତି ପାଇଁ ଆବଶ୍ୟକ ବୋଲି ମୋର ମତ।

(୪) ପାଉଚ୍ -୬/୨୬ ପଦ ପରେ ରାମ ପଦ କଥାରେ ଲବକୁଶଙ୍କ ପରିଚୟ ପଚାରନ୍ତେ କି ? ଏବଂ ମୁନି କହନ୍ତେ, "ଆମେ ସର୍ବେ ଯିମା ତ, ଜାନ୍‌ବ ଯେ !" ବିଚାର କରିବେ।

(୫)ପାଉଚ୍ ୬/୪୯ ପଦର ପ୍ରଥମ ଧାଡ଼ିପରେ ସୁନାର ମୂରତି ଦେଖି ଲବକୁଶ ସିଧା ମୁଣ୍ଡିଆ ମାରିବା ଆଗରୁ ପଚାରନ୍ତୁ- କାହାର ମୂର୍ତ୍ତି? ଜଣେ କେହି ଉତ୍ତର ଦିଅନ୍ତୁ ମହାରାନୀ ଜନକକୁମାରୀ ସୀତା- ପରସ୍ପର ମୁହଁ ଚାହାଁଚାହିଁ ହୋଇ ବିସ୍ମୟରେ ପୁଣି ପଚାରନ୍ତୁ- ମହାରାନୀ କାହିଁ ଗଲେ ଯେ ଇ ସୁନାର ସୀତା ଇନେ ଅଛନ୍ ? ଉତ୍ତର- "ରାମ୍ ତାଙ୍କୁଁ କେନ୍ ଆଶ୍ରମ୍ ନେ ଛାଡ଼ି ଦେଇଛନ୍ ପରେ !" ହେନ୍ତା ହେଲେ ଲବ କହୁ- ଖୋ, ଇଟା ଆମର୍ ମାଁ । ଦଦା, ଚାଲ୍ ବୋଲି ଦୁହେଁ ମୁଣ୍ଡିଆ ମାରନ୍ତୁ। ଏ ଭଳି ସ୍ପଷ୍ଟ କରିଦେଲେ ବୃତ୍ତାନ୍ତଟିର ନାଟକୀୟତା ପ୍ରଭାବଶାଳୀ ହେବ। ମୁଖବନ୍ଧ ପଢ଼ିବେ ଏବଂ ବିଚାର ପରେ ଛପାଇବାକୁ ଦେବେ। ମୋ ନିଜ ବିଷୟରେ ଦୈହିକ ସ୍ୱାସ୍ଥ୍ୟ ପ୍ରାୟ ସ୍ୱାଭାବିକ । ମାନସିକ ସ୍ୱାସ୍ଥ୍ୟର ପରିପନ୍ଥୀ ହୋଇଛି ଆମର ପାରିବାରିକ ଜଂଜାଳ। ଇଶ୍ୱର ତହିଁରୁ ମୁକ୍ତିଦେଲେ ମୁଁ ସଂପୂର୍ଣ୍ଣ ଆତ୍ମନିୟୋଗ କରିବି ମୋର ଲେଖାରେ। ସରସ୍ୱତୀ ଦେବୀ ମଧ୍ୟ ସ୍ୱାଭାବିକ ଅଛନ୍ତି। ଏବେ ଗ୍ରୀଷ୍ମଛୁଟିରେ ପୁଅବୋହୂ ନାତି

ନାତୁଣୀ ଘରେ। ସାନଝିଅ Suratରୁ ଆସି ଦୁଇମାସ ହେଲା ଅପେକ୍ଷା କରିଛି ଆଗନ୍ତୁକ ସନ୍ତାନ ପାଇଁ। ତା'ର ଝିଅଟିଏ ଅଛି। ପୁଣି ଗ୍ରୀଷ୍ମଛୁଟିରେ ଆହୁରି କେହି କନ୍ୟାମାନେ ଯେ କୌଣସି ଦିନ ଆସିବେ। ଏ ଭିଡ଼ ଏବଂ ଡ଼େଲିଭରୀ ଏ ମାସ ଶେଷ ସୁଦ୍ଧା ହୋଇଯିବା କଥା। ଗରମ ଭୟଙ୍କର; ଜଳାଭାବ ବି ଅଛି। ଆଶା, ଆପଣ ଭଲ ଥିବେ। ଶ୍ରୀମତୀ ଆଚାର୍ଯ୍ୟ ଓ ପିଲାଙ୍କୁ ସସ୍ନେହ ଶୁଭେଚ୍ଛା। ହଁ, (୧) ଧନପତି ବାବୁ ମାଧ୍ୟମ୍‌ରେ 'ଝଙ୍କାର' ଏବଂ ନୂଆ ବହିଟି ପଠାଇ ଦେବେ। ସେହି ଖଣ୍ଡିକ ମାତ୍ର ଆସିଛି। ମୋ ପାଖକୁ। ନୂଆହୋଇ କରୁଣର ବିଚାର ପଢ଼ିଲେ କି ? କିପରି ଲାଗିଲା ? (୨) ସଂବଲପୁରୀ ଭାଷାର ବୈଶିଷ୍ଟ୍ୟ ଉପରେ ପ୍ରାମାଣିକ ଆଲୋଚନା- ଚକ୍ର ବିଷୟରେ ମୋର ଉତ୍ସାହ କ୍ରମେ କ୍ଷୀଣ ହେଉଛି। ଆପଣ ଆମର ଭାଷାପଣ୍ଡିତ ମାନେ ଏ ତିନିମାସରେ ଖଣ୍ଡିଏ ହେଲେ ପ୍ରବନ୍ଧ ଦେଇନାହାନ୍ତି। ସ୍ମାରକପତ୍ରର ଶେଷ ନାହିଁ- ଆଶାର ଅନ୍ତ ନାହିଁ। ଅନେକ କଥା- ଯାହା ସମଝେଇ କରିବେ। ସାବଧାନ : 'ରାମ୍‌ରାହା' ମୁଖବନ୍ଧର କପି ରଖିନାହିଁ। ହଜିଲେ ଦୁଃଖର ବିଷୟ ହେବ। ମୋ ପାଖକୁ ଏ କପି ଛପା କରି ଆସିଲେ ମୋର କଳ୍ପିତ ବହିରେ ସ୍ଥାପିତ ହେବ। କିଛି ଅଂଶ ଛାଡ଼ିଦେଲେ ମଧ୍ୟ ମୂଳ କପି କିମ୍ବା ତାହାର ନକଲ ଦେଇ ଅନୁଗୃହୀତ କରିବେ।

ସ୍ନେହାଧୀନ

ଗୋବିନ୍ଦ ଉଦ୍‌ଗାତା

ଗୋପାଳମାଳ, ସଂବଲପୁର।

୧୦.୦୬.୧୯୯୬

□□□

(ଗୋବିଂଦ ଚଂଦ୍ର ଉଦ୍‌ଗାତା ଲେଖିଥିବା ରାମରାହାର ପ୍ରଥମ ପହାଚ ତଳେ ରାମରାହାର ମୁଖବଂଧ ଭାବରେ ରହିଛି । ମାତ୍ର ହେମଚଂଦ୍ର ଆଚାର୍ଯ୍ୟଙ୍କ ଉଦ୍ଦେଶ୍ୟରେ ତାଙ୍କଦ୍ୱାରା ଲିଖିତ ପତ୍ରଟି ନାହିଁ । ଯେହେତୁ ଉଭୟଟି ମଧ୍ୟରେ ସଂପର୍କ ଅଛି, ପତ୍ରଟିକୁ ଏଠାରେ ରଖାଗଲା)

# ନାମ ହେମଚନ୍ଦ୍ର, ଗ୍ରାମ ଗର୍ଦ୍ଦଣା

ଅଭିରାମ ବିଶ୍ୱାଳ

ଶ୍ରୀଯୁକ୍ତ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ (୨୦।୦୪।୧୯୨୬-୨୬।୦୮।୨୦୦୯) ନାଁ କିଛିବର୍ଷ ତଳେ ପ୍ରଥମେ ଯେବେ ମୁଁ ଶୁଣିଥିଲି ଓ ପରେ ସେଇ ନାମଧାରୀ ଭଦ୍ରବ୍ୟକ୍ତି ଜଣଙ୍କୁ ପ୍ରଥମେ ଯେତେବେଳେ ଭେଟିଥିଲି, ଉଭୟଟି ଘଟିଥିଲା ଗୋଟିଏ ପରିଚୟ୍ ବାଟ ଦେଇ-ସାହିତ୍ୟିକ ଓ ଐତିହାସିକ ରୂପେ ଜଣାଶୁଣା ପ୍ରୀତୀଶ ଆଚାର୍ଯ୍ୟଙ୍କ ବାପା ଭାବେ। ପ୍ରୀତୀଶ ମୋର ଅନ୍ୟତମ ପ୍ରାଚୀନ ଓ ପରମ ମିତ୍ର। ହେଲେ ଏବେ ମୁଁ ଭାବୁଛି କହିବା ନିଶ୍ଚୟ୍ ଉଚିତ ଓ ଅଧିକ ଠିକ୍ ହେବ ଯେ ପ୍ରୀତୀଶ ହେମଚନ୍ଦ୍ରଙ୍କ ପୁଅ ଭାବେ ସବୁବେଳେ ପରିଚିତ ହେବେ। ପିତାଙ୍କ ସରଳ, ତରଳ, ପ୍ରାଞ୍ଜଳ ଓ ଭାବବହୁଳ ଭାଷାକୁ ଏବେ ବି ଈର୍ଷା କରନ୍ତି ପୁତ୍ର।

ଶିକ୍ଷକ, ସରକାରୀ କର୍ମଚାରୀ, କୃଷକ, ଲେଖକ, ଗୃହସ୍ଥ, ସାମାଜିକ କର୍ମୀ, ସମାଜବାଦୀ, ସଂସ୍କୃତି ରସିକ ଓ ରାଜନେତା- ଏସବୁର ଏକାୟନ ଓ ସଂଗମ ହେମଚନ୍ଦ୍ର; ସାଧ୍ୟମତେ ଏସବୁ ବୈଶିଷ୍ଟ୍ୟକୁ ଧରି ରଖିବାକୁ ଚେଷ୍ଟା କରିଛନ୍ତି। ସାହିତ୍ୟ ତାଙ୍କ ପାଇଁ ଖାଲି ସାମୟିକ ଓ ଅସଂଲଗ୍ନ ଲେଖାଲେଖି ନଥିଲା; ଥିଲା ନିରବଚ୍ଛିନ୍ନ ଓ ଲୋକସାନ୍ନିଧ୍ୟମୟ୍ ସାରସ୍ୱତ ତପସ୍ୟା ଓ ସାଧନା। ତାହା ପୁଣି ନିଜ ଗାଁ ବରଗଡ଼ ଜିଲ୍ଲାର ଗର୍ଦ୍ଦଣାରେ ବାସବାସ, ସଂସାରୀର ଜୀବନଜଞ୍ଜାଳ, ପଲ୍ଲୀ ପରିବେଶ ଓ ପ୍ରତିକୂଳ ପରିସ୍ଥିତି ଭିତରେ ଥାଇ।

ଜଣେ ପ୍ରକୃତ ଦ୍ୱିଭାଷୀ ଲେଖକ ବା ଲେଖିକାଙ୍କ କ୍ଷେତ୍ରରେ ଦେଖାଯାଏ ଯେ ତାଙ୍କର ଗୋଟିଏ ଭାଷାର ଉର୍ବରତା ଅନ୍ତରାଳେ ଅନ୍ୟ ଭାଷାଟି ସାର ବା ଖତର କାମ କରୁଥାଏ। ଉଭୟ୍ ସମ୍ବଲପୁରୀ/କୋଶଳୀ ଓ ଓଡ଼ିଆ ସାହିତ୍ୟରେ ସକ୍ରିୟ୍ ଥିବା ସାହିତ୍ୟ ସାଧକ ହେମଚନ୍ଦ୍ରଙ୍କ କ୍ଷେତ୍ରରେ ମୋଟାମୋଟି ତାହାହିଁ ଘଟିଛି। ସିଏ ଖାଲି କୋଶଳୀ ଓ ଓଡ଼ିଆ ଜାଣି ନଥିଲେ। ସଂସ୍କୃତ, ହିନ୍ଦୀ, ବଙ୍ଗଳା ଓ ଇଂଲିସ୍ ମଧ୍ୟ ଜାଣିଥିଲେ। ଗଙ୍ଗାଧର ମେହେରଙ୍କ ବନ୍ଧୁ, ଅପ୍ରକାଶିତ 'ସଂସ୍କୃତ ଭାଗବତ'ର ରଚୟିତା ପିତା ପଣ୍ଡିତ ତୋଲାମଣିଙ୍କ ପ୍ରଭାବ ତାଙ୍କ ଉପରେ ଥିଲା ଅତି ଗଭୀର।

ପ୍ରାୟ୍ ଷାଠିଏ ବର୍ଷ କାଳ ଲେଖନୀ ଚାଳନା କରିଥିବା ହେମଚନ୍ଦ୍ର ରାଶି ରାଶି ସାହିତ୍ୟ କୃତି ଛାଡ଼ି ଯାଇଛନ୍ତି। ତାଙ୍କର କେତୋଟି ଉଲ୍ଲେଖଯୋଗ୍ୟ ସାହିତ୍ୟକୃତି ହେଲା- 'ଶବରୀ ସନ୍ଦେଶ'(୧୯୬୫), 'ମହାରଥୀ କର୍ଣ୍ଣ' (୧୯୫୮), 'କୃଷ୍ଣକେଳି' (୧୯୬୩), 'କଥାନି ଲେଖେଁ ଲାଗସି' (୧୯୯୫), 'ରାମରାହା' (୨୦୦୧) ଓ 'ଗୀତିଗାଥା' (୨୦୦୮)। ବିଶିଷ୍ଟ ଚିନ୍ତକ, ଲେଖକ ଏବଂ ସମାଜବାଦୀ ପ୍ରବକ୍ତା ଓ କର୍ମୀ ତଥା ହେମଚନ୍ଦ୍ରଙ୍କ ରାଜନୀତିକ ଦୀକ୍ଷାଗୁରୁ କିଶନ ପଟନାୟକ ବାରମ୍ବାର

କହୁଥିଲେ ହେମବାବୁଙ୍କ ସାହିତ୍ୟର ରାଜନୀତି ଦିଗଟି ବେଶ୍ ଗୁରୁତ୍ୱପୂର୍ଣ୍ଣ। ଅର୍ଥାତ୍, ହେମଚନ୍ଦ୍ରଙ୍କ ସାହିତ୍ୟ କେବଳ ଅଣ ସାମାଜିକ କଳ୍ପନା ପ୍ରସୁତ

ନଥିଲା। ତାଙ୍କ ଲେଖାରେ ଯେ କିଛି ଦ୍ୱନ୍ଦ ନାହିଁ, ତାହା ନୁହେଁ। ନିଜର କ୍ଷୁଦ୍ର ପୌରାଣିକ କାବ୍ୟରେ ସିଏ ସଂସ୍କାରବାଦୀ ଓ ଧର୍ମପରାୟଣ, ହେଲେ ଆଧୁନିକ ଛନ୍ଦବଦ୍ଧ କବିତାରେ ବେଶ୍ ପରିବର୍ତ୍ତନକାମୀ ଓ ଧର୍ମନିରପେକ୍ଷ।

ବହୁ ବାଲ୍ମିକୀ ଓ ଅନେକ ରାମାୟଣ ପ୍ରସଙ୍ଗ ଆଜିକାଲି ଏକ ସ୍ୱୀକୃତ ସିଦ୍ଧାନ୍ତ। ରାମାୟଣ ଲେଖା ଏବେ ବି ଅବ୍ୟାହତ। ସମାନ୍ତରାଳ ଓ ବିକଳ୍ପ ନହେଲେ ମଧ୍ୟ ନିଜ ନିଜ ବାଗରେ ନିଆରା ଓ ସ୍ଥାନୀୟ ରାମାୟଣ ଲେଖିଛନ୍ତି ଏହି ରାମାୟଣକାରମାନେ। କାହିଁକି ନା ସ୍ଥାନୀୟ ହିଁ ବାସ୍ତବରେ ନିଖିଳ। ସମ୍ବଲପୁରୀ ଭାଷାରେ ହେମଚନ୍ଦ୍ର ଆଚାର୍ଯ୍ୟ ଲେଖିଥିବା ରାମାୟଣର ନାଁ ହେଲା 'ରାମରାହା' (ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ)। କୋଣଙ୍କୀ ବାଲ୍ମିକୀ ଭାବେ ପରିଚିତ ହେମଚନ୍ଦ୍ର 'ରାମରାହା'ର ପ୍ରସତୁତି ଓ ପରିକଳ୍ପନା କରିଥିଲେ ଗାଁ ଭାଗବତ ଟୁଙ୍ଗୀରେ, ଶ୍ରୋତାଙ୍କ ଗହଣରେ। ତାହାପରେ ପ୍ରକାଶିତ ହେଲା ଗ୍ରନ୍ଥ ଭାବେ ବୃହତ୍ତର ପାଠକ ସମାଜ ନିମନ୍ତେ। ହେମଚନ୍ଦ୍ରଙ୍କ 'ରାମରାହା'କୁ ବାଲ୍ମିକୀ ବା ଅନ୍ୟ କୌଣସି ରାମାୟଣର ଅନୁବାଦ ନ କହି ତାହା ଅନୁସୃଜନ ଶ୍ରେଣୀର ବୋଲି କହିହେବ। ଅନୁବାଦକୀୟ ଆନୁଗତ୍ୟ ଅପେକ୍ଷା ଲେଖକୀୟ ସ୍ୱାଧୀନତା ଅଧିକ ବାରିହୁଏ ସେ ପ୍ରୟାସରୁ।

'ଗୀତିଗାଥା'ରେ ନିଜ ବାପାଙ୍କ ବାବଦରେ ଠାଏ ସୂଚନା ଦେଇ ପ୍ରୀତୀଶ ଲେଖିଛନ୍ତି- 'ମା' କହେ, ଅନେକ ରାତିରେ ସେ (ବାପା) ଅଧରାତିରେ ଉଠି ଲେଖିବା ଆରମ୍ଭ କରିଦିଅନ୍ତି 'ରାମରାହା'। ଅନେକଥର ଲେଖିସାରି କାନ୍ଦନ୍ତି। କାରଣ ତାଙ୍କର ବିଶ୍ୱାସ ହୁଏନି ଯେ ସେହି ପଦ ବା ସର୍ଗର ସେ ନିଜେ ଲେଖକ। କିଏ ଯେମିତି ହାତ ଧରି ତାଙ୍କୁ ଲେଖାଇ ଦେଇଛି।' ବହୁ ଆୟାମୀ ଓ ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ହେମଚନ୍ଦ୍ରଙ୍କ ବିଶ୍ୱ ଦୃଷ୍ଟି ସ୍ପଷ୍ଟ ହୋଇଯାଏ 'ରାମରାହା'ର କେତୋଟି ପଦରୁ 'ସୁଖ୍‌ଦୁଖ୍ ସବୁ ଗୁଟେ/ଖାଲି ମନର ବିକାର/ଆତ୍ମାର ଆଁଖି ଦେଖଲେ ଦିଶନ/ଗୁଟେ ପରକାର/ କିଏ କାହାରି ବଇରି ନୁହେ/କିଏ କାହାର ମଇତର/କିଏ କାହାକେ ସୁଖ୍‌ଦୁଖ୍/ଦିଏ ନାହିଁ ଇହତର/ଆତ୍ମା ଆତ୍ମାର ବନ୍ଧୁଆଏ/ନୁହେ କେହେଁ ଶତରୁ/ଉପରେଁ ଉପଲି ପଡ଼ଲେ ନୁହେ/ଦେଖି ଜାନଲେ ଭିତରୁ।'

**କୋହ ଭିତରେ ବୁଡ଼ି ଦେଖ, ଦିଶୁଅଛି ଜଳଜଳ ଏବଂ ନିଜର ଅନ୍ତଃକରଣ ଆଉ କ'ଣ କି?**

□□□

# ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ହେତୁରେ

*ଗୌରୀଦାସ ପଧାନ*

ସମକାଳରେ ଲୋକେ କବିଙ୍କ କଥା ମନେ ରଖନ୍ତି କି ? କବିତା ବୁଝନ୍ତି କି ? କବିଙ୍କ ବିଷୟରେ ଖବର ରଖିବାପାଇଁ ସମୟ ପାଆନ୍ତି କି ? ସାହିତ୍ୟ ସାହିତ୍ୟ ହୋଇ ସମୟ ସାରୁଥିବା ଲୋକଙ୍କୁ ସମାଜ ଆଦର କରେ କି ? ସେମାନେ କେବେ ଗଲେ, କୁଆଡ଼େ ଗଲେ ଆମେ ଜାଣିବାକୁ ଚାହୁଁ କି ?

ଏଭଳି ପ୍ରଶ୍ନ ଗୁଡ଼ିକର ଉତ୍ତରରେ ହଁ / ନାହିଁ/ ଜାଣି ନାହୁଁ କହୁଥିବା ଉତ୍ତରଦାତାଙ୍କ ପାଇଁ ୬/୦୯/୨୦୦୯ରେ ବରଗଡ଼ ଜିଲ୍ଲା, ଗର୍ଭଣାଠାରେ ଆୟୋଜିତ ସ୍ମୃତିସଭା ଥିଲା ଏକ ସଠିକ୍ ଉତ୍ତର । ସାହିତ୍ୟ ସାଧନା ପାଇଁ, ମଣିଷ ପଣିଆ ଅର୍ଜନ ପାଇଁ ଜୀବନର ବହୁକାଳ ବିନିଯୋଗ କରିଥିବା ଜଣେ ସଚ୍ଚା ଗ୍ରାମୀଣ କବିଙ୍କ ସ୍ମୃତିରେ ସମର୍ପିତ ସଭାଟି ଦେଇଥିଲା ବହୁ ଅପଚରା ପ୍ରଶ୍ନମାନଙ୍କର ଉତ୍ତର ।

ସମ୍ବଲପୁରୀ/ କୋଶଲୀ ଓ ଓଡ଼ିଆ ଉଭୟ ଭାଷାରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରିଥିବା ସ୍ରଷ୍ଟା ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଉଦ୍ଦେଶ୍ୟରେ ଆୟୋଜିତ ଆସରଟି ଥିଲା ଅତ୍ୟନ୍ତ ଆବେଗସିକ୍ତ ଆର୍ଦ୍ର । ଭାବାପ୍ଳୁତ । ଗର୍ଭଣା ଗାଁ ମଣ୍ଡପରେ ଆୟୋଜିତ ଆସରଟି କହୁଥିଲା- ସ୍ମୃତି କେତେ ସ୍ମରଣୀୟ ହୋଇପାରେ, ଅତୀତ କେତେ ଅନ୍ତରଙ୍ଗ ହୋଇ ପାରେ, ସଂପର୍କ କେତେ ସଂକ୍ରାମକ ହୋଇପାରେ, ଭାବ କେତେ ଭାରି ହୋଇପାରେ, ଆୟୋଜନ କେତେ ଆବେଦନୀୟ ହୋଇ ପାରେ ।

ଆସରଟି ଆରମ୍ଭ ହୋଇଥିଲା ସମ୍ବଲପୁରୀ ସାହିତ୍ୟ ପରିଷଦ, ବରଗଡ଼ର ସାଧାରଣ ସଂପାଦକ ଉତ୍ପନ୍ନ ଭୋଇଙ୍କ ଆବାହନୀ ସୂଚନା ସହ । ଅଧ୍ୟକ୍ଷତା କରିଥିଲେ ପରିଷଦର ସଭାପତି ପ୍ରଫେସର ହୃଦମଣି ପ୍ରଧାନ, ସଂଯୋଜନା କରିଥିଲେ ଅଧ୍ୟାପକ, ନାଟ୍ୟକାର କେଶରଞ୍ଜନ ପ୍ରଧାନ । ସ୍ୱର୍ଗତ କବିଙ୍କ ଚିତ୍ରପଟରେ ପୁଷ୍ପମାଲ୍ୟ, ଧୂପ, ଦୀପ ପ୍ରଦାନ ପରେ କବିଙ୍କର ଏକ ଭାବପୂର୍ଣ୍ଣ ସଂଗୀତକୁ ଗାନ କରି ପରିବେଶକୁ ଭାବମୟ କରି ଦେଇଥିଲେ କୃଷ୍ଣ ଚନ୍ଦ୍ର ପ୍ରଧାନ । ଅନ୍ତିମ କାଳରେ ଶୁଣିବାପାଇଁ ଇଚ୍ଛାକରି କବି ଲେଖିଥିବା ଗୀତଟି କହୁଥିଲା କବିଙ୍କ ଭକ୍ତିଭାବାଶ୍ରିତ ଅଭିଳାଷର କଥା । ସଂଗୀତର ସଂବେଦନରେ କବିସ୍ମୃତି ଆବୋରି ବସିଥିଲା ସମଗ୍ର ଆସରକୁ ।

ଦ୍ୱାଦଶାହରେ ତାଙ୍କ ସ୍ମୃତିରେ ପ୍ରକାଶିତ "ସର୍‌ଧା ଫୁଲ"କୁ ଲୋକାର୍ପଣ କରିଥିଲେ "ଭରନୀ" ପରିବାର ସମ୍ବଲପୁରରୁ ଶ୍ୟାମ ସୁନ୍ଦର ଧର। ଲୋକାର୍ପଣରେ ସାମିଲ୍ ହୋଇଥିଲେ ଦ୍ୱାରିକାନାଥ ନାୟକ, ଦିଲୀପ ପାଢ଼ୀ, ଉପେନ୍ଦ୍ର ଭୋଇ, ଧନପତି ମହାପାତ୍ର, କେଶ ରଂଜନ ପ୍ରଧାନ, ହୃଦମଣି ପ୍ରଧାନ ପ୍ରମୁଖ। ସୁଦୃଶ୍ୟ ଶୋଭନରେ ପ୍ରକାଶିତ, ୩୧ ଜଣ ଲେଖକଙ୍କ ସ୍ମୃତିଲେଖକୁ ନେଇ ୮୮ ପୃଷ୍ଠାରେ ସଂକଳିତ ସ୍ମରଣିକାଟି ସ୍ମରଣ କରାଉଥିଲା କବିଙ୍କ ପ୍ରତି ଅନୁରାଗୀଙ୍କ ସ୍ନେହ, ଶ୍ରଦ୍ଧାକୁ। ପ୍ରାରମ୍ଭିକ ପର୍ବ ପରେ ସଂଯୋଜକ କେଶରଂଜନ ଉପସ୍ଥିତ ହେମଚନ୍ଦ୍ର ପ୍ରେମୀଙ୍କୁ ସ୍ମୃତି ଚାରଣ, ଭାବଚର୍ଚ୍ଚା, ସଂପର୍କ ଅନୁଶୀଳନ ସଂକ୍ଷେପରେ ଚର୍ଚ୍ଚା କରିବା ପାଇଁ ନିମନ୍ତ୍ରଣ କରିଥିଲେ। ସ୍ମୃତିଚର୍ଚ୍ଚାର ସ୍ମରଣୀୟ ଅଧ୍ୟାୟ ଆରମ୍ଭ ହୋଇଥିଲା।

ସ୍ମୃତିମାନେ ସଂଖୋଳିଥିଲେ- ସାହିତ୍ୟିକ ହେମଚନ୍ଦ୍ରଙ୍କୁ, କବି ହେମଚନ୍ଦ୍ରଙ୍କୁ, ଗାଳ୍ପିକ ହେମଚନ୍ଦ୍ରଙ୍କୁ, ଗୀତିକାର ହେମଚନ୍ଦ୍ରଙ୍କୁ, "ରାମ୍ ରାହା"ର ହେମଚନ୍ଦ୍ରଙ୍କୁ, ସଂଚାର ଗୀତ ଲେଖିଥିବା ହେମଚନ୍ଦ୍ରଙ୍କୁ, ସଂକୀର୍ତ୍ତନ୍ୟ ଦଳଙ୍କ ପାଇଁ ଗୀତ ଲେଖିଥିବା ହେମଚନ୍ଦ୍ରଙ୍କୁ, ନାଟ୍ୟକାର ହେମଚନ୍ଦ୍ରଙ୍କୁ, ରାଜନୀତିଜ୍ଞ ହେମଚନ୍ଦ୍ରଙ୍କୁ, ସମାଜ-ସଂସ୍କାରକ ହେମଚନ୍ଦ୍ରଙ୍କୁ, ଶିକ୍ଷା ପ୍ରେମୀ ହେମଚନ୍ଦ୍ରଙ୍କୁ, କୃଷକ ହେମଚନ୍ଦ୍ରଙ୍କୁ, ଆଜୀବନ ସମାଜବାଦୀ ହେମଚନ୍ଦ୍ରଙ୍କୁ, ଦରଦୀ-ସ୍ନେହୀ ହେମଚନ୍ଦ୍ରଙ୍କୁ। ସ୍ୱଳ୍ପ ସମୟରେ କବିଙ୍କ ସମଗ୍ର ସତ୍ତାକୁ ସଂବୋଧିବାର ସଂକଳ୍ପରେ ସଂଚରିତ ହେଉଥିଲେ ଉଚ୍ଚାରଣମାନେ। ହୃଦୟର ଭାବ ଓଠ ବାଟ ଦେଇ ଧ୍ୱନି ରୂପ ଘେନୁଥିବା ବେଳେ ସମ୍ମୋହିତ ହେଉଥିଲା ସଭା। ସଂବେଦିତ ହେଉଥିଲେ ସଭାଜନମାନେ। ବିଗଳିତ ହେଉଥିଲେ ଅଶ୍ରୁ ବିନ୍ଦୁମାନେ। ବିସ୍ତାର ଖୋଜୁଥିଲା ସ୍ମୃତି।

କବିଙ୍କ ବିୟୋଗ ସମ୍ବଲପୁରୀ ସାହିତ୍ୟ ସଂସ୍କୃତି ପାଇଁ ଏକ ଶୂନ୍ୟ ସ୍ଥାନ ସୃଷ୍ଟି କଲା ବୋଲି କହିଥିଲେ ସମ୍ବଲପୁରରୁ ଆସିଥିବା ଲୋକ କବି ରତ୍ନ ହଳଧର ନାଗ ସାଂସ୍କୃତିକ ପରିଷଦ ତଥା 'ଭରନୀ' ସାହିତ୍ୟ ପତ୍ରିକା ପ୍ରକାଶନ ମଣ୍ଡଳୀର ଶ୍ୟାମ ସୁନ୍ଦର ଧର, ଦ୍ୱାରିକାନାଥ ନାୟକ, ଦିଲୀପ ପାଢ଼ୀ। 'ଭରନୀ' ପ୍ରଚ୍ଛଦ ପୃଷ୍ଠାରେ ଏକଦା କବିଙ୍କ ଫଟୋ ପ୍ରକାଶିତ ହୋଇଥିଲା। କବିଙ୍କ ଗଳ୍ପ ଓ ଉପନିଷଦ୍‌ର ଅଇପ କଥାକୁ ପ୍ରକାଶ କରିଥିଲା ଭରନୀ ପୃଷ୍ଠା। ସେ ସମସ୍ତ ସ୍ମୃତି ଶବ୍ଦରେ ରୂପ ଘେନୁଥିଲେ ସ୍ମୃତି ସଭାରେ।

୧୯୭୬ ମସିହାରେ ଗୋଷ୍ଠୀ ଉନ୍ନୟନ ବିଭାଗରୁ ସରକାରୀ ଚାକିରି ଛାଡ଼ିଲା ପରେ ଗର୍ଭଣାକୁ ଗଡ଼ କରି ସେ କରୁଥିଲେ ରାଜନୀତି। ରାଜନୀତିର ସୂତ୍ରରେ ପରବର୍ତ୍ତୀ

ସମୟରେ ସଂପର୍କରେ ଆସିଥିଲେ ବହୁ ରାଜନୈତିକ ବ୍ୟକ୍ତି । ଜନମତ ନିର୍ବିଶେଷରେ ସମସ୍ତଙ୍କ ସହ ଥିଲା ତାଙ୍କ ସୁସଂପର୍କ । ସେହି ସଂପର୍କର ଆକର୍ଷଣରେ ଆସିଥିଲେ ପୂର୍ବତନ ମନ୍ତ୍ରୀ ତଥା ବରଗଡ଼ ବିଧାୟକ ଆନନ୍ଦ ଆଚାର୍ଯ୍ୟ, ପୂର୍ବତନ ମନ୍ତ୍ରୀ ବିମ୍ବାଧର କୁଅଁର, ବର୍ତ୍ତମାନର ଭଟଲି ବିଧାୟକ ସୁଶାନ୍ତ କୁମାର ସିଂ, ପୂର୍ବତନ ଲୋକସଭା ସାଂସଦ ଶ୍ରୀବଲ୍ଲଭ ପାଣିଗ୍ରାହୀ । କହୁଥିଲେ, କେଉଁ ଭଳି ଭାବରେ କବି ରାଜନୀତିରୁ ଊର୍ଦ୍ଧ୍ୱରେ ରହି ରାଜନୀତି କରୁଥିଲେ, ସବୁ ଦଳ ସବୁ ମତ ସହ ସଂପର୍କ ରଖୁଥିଲେ ହେଲେ ମୌଳିକତାକୁ ବଜାୟ ରଖୁଥିଲେ, ଦରକାର ପଡ଼ିଲେ ଜନ ଜାଗରଣର ଅଗ୍ରଭାଗରେ ରହି କିଭଳି ଦୃଢ଼ ପଦକ୍ଷେପ ନେଉଥିଲେ ।

ଗାଁର ସାଂସ୍କୃତିକ ବାତାବରଣକୁ ସଂଗଠିତ କରିବା ପାଇଁ ଯେମିତି ନାଟକ ଲେଖିଥିଲେ, ସଂଗୀର ଦଳଙ୍କ ପାଇଁ ସେମିତି ଗୀତ ଲେଖିଥିଲେ । ସେଦିନର ସଂଗୀର ଗାୟକ ଜଣେ କ୍ଷେତ୍ର ବେହେରା । ଚାଲିବାର ସାମର୍ଥ୍ୟ ନାହିଁ, ଆଖିକୁ ଭଲ ଦେଖା ଯାଉ ନାହିଁ, ମଣ୍ଡପର ଖମ୍ବକୁ ଆଉଜି ହୋଇ ବସିଲେ । ସଂଯୋଜକ କେଶ ସଂଜନ ମାଇକ୍ରୋଫୋନ୍‌ଟିକୁ ତାଙ୍କ ମୁହଁ ପାଖରେ ଧରିବାରୁ ଯେଉଁ ଭାବପୂର୍ଣ୍ଣ ସ୍ୱରରେ, ନିର୍ଭୁଲ ତାଳ ଲୟ ଛନ୍ଦରେ, କବିଙ୍କ କୃତିରୁ ତିନୋଟି ଗୀତ ଗାଇଲେ ତାହା କେତେ ଆବେଗ ସଂଚାରୀଥିଲା ଶୁଣିଥିବା ଲୋକେ ହିଁ କହିବେ । କ୍ଷେତ୍ରଙ୍କ କଣ୍ଠରେ ବଡ଼ ସୁନ୍ଦର ଶୁଭୁଥିଲା-

"ମହାପୁରୁ ଛନେ ଠହର ମୁଇଁ ବନ୍‌ଏ କରି ଦେଓଁ ନୁହେଁ
କେନ୍ ଢେହେରା କେତେବେଲେଁ ଭୁଲି ହେବା ଭାଏଲ୍ ଭୂଲେଁ ଭୂଲେଁ"

ସ୍ମୃତିସଭା ଭାବର ସଭା ହୋଇ ଯାଉଥିଲା ସଂଗୀତ ପରିବେଷଣର ତନ୍ମୟତାରେ ।

କବିଙ୍କ ଅନେକ କୃତି ଭିତରେ "କୃଷ୍ଣ କେଳି" ଅନ୍ୟତମ । ପଶ୍ଚିମାଞ୍ଚଳର ଏକ ଲୋକନାଟ୍ୟ ଦଣ୍ଡରେ ହେମଚନ୍ଦ୍ର ସମନ୍ୱୟର ସଂପୃକ୍ତ ହୋଇ ଲେଖିଥିଲେ "କୃଷ୍ଣ କେଳି" । ୧୯୬୩ରେ । ତାକୁ ନିର୍ଦ୍ଦେଶନା ମଧ୍ୟ ଦେଇଥିଲେ । ବୁଢ଼ୋମାଳ (ଘର୍ଷଣ ଠାରୁ ୧୨-୧୪ କି.ମି. ଦୂରବର୍ତ୍ତୀ)ର ଯେଉଁମାନେ ସେତେବେଳେ କୃଷ୍ଣ କେଳିରେ କୃଷ୍ଣ ଓ ରାଧା ଭୂମିକାରେ ଅଭିନୟ କରୁଥିଲେ ସେମାନେ ଆସିଥିଲେ ସ୍ମୃତି ସଭାକୁ । ବୟସ ଗଡ଼ିଛି, ହେଲେ ସେଦିନର ସ୍ମୃତି ସବୁ ସତେଜ ଅଛି । ଅମ୍ଳାନ ଅଛି । ଆଉ ନିର୍ଭୁଲ ଭାବେ ସ୍ୱର ଲୟ ତାଳ ସହ ଗାଉଥିଲେ "କୃଷ୍ଣ କେଳି"ରୁ ଛାନ୍ଦମାନ । "କୃଷ୍ଣ କେଳି"ର ପଦ ଗାନ ସହ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥିଲେ କବିଙ୍କୁ । ଦ୍ରିହ୍ନାଉଥିଲେ କବିଙ୍କ ପରିଚୟର

ଆଉ ଏକ ଫର୍ଦ୍ଦକୁ ।

ସମଗ୍ର ପଶ୍ଚିମାଞ୍ଚଳର ଏକ ଅନନ୍ୟ ଲୋକକଳା ସଂଚାର । ସଂଚାର ବାହାକମାନେ ଗାଉଥିଲେ ୰ବାଲଜୀ ମେହେର, ୰କପିଳ ମହାପାତ୍ରଙ୍କ ଗୀତ । ସେମାନଙ୍କ ପାଇଁ ହେମଚନ୍ଦ୍ର ବି ଲେଖିଥିଲେ ଗୀତ, ଗୀତି ଗାଥା, ଭଜନ, ଜଣାଣ । ତାଙ୍କ ଲେଖାକୁ ସଂଚାର ମଣ୍ଡଳୀ ମାନଙ୍କରେ ପରିବେଷଣ କରି ଯେଉଁ ମାନେ ସୁଖ୍ୟାତି ଅର୍ଜନ କରୁଥିଲେ ସେମାନଙ୍କ ଭିତରୁ ଆସିଥିଲେ କେତେ ଜଣ । ସଂଚାର ବାହାକ କ୍ଷମା ସାଗର ପଧାନ, କବିଙ୍କ ସ୍ମୃତିଚାରଣ କରି ରାମଚନ୍ଦ୍ରଙ୍କ ମିଥିଲା ଯାତ୍ରାକାଳୀନ ପ୍ରସଂଗକୁ ବର୍ଣ୍ଣନା କଲାବେଳେ କବିଙ୍କ ବିଶେଷତ୍ୱକୁ ସୂଚେଇ ସଂଚାର ଶୈଳୀରେ ଗାୟନ କରି ଏକ ଅଲଗା ଅନୁଭବ ଦେଇଥିଲେ । ମହିଳା ସଂଚାର ବାହାକ ଶ୍ରୀମତୀ ବସନ୍ତ ଗଣ୍ଡ କବିଙ୍କୁ ଶ୍ରଦ୍ଧା ନିବେଦନ ସହ ଭକ୍ତି ପୂର୍ଣ୍ଣ ସ୍ୱରରେ କବିକୃତିରୁ ଗାଇଥିଲେ-

"ତୁଇଁ ଭଲେଁଥା ଭଗ୍‌ବାନ୍, ମୁଇଁ ପଛେ ଯାଏ ସିଁ ଦୁଃଖେଁ ମରି
ମୋର୍ ଭିତ୍‌ରେଁ ପରେ ତୁଇଁ ଅଛୁ ତବେ ବଅଁଚା କେନ୍ତା କରି ।"

ଏଭଳି ସଂଯୋଜନା ଅନ୍ୟ ଶୋକ ସଭାମାନଙ୍କଠୁଁ ଏହାର ଭିନ୍ନତାକୁ ପ୍ରତିପାଦିତ କରୁଥିଲା । ପ୍ରମାଣିତ କରୁଥିଲା ବିବିଧ ବର୍ଗର ଲୋକଙ୍କ ସହ କବିଙ୍କ ସଂପୃକ୍ତିର ଗଭୀରତାକୁ ।

କେତେଦୂର ଗର୍ଭଣାରୁ ଘେଁସ । ଆସିଥିଲେ ଅଭିମନ୍ୟୁ ସାହିତ୍ୟ ସଂସଦ ତରଫରୁ ଘେଁସରୁ ସୁବାସ ମେହେର । ଆସିଥିଲେ ଲୋକ କବି ରତ୍ନ ହଳଧର ନାଗ । କବିଙ୍କ ଉଦ୍ଦେଶ୍ୟରେ ସ୍ୱରଚିତ "ପୁନିଁ ଜହ୍ନ ଲେଖେଁ ଉଦିଛ କବି ହୋ/ ପୁଇନ୍ ଗାଁ ଗରଭନା/ ଛାନୀ ଗୁଡ଼୍ କରି ନେଇଁ ପାରେ/ ଚମତ୍‌କାର କଇ୍‌ପନା ହୋ/ କବି ସୁନାର୍ ଜହ୍ନ" ଗୀତକୁ ଲୋକ କବି ହଳଧର ଆବୃତ୍ତି କଲାବେଳେ ସଭା ମନ୍ତ୍ରମୁଗ୍ଧ ହେଉଥିଲା ।

କବିଙ୍କ ଜୀବଦଶାରେ ପାଳନ କରାଯାଉଥିଲା ଜୟନ୍ତୀ । ହେମଚନ୍ଦ୍ର ଆଚାର୍ଯ୍ୟ ଜୟନ୍ତୀ କମିଟିର ସଭାପତି ଅଚ୍ୟୁତାନନ୍ଦ ମହାପାତ୍ର, ଚାଷ ଓ ଚାଷୀର ସମସ୍ୟାକୁ ନେଇ କୃଷକ ହେମଚନ୍ଦ୍ରଙ୍କ ସହ ଭାବ ସଂପର୍କ ରଖିଥିବା ଚାଷୀନେତା ଶିବ ପ୍ରଧାନ, ବ୍ୟଙ୍ଗକବି ମନୋରଞ୍ଜନ ସାହୁ, ନୂଆ ଝରନ ପତ୍ରିକାର ସଂପାଦକ କିଶୋର ସାହୁ ପ୍ରମୁଖ କବିଙ୍କ ସହ ଭାବ ସଂପର୍କ, ଗୁଡ଼ି ସଂପର୍କର ଅଜଣା ଅଧ୍ୟାୟମାନ ଶୁଣାଉଥିଲେ । ସ୍ୱର୍ଗତ ଶିବ ପ୍ରସାଦ ପାଣ୍ଡିଆଙ୍କ "ରୁଦ୍ର ଆହ୍ୱାନ" ଛାପିଥିଲା କବିଙ୍କ ଶେଷ ସାକ୍ଷାତ୍‌କାର । ସେହି ସାକ୍ଷାତ୍‌କାର ନେଇ ଥିବା ରୁଦ୍ର ଆହ୍ୱାନର ସଂପାଦକ ବୀରେନ୍ଦ୍ର ଝାଂକର ଆସିଥିଲେ ବଲାଙ୍ଗୀରରୁ । ସାକ୍ଷାତ୍ ସଂଳାପକୁ ପଢ଼ି ଶୁଣାଇଥିଲେ

ସଭାଜନଙ୍କୁ । ସାହିତ୍ୟିକର କର୍ତ୍ତବ୍ୟ, ବର୍ତ୍ତମାନ ସାହିତ୍ୟର ଭବିଷ୍ୟତ ସଂପର୍କରେ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଚିନ୍ତନକୁ ଶୁଣୁଥିଲେ ସଭାଜନେ ।

ଆସିଥିଲେ ସମାଜସେବୀ ଭାଗବତ ପ୍ରସାଦ ନନ୍ଦ। ସୁଦୂର ସମ୍ବଲପୁରରୁ। କବିଙ୍କ ସବୁ ପରିଚୟ ମୂଳରେ ସଚ୍ଚାମଣିଷକୁ ସେ ଅନୁମାନ କରୁଥିଲେ ତାଙ୍କ ସ୍ମୃତି ସଂଜ୍ଞାପରେ।

୧୯୬୬ ମସିହାରେ ସୋସିଆଲିଷ୍ଟ ପାର୍ଟିରେ ଯୋଗଦାନ ପରେ ତାଙ୍କ ସଂପର୍କ ଗଭୀର ହୋଇଥିଲା କିଶନ ପଟ୍ଟନାୟକଙ୍କ ସହ। ପରବର୍ତ୍ତୀ କାଳରେ ଅନ୍ୟ ଦଳର ଲୋକଙ୍କ ସହ ସୁସଂପର୍କ ଥିଲେ ବି କବି ଥିଲେ ଆଜୀବନ ସମାଜବାଦୀ ଚିନ୍ତାଧାରାର। ସଂପର୍କ ରଖୁଥିଲେ ସମତାଭବନ ବରଗଡ଼ ସହ। ସେହି ପରିଚୟକୁ, ସମାଜବାଦୀ ଚିନ୍ତାଧାରାର ସଚ୍ଚୋଟ ମଣିଷକୁ ତାଙ୍କ ଆଚରଣରେ ଏବଂ କବି କର୍ମରେ ଖୋଜୁଥିଲେ ଚାଷୀନେତା ଲିଂଗରାଜ।

କବିଙ୍କ ବିକଳ୍ପ ଭାବନାର କଥା ଗୁଡ଼ିକୁ ମନେ ପକାଉଥିଲେ। କବିଙ୍କ ଜୟନ୍ତୀରେ ଘର୍ଘଣାଠାରେ ଏକ ଗଣପର୍ବର ଆୟୋଜନ ହେଉ ବୋଲି ପ୍ରସ୍ତାବ ରଖିଥିଲେ। ସ୍ୱରଚିତ କବିତାରେ କବିଙ୍କୁ ଦ୍ୱାଦଶାହର ଶ୍ରଦ୍ଧା ନିବେଦନ କରୁଥିଲେ କବି ପରମେଶ୍ୱର ବାଗ। ଖାସ୍ ହେମଚନ୍ଦ୍ର ସ୍ମୃତି ସଭାରେ ଯୋଗ ଦେବେ ବୋଲି, ଘର୍ଘଣାର ମାଟିରେ ଠିଆହୋଇ ଶ୍ରଦ୍ଧା ସ୍ଥାପନ କରିବେ ବୋଲି ଆସିଥିଲେ ବଲାଙ୍ଗୀରରୁ ପଣ୍ଡୁ କବି ସୁଶୀଲ ମିଶ୍ର, ଲୋକ ସଂସ୍କୃତିର ସଂଗ୍ରାହକ ତଥା ବ୍ୟଙ୍ଗ କବି ନିମାଇଁ ଚରଣ ପାଣିଗ୍ରାହୀ। ଆସିଥିଲେ ତରଭାରୁ କୋଶଲ ସାହିତ୍ୟ ଏକାଡ଼େମୀର ସଂପାଦକ। ଆସିଥିଲେ ଜୁହ୍ନାବାହ୍ନିନି, ବରପାଲିରୁ ନୂଆଁ ସକାଲ୍‌ର ସଂପାଦକ ଗୌରାଙ୍ଗ ପାଣ୍ଡେ। ଝାରସୁଗୁଡ଼ାରୁ ୧୨୨ କି.ମି. ଦୂରରୁ ଶିକ୍ଷାବିତ୍ ଗୌରୀଶଙ୍କର ତିୱାରୀ। ଏକଦା ତାଙ୍କର ବାସ ସ୍ଥାନ ଥିଲା ସୋହେଲା। ସୋହେଲା ଅଂଚଳରେ ଶିକ୍ଷାର ଉନ୍ନତି, ସୋହେଲା ମହାବିଦ୍ୟାଳୟ ସ୍ଥାପନରେ ସ୍ୱର୍ଗତ ଆଚାର୍ଯ୍ୟଙ୍କ ଭୂମିକା, ଆଂଚଳିକ ଶୈକ୍ଷିକ ବାତାବରଣର ବିକାଶରେ ତାଙ୍କ ଚିନ୍ତାର ବିନିଯୋଗକୁ ସ୍ମରଣ କରୁଥିଲେ ଗୌରିଶଙ୍କର ତିୱାରୀ ତାଙ୍କ ବକ୍ତବ୍ୟରେ। ସ୍ମରଣ କରୁଥିଲେ ସୋହେଲା କଲେଜର ଅଧ୍ୟାପକ, ତଥା ସୋହେଲା ସାହିତ୍ୟ ସଂସଦର ସଭାପତି ଟେକ ଚାନ୍ଦ ଦୁଆନ୍- ଗଙ୍ଗାଧର ଜୟନ୍ତୀରେ କବିଙ୍କ ଭାବପୂର୍ଣ୍ଣ ଲୋତକସ୍ରାବୀ ବକ୍ତବ୍ୟକୁ, ୧୯୮୦ ଐତିହାସିକ ଛାତ୍ର ଆନ୍ଦୋଳନ ବେଳେ ଏସ୍.ଡ଼ି.ଓ.କୁ ଦୁହି ହାତ ଦେଖାଇ ଦେବାର ଘଟଣାକୁ, ତାଙ୍କ ମଣିଷ ପଣିଆକୁ, ତା'ର ଦୁଃଖରେ ଦୁଃଖୀ ହୋଇ ଭୋ ଭୋ କାନ୍ଦିବାର କାନ୍ଦୁରା ଗୁଣକୁ।

କବିଙ୍କ ପରିଚୟ ପରିଧିରେ ଆଉ ଏକ ସ୍ଥିତି ଗୀତିକାର ହେମଚନ୍ଦ୍ର । ତାଙ୍କ ଗୀତ ଗୁଡ଼ିକୁ ସମୟ ସମୟରେ ଗାଉଥିଲେ ଆକାଶ ବାଣୀରେ କଣ୍ଠଶିଳ୍ପୀ ମାନେ । ତାଙ୍କ ଗୀତ ଗାଇଥିବା ଗାୟକମାନଙ୍କ ଭିତରୁ ଆସିଥିଲେ ମୋହନ ସେଠ୍, ମୋତିଲାଲ ଦୋରା । ଉଭୟେଁ କବିଙ୍କ ଗୀତ ଗାନ କରି ସ୍ମୃତି ଚର୍ଚ୍ଚା କରିଥିଲେ କବିଙ୍କର । ମୋହନ ସେଠ୍‌ଙ୍କ କଣ୍ଠରୁ "କାମ୍ କର କାମ୍ କର ଭାଇ କାମ୍ କର" ଏବଂ ମୋତିଲାଲ ଦୋରାଙ୍କ କଣ୍ଠରୁ "ମହା ପୁରୁ ଛନେ ଠହର" ଗୀତ ଶୁଣିଲା ପରେ ହେମଚନ୍ଦ୍ରଙ୍କ ହେତୁ ଆହୁରି ଆବେଗମୀୟ ହେଇଥିଲା ।

ସମ୍ବଲପୁରୀ ସାହିତ୍ୟର ସାଧକ ଭାବରେ, ଜଣେ ସ୍ନେହୀ ମଣିଷ ଭାବରେ ସେ ଯୋଡ଼ି ହୋଇଥିଲେ ସ୍ତର ନିର୍ବିଶେଷରେ ସବୁ ମଣିଷଙ୍କ ସହ । ଗାଆଁର, ଅଂଚଳର ସାଧାରଣ ମଣିଷଙ୍କ ସହ ଯେମିତି ସଂପର୍କ ରଖୁଥିଲେ ସେମିତି ସଂପର୍କ ରଖୁଥିଲେ ଉଚ୍ଚ ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନରତ, ସେବା ନିବୃତ୍ତ ଶିକ୍ଷକ, ଅଧ୍ୟାପକ, ପ୍ରାଧ୍ୟାପକ ମାନଙ୍କ ସହ । ସେଇଥି ପାଇଁ ଆସିଥିଲେ ଇଂରାଜୀ ପ୍ରଫେସର ମନ୍ତ୍ରା ଭୋଇ, ଜୟଦେବ ଚ଼ନ୍‌ସନା । ସଭାପତିତ୍ୱ କରୁଥିଲେ ନିଜେ ପ୍ରଫେସର ଚୂଡ଼ାମଣି ପ୍ରଧାନ । ସଭିଏଁ ଖୋଜୁଥିଲେ ଆଚାର୍ଯ୍ୟଙ୍କ ଭିତରେ ସ୍ରଷ୍ଟା ମଣିଷକୁ, ସ୍ନେହୀ ମଣିଷକୁ, ସଫଳ ମଣିଷକୁ ।

ଚୌକୀ ନ ଅଣ୍ଟିବାରୁ ତଳେ ବସି, ପଛ ପଟେ ଠିଆହୋଇ, ନିର୍ମାଣାଧୀନ ଜଗନ୍ନାଥ ମନ୍ଦିରରେ ବସି, ଗାଁର ଘର ପିଣ୍ଡାରେ ଛିଡ଼ା ହୋଇ ନିଶବ୍ଦରେ ହେମଚନ୍ଦ୍ରଙ୍କୁ ଶ୍ରଦ୍ଧା ସୁମନ ଜଣାଉଥିଲେ ଆଉ ମାନେ । ନ କହିବାର ମୌନତାରେ ବହୁ କଥା କହୁଥିଲା ତାଙ୍କ ଉପବେଶନ, ଶ୍ରଦ୍ଧାଳୁ ଶ୍ରୋତାପଣ, ବିଭୋର ମାନସିକତା । ନୀରବରେ, ନିଶବ୍ଦରେ ସେମାନେ ସ୍ମରଣ କରୁଥିଲେ ଆଚାର୍ଯ୍ୟ ଆଜ୍ଞାଙ୍କ ଗାଆଁ ପ୍ରତି/ ଅଂଚଳ ପ୍ରତି/ ପରିବାର ପ୍ରତି/ ବ୍ୟକ୍ତି ବିଶେଷଙ୍କ ପ୍ରତି ଥିବା ସ୍ନେହକୁ/ ସଦିଚ୍ଛାକୁ, କର୍ତ୍ତବ୍ୟ ସଚେତନାତାକୁ । ବର୍ଷାର ଅକସ୍ମାତ୍ ଉତ୍ପାତ ସତ୍ତ୍ୱେ ସଭା ଆଗକୁ ବଢୁଥିଲା । କେତେବେଳେ ସ୍ୱତଃସ୍ଫୁର୍ତ୍ତ ଭାବରେ, କେତେବେଳେ ସଂଯୋଜକଙ୍କ ନିମନ୍ତ୍ରଣ କ୍ରମେ ଆସୁଥିଲେ ହେମଚନ୍ଦ୍ର ଅନୁରାଗୀମାନେ/ ସ୍ମୃତି କଥା ବଖାଣିବା ବେଳେ/ ବେଳେ ବେଳେ ଲମ୍ବିଯାଉଥିଲା ବକ୍ତବ୍ୟ । ଅତି ଭଦ୍ର ଭାବରେ ପାଖରେ ଛିଡ଼ା ହେଉଥିଲେ ସଂଯୋଜକ । ଏତେ ସତର୍କ ସଂଯୋଜନା ସତ୍ତ୍ୱେ ପୂର୍ବାହ୍ନରେ ଆରମ୍ଭ ସଭା ଲମ୍ବି ଯାଇଥିଲା ଅପରାହ୍ନ ଯାଏଁ ।

ସରି ସରି ଆସୁଥିଲା ସଭା । ଲମ୍ବି ଲମ୍ବି ଯାଉଥିଲା ସଂପର୍କର ବ୍ୟାସାର୍ଦ୍ଧ । ଆହୁରି

ସଭାଜନଙ୍କୁ । ସାହିତ୍ୟିକର କର୍ତ୍ତବ୍ୟ, ବର୍ତ୍ତମାନ ସାହିତ୍ୟର ଭବିଷ୍ୟତ ସଂପର୍କରେ ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଚିନ୍ତନକୁ ଶୁଣୁଥିଲେ ସଭାଜନେ ।

ଆସିଥିଲେ ସମାଜସେବୀ ଭାଗବତ ପ୍ରସାଦ ନନ୍ଦ। ସୁଦୂର ସମ୍ବଲପୁରରୁ। କବିଙ୍କ ସବୁ ପରିଚୟ ମୂଳରେ ସଚ୍ଚାମଣିଷକୁ ସେ ଅନୁମାନ କରୁଥିଲେ ତାଙ୍କ ସ୍ମୃତି ସଂଳାପରେ।

୧୯୭୬ ମସିହାରେ ସୋସିଆଲିଷ୍ଟ ପାର୍ଟିରେ ଯୋଗଦାନ ପରେ ତାଙ୍କ ସଂପର୍କ ଗଭୀର ହୋଇଥିଲା କିଶନ ପଟ୍ଟନାୟକଙ୍କ ସହ। ପରବର୍ତ୍ତୀ କାଳରେ ଅନ୍ୟ ଦଳର ଲୋକଙ୍କ ସହ ସୁସଂପର୍କ ଥିଲେ ବି କବି ଥିଲେ ଆଜୀବନ ସମାଜବାଦୀ ଚିନ୍ତାଧାରାର। ସଂପର୍କ ରଖୁଥିଲେ ସମତାଭବନ ବରଗଡ଼ ସହ। ସେହି ପରିଚୟକୁ, ସମାଜବାଦୀ ଚିନ୍ତାଧାରାର ସଚ୍ଚୋଟ ମଣିଷକୁ ତାଙ୍କ ଆଚରଣରେ ଏବଂ କବି କର୍ମରେ ଖୋଜୁଥିଲେ ଚାଷୀନେତା ଲିଂଗରାଜ।

କବିଙ୍କ ବିକଳ୍ପ ଭାବନାର କଥା ଗୁଡ଼ିକୁ ମନେ ପକାଉଥିଲେ। କବିଙ୍କ ଜୟନ୍ତୀରେ ଗର୍ଡ୍ଡଣାଠାରେ ଏକ ଗଣପର୍ବର ଆୟୋଜନ ହେଉ ବୋଲି ପ୍ରସ୍ତାବ ରଖିଥିଲେ। ସ୍ୱରଚିତ କବିତାରେ କବିଙ୍କୁ ଦ୍ୱାଦଶାହର ଶ୍ରଦ୍ଧା ନିବେଦନ କରୁଥିଲେ କବି ପରମେଶ୍ୱର ବାଗ। ଖାସ୍ ହେମଚନ୍ଦ୍ର ସ୍ମୃତି ସଭାରେ ଯୋଗ ଦେବେ ବୋଲି, ଗର୍ଡ୍ଡଣାର ମାଟିରେ ଠିଆହୋଇ ଶ୍ରଦ୍ଧା ଜ୍ଞାପନ କରିବେ ବୋଲି ଆସିଥିଲେ ବଲାଙ୍ଗୀରରୁ ପଶୁ କବି ସୁଶୀଲ ମିଶ୍ର, ଲୋକ ସଂସ୍କୃତିର ସଂଗ୍ରାହକ ତଥା ବ୍ୟଙ୍ଗ କବି ନିମାଇଁ ଚରଣ ପାଣିଗ୍ରାହୀ। ଆସିଥିଲେ ତରଭାରୁ କୋଶଲ ସାହିତ୍ୟ ଏକାଡ଼େମୀର ସଂପାଦକ। ଆସିଥିଲେ ଜୁହ୍ନାବାହ୍ନିନି, ବରପାଲିରୁ ନୂଆଁ ସକାଲ୍‌ର ସଂପାଦକ ଗୌରାଙ୍ଗ ପାଣ୍ଡେ। ଝାରସୁଗୁଡ଼ାରୁ ୧୨୨ କି.ମି. ଦୂରରୁ ଶିକ୍ଷାବିତ୍ ଗୌରୀଶଙ୍କର ତିୱାରୀ। ଏକଦା ତାଙ୍କର ବାସ ସ୍ଥାନ ଥିଲା ସୋହେଲା। ସୋହେଲା ଅଂଚଳରେ ଶିକ୍ଷାର ଉନ୍ନତି, ସୋହେଲା ମହାବିଦ୍ୟାଳୟ ସ୍ଥାପନରେ ସ୍ୱର୍ଗତ ଆଚାର୍ଯ୍ୟଙ୍କ ଭୂମିକା, ଆଂଚଳିକ ଶୈକ୍ଷିକ ବାତାବରଣର ବିକାଶରେ ତାଙ୍କ ଚିନ୍ତାର ବିନିଯୋଗକୁ ସ୍ମରଣ କରୁଥିଲେ ଗୌରିଶଙ୍କର ତିୱାରୀ ତାଙ୍କ ବକ୍ତବ୍ୟରେ। ସ୍ମରଣ କରୁଥିଲେ ସୋହେଲା କଲେଜର ଅଧ୍ୟାପକ, ତଥା ସୋହେଲା ସାହିତ୍ୟ ସଂସଦର ସଭାପତି ଟେକ ଚାନ୍ଦ ଦୁଆନ୍- ଗଙ୍ଗାଧର ଜୟନ୍ତୀରେ କବିଙ୍କ ଭାବପୂର୍ଣ୍ଣ ଲୋତକସ୍ରାବୀ ବକ୍ତବ୍ୟକୁ, ୧୯୮୦ ଐତିହାସିକ ଛାତ୍ର ଆନ୍ଦୋଳନ ବେଳେ ଏସ୍.ଡ଼ି.ଓ.କୁ ଦୁହି ହାତ ଦେଖାଇ ଦେବାର ଘଟଣାକୁ, ତାଙ୍କ ମଣିଷ ପଣିଆକୁ, ତା'ର ଦୁଃଖରେ ଦୁଃଖୀ ହୋଇ ଭୋ ଭୋ କାନ୍ଦିବାର କାନ୍ଦୁରା ଗୁଣକୁ।

କବିଙ୍କ ପରିଚୟ ପରିଧିରେ ଆଉ ଏକ ସ୍ଥିତି ଗୀତିକାର ହେମଚନ୍ଦ୍ର । ତାଙ୍କ ଗୀତ ଗୁଡ଼ିକୁ ସମୟ ସମୟରେ ଗାଉଥିଲେ ଆକାଶ ବାଣୀରେ କଣ୍ଠଶିଳ୍ପୀ ମାନେ । ତାଙ୍କ ଗୀତ ଗାଇଥିବା ଗାୟକମାନଙ୍କ ଭିତରୁ ଆସିଥିଲେ ମୋହନ ସେଠ୍, ମୋତିଲାଲ ଦୋରା । ଉଭୟେ କବିଙ୍କ ଗୀତ ଗାନ କରି ସ୍ମୃତି ଚର୍ଚ୍ଚା କରିଥିଲେ କବିଙ୍କର । ମୋହନ ସେଠ୍ଙ୍କ କଣ୍ଠରୁ "କାମ୍ କର କାମ୍ କର ଭାଇ କାମ୍ କର" ଏବଂ ମୋତିଲାଲ ଦୋରାଙ୍କ କଣ୍ଠରୁ "ମହା ପୁରୁ ଛନେ ଠହର" ଗୀତ ଶୁଣିଲା ପରେ ହେମଚନ୍ଦ୍ରଙ୍କ ହେତୁ ଆହୁରି ଆବେଗନୀୟ ହେଉଥିଲା ।

ସମ୍ବଲପୁରୀ ସାହିତ୍ୟର ସାଧକ ଭାବରେ, ଜଣେ ସ୍ନେହୀ ମଣିଷ ଭାବରେ ସେ ଯୋଡ଼ି ହୋଇଥିଲେ ସ୍ତର ନିର୍ବିଶେଷରେ ସବୁ ମଣିଷଙ୍କ ସହ । ଗାଁର, ଅଂଚଳର ସାଧାରଣ ମଣିଷଙ୍କ ସହ ଯେମିତି ସଂପର୍କ ରଖୁଥିଲେ ସେମିତି ସଂପର୍କ ରଖୁଥିଲେ ଉଚ୍ଚ ବିଦ୍ୟାଳୟ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନରତ, ସେବା ନିବୃତ୍ତ ଶିକ୍ଷକ, ଅଧ୍ୟାପକ, ପ୍ରାଧ୍ୟାପକ ମାନଙ୍କ ସହ । ସେଇଥି ପାଇଁ ଆସିଥିଲେ ଇଂରାଜୀ ପ୍ରଫେସର ମନ୍ତ୍ରୀ ଭୋଇ, ଜୟଦେବ ଡ଼ନ୍‌ସନା । ସଭାପତିତ୍ୱ କରୁଥିଲେ ନିଜେ ପ୍ରଫେସର ହୃଦମଣି ପ୍ରଧାନ । ସଭିଏଁ ଖୋଜୁଥିଲେ ଆଚାର୍ଯ୍ୟଙ୍କ ଭିତରେ ସ୍ରଷ୍ଟା ମଣିଷକୁ, ସ୍ନେହୀ ମଣିଷକୁ, ସଫଳ ମଣିଷକୁ ।

ଚୌକୀ ନ ଅଣ୍ଟିବାରୁ ତଳେ ବସି, ପଛ ପଟେ ଠିଆହୋଇ, ନିର୍ମାଣାଧୀନ ଜଗନ୍ନାଥ ମନ୍ଦିରରେ ବସି, ଗାଁର ଘର ପିଣ୍ଡାରେ ଛିଡ଼ା ହୋଇ ନିଶବ୍ଦରେ ହେମଚନ୍ଦ୍ରଙ୍କୁ ଶ୍ରଦ୍ଧା ସୁମନ ଜଣାଉଥିଲେ ଆଉ ମାନେ । ନ କହିବାର ମୌନତାରେ ବହୁ କଥା କହୁଥିଲା ତାଙ୍କ ଉପବେଶନ, ଶ୍ରଦ୍ଧାଳୁ ଶ୍ରୋତାପଣ, ବିଭୋର ମାନସିକତା । ନୀରବରେ, ନିଶବ୍ଦରେ ସେମାନେ ସ୍ମରଣ କରୁଥିଲେ ଆଚାର୍ଯ୍ୟ ଆଜ୍ଞାଙ୍କ ଗାଆଁ ପ୍ରତି/ ଅଂଚଳ ପ୍ରତି/ ପରିବାର ପ୍ରତି/ ବ୍ୟକ୍ତି ବିଶେଷଙ୍କ ପ୍ରତି ଥିବା ସ୍ନେହକୁ/ ସଦିଚ୍ଛାକୁ, କର୍ତ୍ତବ୍ୟ ସଚେତନାତାକୁ । ବର୍ଷାର ଅକସ୍ମାତ୍ ଉତ୍ପାତ ସତ୍ତ୍ୱେ ସଭା ଆଗକୁ ବଢ଼ୁଥିଲା । କେତେବେଳେ ସ୍ୱତଃସ୍ଫୂର୍ତ୍ତ ଭାବରେ, କେତେବେଳେ ସଂଯୋଜକଙ୍କ ନିମନ୍ତ୍ରଣ କ୍ରମେ ଆସୁଥିଲେ ହେମଚନ୍ଦ୍ର ଅନୁରାଗୀମାନେ/ ସ୍ମୃତି କଥା ବଖାଣିବା ବେଳେ/ ବେଳେ ବେଳେ ଲମ୍ବିଯାଉଥିଲା ବକ୍ତବ୍ୟ । ଅତି ଭଦ୍ର ଭାବରେ ପାଖରେ ଛିଡ଼ା ହେଉଥିଲେ ସଂଯୋଜକ । ଏତେ ସତର୍କ ସଂଯୋଜନା ସତ୍ତ୍ୱେ ପୂର୍ବାହ୍ଣରେ ଆରମ୍ଭ ସଭା ଲମ୍ବି ଯାଇଥିଲା ଅପରାହ୍ଣ ଯାଏଁ ।

ସରି ସରି ଆସୁଥିଲା ସଭା । ଲମ୍ବି ଲମ୍ବି ଯାଉଥିଲା ସଂପର୍କର ବ୍ୟାସାର୍ଦ୍ଧ । ଆହୁରି

ଆକୁରି ଆକାର ପ୍ରକାର ଘେନୁଥିଲା ପରିଚୟର ପରିସୀମା । ଦୈର୍ଘ୍ୟ ପ୍ରସ୍ଥ ଉଚ୍ଚତା ତିନି ଦିଗରେ ଗତିଶୀଳ ହେଉଥିଲା ଆଚାର୍ଯ୍ୟ ପ୍ରସଙ୍ଗ । କମୁ ନ ଥିଲା ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ସଂପର୍କରେ ଶୁଣିବାର ଲୋଭ । ଯେଉଁ ଗର୍ଗଣା ଗାଁ ଗର୍ଭ ଯନ୍ତ୍ରଣା ସହି ହେମଚନ୍ଦ୍ର ଆଚାର୍ଯ୍ୟଙ୍କ ଭଳି ସୁପୁତ୍ରଙ୍କୁ ଜନ୍ମ ଦେଇଥିଲା ସେହି ଗର୍ଗଣାରେ ଆଚାର୍ଯ୍ୟ ପ୍ରସଂଗ ଶୁଣିବାର ଲୋଭ ବଢ଼ିବ ସିନା, କମିବ କିପରି ? ଯେତେ ଜଣ କହିଲେ ତାଙ୍କଠୁ ନ କହି ଥିବାର ଲୋକଥିଲେ ବହୁଗୁଣ । ସେମାନଙ୍କ ବସିବାର ନିଷ୍ଠା କହୁଥିଲା ତାଙ୍କ ଭିତରେ କବିଙ୍କ ସ୍ମୃତି କେତେ ପ୍ରଖର ଯେ ।

ବାଧ୍ୟ ହୋଇଥିଲେ ସଂଯୋଜକ ସାଢ଼େ ତିନିଟା ପାଖାପାଖି ସଭାକୁ ସାରିବାକୁ । ସଭାପତୀୟ ଅଭିଭାଷଣ ଦେବା ବେଳେ ପ୍ରଫେସର ହୃଦମଣି ପ୍ରଧାନ ମହାଭାରତୀୟ ପରଂପରାରେ ଥିବା ସରଳ ଜୀବନ ଓ ଉଚ୍ଚଚିନ୍ତନ କିପରି ଉପଯୁକ୍ତ ଭାବରେ ଆଚାର୍ଯ୍ୟଙ୍କ ଭିତରେ ଥିଲା ତାକୁ ସ୍ମରଣ  କରୁଥିଲେ ।

ତାଙ୍କ ଦ୍ୱାଦଶାହରେ ଯୋଗ ଦେବାର ଉଦ୍ଦେଶ୍ୟରେ ଝାରସୁଗୁଡ଼ାରୁ ଗର୍ଗଣା (୧୨୨ କି.ମି.) ଯାଇଥିବା ଏ ଲେଖକ ଲେଉଟିଲା ବେଳକୁ ଏକରକମ ବିହ୍ୱଳ ହୋଇ ଯାଇଥିଲା ଆଚାର୍ଯ୍ୟ ପ୍ରସଂଗ ଶ୍ରବଣରେ । ବିନ୍ଦୁ ବିନ୍ଦୁ ଭାବାଶ୍ରୁର ବିସର୍ଜନରେ ପ୍ରଣାମ ଜଣାଉଥିଲା କବିଙ୍କୁ, କବିଙ୍କ ଲୋକ ସଂପର୍କକୁ, ଗର୍ଗଣା ଗାଁକୁ । ଆଜିର ଯୁଗରେ ଜଣେ କବି ପାଇଁ ଥିବା ଦରଦକୁ, ଭାବ ଶ୍ରଦ୍ଧାକୁ ଦେଖିଲା ପରେ ଅନେକ ଅପଚରା ପ୍ରଶ୍ନମାନଙ୍କର ଉତ୍ତରରେ ଶୁଣୁଥିଲା-

ଆଚରଣ ଓ ଉଚ୍ଚାରଣରେ ସମାନୁପାତ ରକ୍ଷା କରୁଥିବା କବିଟିଏ ଯୁଗେ ଯୁଗେ ଗ୍ରହଣୀୟ । ଗାଁରେ ରହି ଗାଁର ମଣିଷଙ୍କ ମେଳରେ ମିଶି ବି କବିଟିଏ ବାହାର ଦୁନିଆଁ ସହ ସୁସଂପର୍କ ରଖିପାରେ । କୃଷିକର୍ମ, ଗ୍ରାମ୍ୟ ବାର୍ତ୍ତାଳାପ, ବିଭିନ୍ନ ଆନୁଷ୍ଠାନିକ ସଂପୃକ୍ତି, ପ୍ରିୟଜନଙ୍କ ଅନ୍ତର୍ଦ୍ଧାନ, ରାଜନୈତିକ ସଂପୃକ୍ତି, ଆକସ୍ମିକ ଆପଦ ବିପଦ ସତ୍ତ୍ୱେ ସଚ୍ଚା ସୃଜନକର୍ମୀଟିଏ ସୃଜନଶୀଳ ରହିପାରେ । ଯେମିତି ସୃଜନଶୀଳ ରହିଥିଲେ କବି ହେମଚନ୍ଦ୍ର ଆଚାର୍ଯ୍ୟ ।

ଆଚାର୍ଯ୍ୟ ଆଜ୍ଞାଙ୍କ ଅମର ଆତ୍ମା ଆମକୁ ସନ୍ମାର୍ଗ ଦେଖାଉ । ଆଗକୁ ଆଗେଇବା ପାଇଁ ପ୍ରେରଣା ଦେଉ, ଏତିକି ପ୍ରାର୍ଥନା.... ।

□□□



# ହେମଚନ୍ଦ୍ର ଆଚାର୍ଯ୍ୟ

(୧୯୨୬-୨୦୦୯)

ଜନ୍ମ ବରଗଡ଼ ଜିଲ୍ଲାର ଗର୍ଭଣା ଗ୍ରାମରେ (୨୦ ଏପ୍ରିଲ)। କୋଶଳି-ସମ୍ବଲପୁରୀ ଭାଷା-ସାହିତ୍ୟର ଜଣେ ପରିଚିତ ସ୍ରଷ୍ଟା। ତାଙ୍କର କୋଶଳି ରାମାୟଣ 'ରାମରାହା' ୨୦୦୧ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ। ସର୍ଜନା ପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ୨୦୦୦ ମସିହାରେ ସମ୍ମାନିତ କରିଛି; ୨୦୦୮ରେ ପ୍ରତିଭା ସମ୍ମାନ ଦେଇଛି। 'ସତର ସତୀ ବୃନ୍ଦାବତୀ' ଓ 'ନୁନୀ' ନାମରେ ଦୁଇଟି କାବ୍ୟ, 'କଥାନି ସତ ସତାନି'; 'କଥାନି ଲେଖେଁ ଲାଗସି' ଏବଂ 'କେତୋଟି ସମ୍ବଲପୁରୀ ଗୀତ' ନାମରେ କେତୋଟି ରଚନା ଆଗରୁ ପ୍ରକାଶିତ। ଓଡ଼ିଆରେ ପ୍ରକାଶିତ ପୁସ୍ତକ ଗୁଡ଼ିକ ହେଲା 'ମହାରଥୀ କର୍ଣ୍ଣ' (ନାଟକ), 'ଶବରୀ ସନ୍ଦେଶ' (କାବ୍ୟ) ଓ 'ଗୀତିଗାଥା'। ପଶ୍ଚିମ ଓଡ଼ିଶାର ସଂଚାର କଳାକାର ଏବଂ ସଙ୍କୀର୍ତ୍ତନ ଦଳଗୁଡ଼ିକ ଦ୍ୱାରା ତାଙ୍କ କାବ୍ୟଗୁଡ଼ିକ ବହୁ ପରିବେଶିତ ଏବଂ ଉଚ୍ଚ ପ୍ରଶଂସିତ। ୧୯୬୬ ମସିହାରେ ସରକାରୀ ଚାକିରି ଛାଡ଼ି ସୋସିଆଲିଷ୍ଟ ପାର୍ଟିରେ ଯୋଗ ଦାନ ଏବଂ ପୈତୃକ କୃଷିକର୍ମ ତାଙ୍କର ବୃତ୍ତି। ଜୀବନର ଶେଷ ପର୍ଯ୍ୟନ୍ତ ନା ତାଙ୍କର ସାହିତ୍ୟିକ ସର୍ଜନା ଊଣା ହୋଇଛି, ନା ସେ ବିରତ ହୋଇଛନ୍ତି ସମାଜବାଦୀ ବିଚାରଧାରାରୁ। ତାଙ୍କ ରଚନାର ଲୋକାଦୃତିର ପ୍ରମାଣ ସ୍ୱରୂପ ସମ୍ବଲପୁର ବିଶ୍ୱବିଦ୍ୟାଳୟ (୨୦୦୮) ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ (୨୦୧୦) ଓ ଅନ୍ୟୁନ କୋଡ଼ିଏଟି ଗ୍ରାମ୍ୟ ସ୍ତରର ସାହିତ୍ୟ ଅନୁଷ୍ଠାନ ଦ୍ୱାରା ସେ ସମ୍ବର୍ଦ୍ଧିତ। ପ୍ରସ୍ତୁତ ପାଣ୍ଡୁଲିପି 'ହେମଚନ୍ଦ୍ର ଚୟନ'ରେ ଉଭୟ କୋଶଳି ଓ ଓଡ଼ିଆରେ କବିଙ୍କର କେତୋଟି ଗୀତ ଓ ଗଦ୍ୟ ରହିଛି।

ସଂକଳକ ଓ ସଂପାଦକ **ଡ଼ଃ ପ୍ରୀତୀଶ ଆଚାର୍ଯ୍ୟ** ଜଣେ ସୁପରିଚିତ ଐତିହାସିକ ଓ ସ୍ତମ୍ଭକାର। ସଂପ୍ରତି ସେ ଏନ୍‌ସିଆର୍‌ଟିର ଭୁବନେଶ୍ୱରସ୍ଥ ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନରେ ଇତିହାସ ଅଧ୍ୟାପନାରେ କାର୍ଯ୍ୟରତ।

